# ସୀତାକାନ୍ତ ମହାପାତ୍ରଙ୍କ
# କାବ୍ୟ ମାନସ ମିଥ



ବିଧୁପ୍ରଭା ରଥ

# ସୀତାକାନ୍ତ ମହାପାତ୍ରଙ୍କ
# କାବ୍ୟମାନସ-ମିଥ୍

ବଧୂପ୍ରଭା ରଥ

ଚିତ୍ରୋତ୍ପଳା ପବ୍ଲିକେଶନ୍ସ
ବଟେଶ୍ୱର, ସାଲେପୁର, କଟକ-୭୫୪୨୦୨

# ସୀତାକାନ୍ତ ମହାପାତ୍ରଙ୍କ
# କାବ୍ୟମାନସ-ମିଥ୍

ଲେଖିକା : ବିଧୁପ୍ରଭା ରଥ, ଏମ୍.ଫିଲ୍.

ପ୍ରକାଶିକା : ଅନସୂୟା ଦାଶ

ଚିତ୍ରୋତ୍ପଳା ପବ୍ଲିକେଶନ୍ସ

ବଟେଶ୍ୱର, ସାଲେପୁର, କଟକ-୭୫୪୨୦୨

ପ୍ରକାଶ କାଳ : କାର୍ତ୍ତିକ ପୂର୍ଣ୍ଣିମା ୧୯୯୫

ପ୍ରଚ୍ଛଦ : ସୁନାମଣି ସାମଲ

ମୁଦ୍ରଣ : କେଶବ ଚରଣ ରଥ

ପ୍ରକାଶ ପ୍ରିଣ୍ଟର୍ସ

କଟକ-୯

ମୂଲ୍ୟ : ଷାଠିଏ ଟଙ୍କା ମାତ୍ର

SITAKANTA MAHAPATRA'NK

**KAVYAMANASA-MYTH**

*Writer* : BIDHUPRAVA RATH, M. Phil.

*Publisher* : **Anasuya Dash**

**Chitrotpala Publications**

Bateswar, P.o. Salipur

Cuttack-754202

Phone : 0671—742325

*1st Edition* : **1995**

*Price* : Rs. 60/- only

( I.S.B.N.—81—86556-00-11— )

# ଉତ୍ସର୍ଗ

ମୋର ଅନ୍ତରଙ୍ଗ ସଇ ଓ ଭଉଣୀ ଅଳକାନାନୀ, ଛନୁ, ଜିନା, ବବଙ୍କ ହାତରେ—

—ବଧୂନାନୀ

# ଉପୋଦ୍‌ଘାତ

କବିତାର ଆତ୍ମା କଳ୍ପନା, ପ୍ରଜ୍ଞା, ପ୍ରତ୍ୟୟ ଏବଂ ଅନ୍ୱେଷାର ସମନ୍ୱୟରେ ଏକ ଝଙ୍କାର । "Blood imagination and intellect running together" (Yeats) ଯାଦୁକରର କାଉଁରୀ ସ୍ପର୍ଶ ନିର୍ଜୀବକୁ ଜୀବନ୍ୟାସ ଦେଲାପରି ମାମୁଲି ଶବ୍ଦଗୁଡ଼ିକ କବି କଳ୍ପନା ଓ କଳାର ସ୍ପର୍ଶରେ ପ୍ରାଣବନ୍ତ ହୋଇଉଠେ; ଚୀତ୍କାର ସୃଷ୍ଟି କରେ । କବିତା ସ୍ରୋତସ୍ୱିନୀ । କବିତାର ଛନ୍ଦ କାଢ଼ିଲେ କିଛି ନ ଥାଏ; ଖାଲିଥାଏ ଆବେଗ, ସ୍ପନ୍ଦନ ଓ ଚୀତ୍କାରର ଏକ ଫଲ୍‌ଗୁ । ସେହି ଅନ୍ତର୍ନିହିତ ସ୍ୱରଟି ହିଁ କବିତାର ପ୍ରାଣ । ମଗ୍ନଚୈତନ୍ୟର ନିଃସୃତି ଆବେଗରେ କଠୋର ଜଠରରୁ ଖସିଆସେ କବିତାର ନିଃଶବ୍ଦ ଉଚ୍ଚାରଣ, ଖସି ଆସେ ତା'ର ନୀରବ ଭାବମୂର୍ତ୍ତି । ଜନ୍ମ ଲଗ୍ନରେ ସେ ବାଛିନିଏ ନିଜର ରୁଚି ଅନୁଯାୟୀ ଶବ୍ଦର ସଜ୍ଜିତ ହାର । ଶବ୍ଦର ସିଡ଼ିରେ କବିତା କେତେବେଳେ ଆରୋହଣ, କେତେବେଳେ ଅବତରଣ କରି ଉଭୟ ଆବେଗ ଓ ବୁଦ୍ଧିର କାବ୍ୟିକ ସାମଞ୍ଜସ୍ୟରେ ଯତ୍ନେ ଲାଳିତ, ପାଳିତ ତଥା ସଂରକ୍ଷିତ ହୋଇଥାଏ । କବିତା ଶବ୍ଦ ଉଚ୍ଚାରଣ ମାତ୍ରେ ପ୍ରତ୍ୟେକ ସହୃଦୟ ଓ ସହୃଦ୍ ପାଠକର ସେଦିନ୍ତ ମନରେ ଏବଂ ଚେତନାରେ ଏକ ଅପରୂପ ଆବେଗ ତରଙ୍ଗ ଗ୍ରୁଏଁ ଗ୍ରୁଏଁ ସୃଷ୍ଟି ହୋଇ ଅତର୍କିତ୍ ତାହାର ସାମଗ୍ରିକ ସତ୍ତାକୁ ସଞ୍ଚାରିତ ହୋଇଯାଏ । ହଠାତ୍ ଭେଟିଥିବା ଅନ୍ୟ ଏକ ପୃଥିବୀ କିଛି ମୁହୂର୍ତ୍ତ ମଧ୍ୟରେ ରୂପାନ୍ତରିତ ହୁଏ, ଅଥଚ ଆପଣାର ଇଲାକାରେ । ଏଇ ଅନିର୍ବଚନୀୟ ରୂପାନ୍ତର କେବଳ ବିଶୁଦ୍ଧ କବିତାର ମାଧୁର୍ଯ୍ୟମୟ ସ୍ପର୍ଶରେ ହିଁ ସମ୍ଭବପର । ସାଧକର ଅଷ୍ଟ ବିକାର ଅନୁରଣିତ ହୁଏ ତା'ର ଚେତନାରେ, ଆବେଗରେ, ମନରେ, ବୁଦ୍ଧିରେ, ସ୍ୱପ୍ନରେ ଓ ଜାଗରଣରେ ।

ଏକ ବିଚିତ୍ର ରହସ୍ୟ ବିଜଡ଼ିତ ଖେଳ ଆରମ୍ଭ ହୋଇଯାଏ ତା'ର ଅବଚେତନ ମନରେ ଏବଂ କ୍ରମଶଃ ଏକ ମଧୁର ପରିବେଶରେ ସେ ନିଜ ଅଲକ୍ଷ୍ୟରେ ହିଁ ଆତ୍ମବିଭୋର ହୋଇଉଠେ । ଏଇ ଆତ୍ମବିଭୋର ଅବସ୍ଥା ହିଁ କବିତାର ଆଶ୍ରୟସ୍ଥଳ, ଜନ୍ମଲଗ୍ନ । ଆପାତତଃ ଦୃଷ୍ଟିରେ କବିର ସଂସାର ଆଉ ପାଞ୍ଚସାତ ଜଣଙ୍କ ପରି ଆଉ ଆଉ ଲୋକମାନଙ୍କ ଭଳି ତା'ର ସାମାଜିକ / ଅର୍ଥନୈତିକ / ରାଜନୈତିକ ସମସ୍ୟା ଏବଂ ଆଧ୍ୟାତ୍ମିକ ସମସ୍ୟା ତା'ର ଜାଗତିକ ସତ୍ତାକୁ ଘେରି-ରହେ ଏବଂ ଏଇ ଘେରର ବିଭିନ୍ନତାକୁ କବି ଗ୍ରହଣ କରେ; ଆହରଣ କରେ ତା'ର ଭାବୋପଯୋଗୀ ଉପାଦାନ; ସେଥିରେ ସମ୍ମିଶ୍ରଣ କରେ ନିଜର ମାର୍ଜିତ କାବ୍ୟବୋଧ ଓ ଅବିମିଶ୍ର କାବ୍ୟପ୍ରତିଭା । ସବୁ ଘଟଣାରେ ସେ ଥାଏ ଅଣ୍ୱପରି, ଅଣ୍ୱର ଗୁଚ୍ଛିପରି । ଅଥଚ ସେ କେତେ ଆସକ୍ତ ଭାବରେ ନିର୍ଲିପ୍ତ କେତେ ନିର୍ଲିପ୍ତ

ଭାବରେ ଆସକ୍ତ । ପ୍ରତି ଯୁଗରେ ନିଚ୍ଚକ ଓ ବିଶୁଦ୍ଧ କାବ୍ୟପ୍ରବୃତ୍ତିର ସ୍ଥିତି ଏଇପରି ଥିଲା, ରହିଛି ଏବଂ ରହିବ ମଧ୍ୟ । କବିତାର ଜନ୍ମ କ'ଣ ଶବ୍ଦମାନଙ୍କର ଯଥେଚ୍ଛା ଉଚ୍ଚାରଣରେ, ନା ମନ୍ତ୍ରର ବକ୍ତୃତାମାଳାରେ, ନା ଧର୍ମ ଧାରଣାରେ, ନା ବୁଭୁକ୍ଷୁର ଚିତ୍କାରିତ ଆର୍ତ୍ତନାଦରେ, ନା ପ୍ରାଚୁର୍ଯ୍ୟର ବିଭୂତିରେ ନା ଏଇଭଳି କିଛି ନା କିଛି ଧରିବନ୍ଧା ଗତାନୁଗତିକତାରେ । ଅଥଚ ଏ ସମସ୍ତ ପରିବେଶ ଯଦ୍ଧିତ କବି ଆତ୍ମାସ୍ଥ ଭାବରେ ଜଡ଼ିତ ନୁହେଁ । କବିତା ସମ୍ପର୍କରେ ଯେପରି କୌଣସି ଶେଷକଥା ନାହିଁ; କୌଣସି ଶେଷ ମନ୍ତବ୍ୟ / ସଂଜ୍ଞା ନାହିଁ; ଠିକ୍ ସେହିପରି କବିର ସମ୍ପର୍କବୋଧ କୌଣସି ନିର୍ଦ୍ଦିଷ୍ଟ ନିୟମ ନାହିଁ କି ରହିବା ମଧ୍ୟ ଉଚିତ ନୁହେଁ । ଯେତେବେଳେ ଯେଉଁ ଘଟଣା, ପରିସ୍ଥିତି, ଚିନ୍ତା ତା'ର ସମ୍ପର୍କବୋଧରେ କାବ୍ୟିକ ଆଲୋଡ଼ନ ସୃଷ୍ଟି କରିବାରେ ସମର୍ଥ ହୋଇ ପାରିବ; ସେତେବେଳେ ସେଇ ପୃଷ୍ଠଭୂମିରେ ହିଁ ତା' କବିତାର ଆବିର୍ଭାବ ହେବ । କାହାର ବ୍ୟକ୍ତିଗତ ମାପକାଠିରେ ବା ଫ୍ରେମ୍‌ରେ ଯଦି ତା'ର ମର୍ମବୋଧର ଅନୁକମ୍ପନ ଖାପଖାଇ ନ ପାରିଲା; ତେବେ ସେ କବି ହେଲା ବିଚ୍ଛିନ୍ନତାବାଦୀ ଓ ତା'ର କବିତା ହେଲା ଦୁର୍ବୋଧ୍ୟ । କେଉଁ ବ୍ୟକ୍ତିର ଅନ୍ତଃସତ୍ତ୍ୱାର ପରିମଣ୍ଡଳଟି ଅସ୍ପଷ୍ଟତାର ଘନକୁହୁଡ଼ିରେ ଆଚ୍ଛନ୍ନ ନୁହଁ ? କେଉଁ ବ୍ୟକ୍ତିଟି ବିଶୁଦ୍ଧଭାବେ ସରଳ ଓ ନିଷ୍କପଟ ? ଜଣକର ଛଳନାର ବ୍ୟୂହ ଭେଦ କରିବା ଅନ୍ୟଜଣକ ପକ୍ଷେ କେତେଦୂର ଯଥାର୍ଥ ରୂପେ ସମ୍ଭବ ହୋଇଛି ତାହା କଳନା କରିବା ଅସମ୍ଭବ । କିନ୍ତୁ ଏଇ ଛଳନାର ଜଟିଳତା ଓ ଜଟିଳ ଅସ୍ତିତ୍ୱବୋଧ ହିଁ ବାରମ୍ବାର ଆକର୍ଷଣ କରିଛି ଅନୁସନ୍ଧିତ୍ସୁ ମନକୁ । ଏଇ ଆକର୍ଷଣ ଫଳରେ ଉଭୟ ବିପରୀତମୁଖୀ ଉପାଦାନମାନଙ୍କର ଏକ ଚମତ୍କାର ମିଶ୍ରଣ ସମ୍ଭବ ହୋଇପାରିଛି; ଏବଂ ଏଇ ସମ୍ଭାବ୍ୟ ଭୂଖଣ୍ଡର କେଉଁ ବିଚିତ୍ର କୋଣରୁ ଅନ୍ଧ ଜଳରାଶିର ସ୍ୱଚ୍ଛ ଆବେଗ ନେଇ ଉଙ୍କି ଆସୁଛି କବିତା । ସେଠି ଈଶ୍ୱର ମଧ୍ୟ ଦ୍ରଷ୍ଟା ବିଶେଷ, ପକ୍ଷ ବିଶେଷ; ପୁଣି ଅସ୍ତିତ୍ୱ ବିଶେଷ । ତେଣୁ କେତେବେଳେ ପ୍ରେମ ତ, କେତେବେଳେ ମୃତ୍ୟୁ ଚିନ୍ତା, ପୁଣି କେତେବେଳେ ଧର୍ମ, ଦର୍ଶନ ତ କେତେ-ବେଳେ ବିଦ୍ରୋହର ନିନାଦ । ସବୁ ଗୋଟିଏ ଉପାଦାନ ମାତ୍ର; ସ୍ୱୟଂସମ୍ପୂର୍ଣ୍ଣ କବିତା ନୁହନ୍ତି ବରଂ କବିତାର ପୂର୍ଣ୍ଣତା ପାଇଁ କାଠିକୁଟା ହୋଇ ନିଜକୁ ଠିକ୍ ଠିକ୍ ଜାଗାରେ ସଜାଡ଼ି ରଖନ୍ତି । ପୁନଶ୍ଚ ସବୁବେଳେ ଯେ ଏହି ଚିରନ୍ତନ ଉପାଦାନମାନେ ସେମାନଙ୍କ ପରିଧିର ପ୍ରାଧାନ୍ୟ ବଳରେ କବିତାର ଆତ୍ମାକୁ ସଠିକ୍ ଭାବରେ ପ୍ରତିପାଦିତ କରିବାକୁ ଯୋଗ୍ୟ ବିବେଚିତ ହେବେ; ଏପରି କୌଣସି ପ୍ରତିଶ୍ରୁତି ବା ପ୍ରତିଜ୍ଞା କବି ସେମାନଙ୍କୁ ଦେଇ ନ ପାରେ । ଅବଶ୍ୟ ଏଇମାନେ କାଳେ କାଳେ ବିଭିନ୍ନ ରୂପରେ କବିତାର ଅନ୍ତର୍ବଳୟକୁ ଫେରି

ଆସନ୍ତି । ତେଣୁ କବି ସହିତ କବିତାର, କବିତା ସହିତ ପାଠକର, କବି ସହିତ ପାଠକର ଓ କବିର ଅନ୍ତର୍ଲୋକରେ ଆନ୍ଦୋଳନ ଓ କମ୍ପନ ସହିତ ବାହ୍ୟଜଗତର ସେଇ ପର୍ଯ୍ୟାୟର ଯୋଗସୂତ୍ର ଯେତିକି ଜଟିଳ ସେତିକି ସ୍ପଷ୍ଟ; ଯେତିକି ଆନ୍ତରିକ ସେତିକି ବିଚ୍ଛିନ୍ନ: ଯେତିକି ବ୍ୟକ୍ତିଗତ ସେତିକି ସୁଦୂର ପରିବ୍ୟାପ୍ତ ।

ତୁଳନାତ୍ମକ ବିଗ୍ୟର ସୀତିକୁ ଦୂରେଇ ରଖି ମଧ୍ୟ ଏହା ନିଃସନ୍ଦେହରେ କୁହାଯାଇପାରେ ଯେ ସାମ୍ପ୍ରତିକ ଓଡ଼ିଆ କବିତା ତା'ର ଭାବ, ଭାଷା, ଶବ୍ଦ-ବିନ୍ୟାସ, ରୂପକଳ୍ପ ପ୍ରୟୋଗ, ମିଥ୍‌ବୃତ୍ତି, ବିଭିନ୍ନତାର କାବ୍ୟିକ ଏକତ୍ରୀକରଣ, ମୃତ୍ୟୁ ଚେତନା ଏମିତି ଅନେକ ମହାର୍ଘ୍ୟ ଉପାଦାନମାନଙ୍କୁ ଉଦରସ୍ଥ କରିଛି ତା'ର ହିରଣ୍ୟ ଗର୍ଭରେ । ସର୍ବୋପରି ଯେ ନିଚ୍ଛକ ଓଡ଼ିଆ କବିତା ଭାବରେ ହିଁ ପ୍ରତିଷ୍ଠିତ ହୋଇପାରିଛି । ପ୍ରତିଟି ଜିଶୁଙ୍କ ମନ୍ତ୍ରପରି କବିତାର ପ୍ରତ୍ୟେକ ଶବ୍ଦ ସ୍ୱୟଂଭୂ । ଶବ୍ଦ ହିଁ କବିତାର ନିର୍ଭୁଲ ଗୃହକାଠି । ଏହାର ଇଙ୍ଗିତ ହିଁ କବିତାର ଆତ୍ମାପ୍ରତି ନିରପେକ୍ଷ ଅଙ୍ଗୁଳି ନିର୍ଦ୍ଦେଶ କରେ । ପାଠକର ରସସିକ୍ତ ମର୍ମବୋଧ ହିଁ ଏଇ ଇଙ୍ଗିତର ଆଭାସକୁ ଚୁମ୍ବକଭଳି ଟାଣିଆଣେ । କୌଣସି ଆଭିଧାନିକ ଅର୍ଥରେ କବିତାର ଆତ୍ମାକୁ ଉଖାରି ଉଖାରି ଉପଭୋଗ କରିବା ନିହାତି ନିର୍ବୋଧତା । ପୂର୍ଣ୍ଣବ୍ରହ୍ମର ଅପାର୍ଥିବ ଛାୟା ହେଉଛି ଏଇ ଭୂମଣ୍ଡଳ; ବିଷ୍ଣୁଙ୍କର ନାଭିମୂଳରୁ ଉଦ୍‌ଗତ ପଦ୍ମପରି ଏହା ଊର୍ଦ୍ଧ୍ୱଗାମୀ ଓ ଅନାଘ୍ରାତ; ତଥାପି ଏହା କ୍ଷୁଦ୍ର ଏକ ଶିଶିର ବିନ୍ଦୁଭଳି ନିରୀହ, ସର୍ବଂସହା ଘାସଟିଏ ପରି ଅଧୋମୁଖୀ ମସ୍ତକ ଉପରେ ଟଳମଳ ପ୍ରାୟ । ତେଣୁ କବିତାର ସଂଜ୍ଞା କେବଳ 'କବିତା', ଯେପରି ଈଶ୍ୱରଙ୍କ ସଂଜ୍ଞା କେବଳ 'ଈଶ୍ୱର' । ବର୍ତ୍ତମାନ କବିର ବ୍ୟକ୍ତିଗତ ବିଶ୍ୱ ଏକ ଅଦ୍ଭୁତ ବୈଠକଖାନା । ଏହି ବୈଠକଖାନାର ପ୍ରତ୍ୟେକ ଧୂଳିକଣାରେ ପ୍ରତି ମୁହୂର୍ତ୍ତରେ ବିଭିନ୍ନବାଦ ଓ ମତବାଦର ଚେହେରା ସୃଷ୍ଟିହୁଏ । କିନ୍ତୁ ଯେ ନିଚ୍ଛକ କବି; ସେ ଏହି ଚେହେରାମାନଙ୍କର ପାଦଚିହ୍ନ ତା'ର ବୈଠକଖାନାର ବିଗ୍ରହ ସ୍ତୁତି ଗାଲିଗ୍ୱ ମଧ୍ୟରେ ନିଶ୍ଚିହ୍ନ କରିଦିଏ ଏବଂ ବଞ୍ଚିରହେ ନିଜର ମତ ଓ ବାଦକୁ ନେଇ; ସେଇଟା ତା'ର ନିଜସ୍ୱ; ତା'ର ଏକାନ୍ତ ବ୍ୟକ୍ତିଗତ । ସେଥିରେ ସେ ଅବିଚଳିତ ଓ ନିମଗ୍ନ ।

ଏବର ଓଡ଼ିଆ କବିମାନଙ୍କ ବ୍ୟକ୍ତିବିଶ୍ୱ ହେଉଛି ରୂପକଳ୍ପର ବିଶ୍ୱ । ଏହି ରୂପକଳ୍ପ ହିଁ ବର୍ତ୍ତମାନର କବି ଓ କବିତାକୁ ପୂର୍ବଯୁଗଠାରୁ ସମ୍ପୂର୍ଣ୍ଣ ଭିନ୍ନ ପର୍ଯ୍ୟାୟରେ ପର୍ଯ୍ୟବସିତ କରିଛି ଏବଂ ଏହି ରୂପକଳ୍ପର ଅସମ ପ୍ରୟୋଗ ହିଁ ଅଜିର ଦୁର୍ବୋଧତା ଓ ଅବୋଧତାର ବିଶେଷଣ ସୃଷ୍ଟି କରିଛି । ପୁଣି ଏହି

ରୂପକଳ୍ପ କଳ୍ପନାର process ଏତେ ପରିମାଣରେ ଜଣେ କବିଙ୍କଠାରୁ ଅନ୍ୟ କବିଙ୍କ ମଧ୍ୟରେ ଫରକ୍ ଯେ ଏହାର ବିଭିନ୍ନତା ସହଜରେ ଅନୁମାନ କରିହୁଏ । ତେଣୁ ପ୍ରତ୍ୟେକ ନିଜ ବ୍ୟକ୍ତିବିଶ୍ୱ ମଧ୍ୟରେ ଏକ ନୂତନ ବୃତ୍ତ ସୃଷ୍ଟି କରି ଗୁଡ଼ିଆଣୀ ଭଳି ନିଃଶବ୍ଦରେ ତେଇଁ ତେଇଁ ଘୂରିବୁଲନ୍ତି । ପ୍ରତ୍ୟେକ କବିର ବ୍ୟକ୍ତି ବିଶ୍ୱ । ଚେତନ ଓ ଅନୁସନ୍ଧିତ୍ସାକୁ ସଠିକ୍ ଭାବରେ ବୁଝିବାକୁ ହେଲେ ସେମାନଙ୍କ କବିତାର ସୂକ୍ଷ୍ମକୋଷରେ ଲୁକ୍କାୟିତ ଆତ୍ମାକୁ ଚିହ୍ନିବା ନିହାତି ଆବଶ୍ୟକ ।

ଆଲୋଚ୍ୟ କବି ସୀତାକାନ୍ତ ମହାପାତ୍ରଙ୍କ କବିତାରେ ଏହି ରୂପକଳ୍ପ ଏବଂ ମିଥ୍‌ର ଏକ ଚମତ୍କାର ଐକ୍ୟ ସ୍ଥାପିତ ହୋଇଛି । ନିମ୍ନଲିଖିତ କେତୋଟି ଉଦାହରଣରୁ ତାହା ସ୍ପଷ୍ଟ ହୃଦ୍‌ବୋଧ ହେବ ।

(୧)...“ସବୁ ଧାଇଁ ଯାଉଛନ୍ତି ମିଶିବାକୁ / ଜ୍ୱଳମାନ ସେଇ ଗୋଟେ ଆଗ୍ନେୟ ସ୍ଥିତିରେ । ସବୁ ତା’ ଭିତରେ ଲୀନ / ବିଶ୍ୱରୂପ ଦର୍ଶନରେ ଥରଉଠେ କାକୁସ୍ଥ ଅର୍ଜୁନ” ।

(ବସ ଦର୍ପଣରେ ସୂର୍ଯ୍ୟାସ୍ତ : ଦୀପ୍ତି ଓ ଦ୍ୟୁତି—ପୃ:୩)

(୨) “ହେ ପରମ ଆଦିମୂଳ / ଆଜି ତେଣୁ ମୁକ୍ତିମାଗେ / ଅଭିଶପ୍ତ ମଥୁରାର ବନ୍ଦୀ ନଗ୍ନ ଲୋକ / ତୋ ଚରଣ ରେଣୁ ସ୍ପର୍ଶେ /... ଶୃଙ୍ଖଳ ଆକାଶେ ଜାଗେ ମେଘମାଳା, ହାଣ୍ଡି କଲା ଘୁମର ଘୁମର ।”

(କୁବୁଜା ପାଇଁ ଗୋଟିଏ ସଙ୍ଗୀତ, ଅଷ୍ଟପଦୀ—ପୃ : ୧୨)

(୩) “ସମସ୍ତ ତା’ ନିଜ ନଈ / ବହିଯାଏ ଆପେ ଆପଣାର / ସମସ୍ତ ନିଜ ସମୁଦ୍ର / ଅଧା ବୁଝେ ଭିତରର ଶୋକ ଦୁର୍ନିବାର / ଦରମଳି, ପାଣିଚଆ ଶବଙ୍କ ଦେଖାର ।”

(ମୃତନଦୀ ଦୁଇ ପରିଚୟ—ସମୁଦ୍ର—ପୃ : ୨୦)

ବର୍ତ୍ତମାନର କବି ଏବର ସମାଜକୁ ଆସ୍ୱାଦ ଓ ଅନୁଭବ କରିଛି ମିଥ୍ (Myth)ର ଅସ୍ତ୍ର ନେଇ । ତେଣୁ ତା’ ଦୃଷ୍ଟିରେ ମହାଭାରତର ସମାଜ ଓ ଆଜିର ସମାଜ ସହିତ କିଛି କିଛି ସାମ୍ୟ ରହିଛି ଏବଂ ସେମାନଙ୍କ କଣ୍ଠସ୍ୱର ସହିତ ନିଜକୁ ମିଳାଇ କହିଛି—

(୪) “ନଚିକେତା ପରି ମୁଁଇ, ଜାଣିବାକୁ ଗୁହୁଁ ନାହିଁ ଜୀବନ ଓ ମରଣର ରହସ୍ୟ ଅମୋଘ / କୁରୁକ୍ଷେତ୍ରେ ଅର୍ଜୁନର ବିଷାଦ ଖଣ୍ଡନ ବାଣୀ, ଜ୍ଞାନକର୍ମ ଆଉ ଭକ୍ତିଯୋଗ / ହେ କପଟି, ହେ ନିଷ୍ଠୁର, ହେ ଶିବ-ସୁନ୍ଦର / ଲୋଡ଼ାନାହିଁ ଦେଖିବାକୁ ବିଶ୍ୱରୂପ ତୋର ...।”

(ଜାଗୃଶବରର ସଙ୍ଗୀତ, ଦୀପ୍ତି ଓ ଦ୍ୟୁତି—ପୃ : ୩୫)

ସଂପ୍ରବନ୍ଧ ସମାଜରେ ଯେଉଁ ମୃତ୍ୟୁନାଚ ଚାଲିଛି ତାହାର ଭାବଗତ ଓ ଅଙ୍ଗିଗତ ପରପ୍ରକାଶର ଆଧାର ଏଇ ମଣିଷମାନେ । ହୁଏତ ସେଥିପାଇଁ ଆଜିର କବିର ଦୃଷ୍ଟିରେ ପିଣ୍ଡାରକ, ପ୍ରଭାସ, ବଦ୍ରିକା, ବୃନ୍ଦାବନ,ହସ୍ତିନାପୁର ବା ନାଗାସାକି ଭିତରେ କୌଣସି ଅପରିହାର୍ଯ୍ୟ ଦୂରତ୍ୱ ନାହିଁ । ବରଂ ଏଇ ସ୍ଥାନମାନଙ୍କରେ ମଧ୍ୟ ହତାଶର ମୃତ୍ୟୁନାଚ ଚାଲିଛି ଅବିରାମ ଗତିରେ । ତେଣୁ ପୃଥିବୀର ବିଶାଳତ୍ୱ କ୍ରମଶଃ ସଂକୀର୍ଣ୍ଣ ହୋଇ ଆସୁଛି ।

(୫) "ସିଏ କେଉଁ ସହରର ରାସ୍ତା ଅବା କେଉଁ ଗାଆଁ ଦାଣ୍ଡ / ଆଜି ଆଉ ଜାଣି ହେଉନାହିଁ; କୁଆ ଖାଲି ? ହସ୍ତିନାପୁର ? ପିଣ୍ଡାରକ ? ଦ୍ୱାରକା ? ପ୍ରଭାସ ? କୌଣସିଟା ହୋଇପାରେ / ସମସ୍ତ ଠିକଣା ଆଜି ପୋଡ଼ିଜଳି ହୋଇଛି ପାଉଁଶ ।"

(ସ୍ୱନଜନ୍ମର ଉପକଥା, ଅଷ୍ଟପଦୀ—ପୃ : ୧୭)

ଆଧୁନିକ ଓଡ଼ିଆ କବିତାରେ ମିଥ୍ ପ୍ରୟୋଗ ଏକ ରୂପାନ୍ତରିତ ବିକାଶ ବୋଲି କୁହାଯାଇ ପାରେ । ମିଥ୍ ଏକ ଶକ୍ତିଶାଳୀ ଭାବ ସମନ୍ୱିତ ମାଧ୍ୟମ ବା ମିଡ଼ିଆ । ବିଂଶ ଶତାବ୍ଦୀର ମଣିଷ ଏହା ମାଧ୍ୟମରେ ତାହାର ଅନ୍ତର୍ଲୋକକୁ ଅଧ୍ୟୟନ କରିଥାଏ । ମିଥ୍‌ର ସତ୍ତା ଆମ ସଂସ୍କୃତି ଭିତରେ ଏକାନ୍ତ ଅନ୍ତରଙ୍ଗ ଭାବରେ ସମୀଭୂତ । ମାନବ ଜୀବନର ଅନ୍ତଃପ୍ରକୃତି ମଣ୍ଡିତ ଓ ସଂସ୍କୃତିର ବୈଚିତ୍ର୍ୟ ଆଚ୍ଛାଦିତ ପ୍ରବୃତ୍ତି ହିଁ ମିଥ୍ । "Myth that are nearer to us and embodied in our culture" । ମିଥ୍ ମାଧ୍ୟମରେ ଭାବପ୍ରକାଶ କ୍ଷମତା କେବଳ ନିର୍ଦ୍ଦିଷ୍ଟ ନୁହେଁ ବହୁମୁଖୀ । ନୃତାତ୍ତ୍ୱିକ ଅନୁଶୀଳନ କ୍ରମେ ପ୍ରାଥମିକ ସ୍ତରର ଲୋକ ମିଥ୍ ଭାବରେ ପୁରାଣ କଳ୍ପ ରୂପରେ ସଂଗୃହୀତ ହୋଇଥାଏ । ପ୍ରାଚ୍ୟ ଭାରତୀୟ ପରମ୍ପରାରେ ରାମାୟଣ / ମହାଭାରତ ଯାହାକି ଇତିହାସ ଓ ମହାକାବ୍ୟର ମୁଖଶାଳା ରୂପେ ଗୃହୀତ; ସେଥିରେ ଏଭଳି ବହୁ କାହାଣୀ ସଂଯୋଜିତ ହୋଇଛି । ଏଗୁଡ଼ିକ ସେହି ସମୟରେ ଚାରଣ କବିମାନଙ୍କ ଗାୟନ ବା ଲେଖନ ମଧ୍ୟରେ ଉଲ୍ଲିଖିତ ହେଉଥିଲା । ଗ୍ରୀକ୍ ପରମ୍ପରାର ଓଡ଼େଶୀ (odyssey) ଓ 'ଇଲିୟାଡ୍' (Illiad)ରେ ଅନୁରୂପ ମିଥିକ୍ ଆଭିମୁଖ୍ୟ ଲକ୍ଷ୍ୟ କରାଯାଏ । ଅତଏବ ବିଶେଷଜ୍ଞମାନଙ୍କ ମତାନୁସାରେ ମିଥ୍ ପୁରାଣ ପ୍ରସୂତ ନୁହେଁ ବରଂ ପୁରାଣର ମେରୁଦଣ୍ଡ ଅଟେ । 'ସୀତାକାନ୍ତଙ୍କ କାବ୍ୟମାନସ-'ମିଥ୍'ର ପ୍ରେରଣା ଏହି ପୀଢ଼ୀ ତଥା ଆଗାମୀ ପାଇଁ ଯେଉଁ ଅଭିନବ ପୃଷ୍ଠଭୂମି ଏବଂ ଅନୁସନ୍ଧିତ୍ସା ସୃଷ୍ଟି କରିଛି ତାହା ଆଧୁନିକ ଓଡ଼ିଆ କବିତାର ଆତ୍ମା, ଶୈଳୀ, ଆଙ୍ଗିକ

ଉପନ୍ୟାସକୁ ନୂତନ ଦୃଷ୍ଟିଭଙ୍ଗୀ ପ୍ରଦାନ କରୁଛି । କବିତା ତ କେବଳ କବିର ନୁହେଁ । କବିତା ପ୍ରକାଶ ପାଇଲେ ତାହା କାଳର ! ସମୟର !

ଯେଉଁ ଅନ୍ତରଙ୍ଗ ମଣିଷମାନେ ମୋର ଜୀବନକୁ ବହୁ ଭାବରେ ବହୁ କୋଣ-ଅନୁକୋଣରୁ ପ୍ରେରଣାରେ ଉଜ୍ଜୀବିତ କରିଛନ୍ତି ଅସମୟରେ ପାଖରେ ଅନ୍ତରଙ୍ଗ ବନ୍ଧୁ ଭଳି ଠିଆ ହୋଇଛନ୍ତି ପୁଣି ଅରେ ହାତଧରି ଚାଲି ଶିଖାଇ ଦେଇଛନ୍ତି ସେମାନଙ୍କଠାରୁ କ'ଣ କେବେ ମୁଁ ନିଜକୁ ଋଣମୁକ୍ତ କରିପାରିବି ? ତେଣୁ ଏହି ଅବସରରେ ମୋର ଆଦର୍ଶ ଲେଖାର ପ୍ରେରଣା ଲେଖକ ପିତା ଶ୍ରୀ ଶିବରାମ ରଥ (ଅବସରପ୍ରାପ୍ତ ଜିଲ୍ଲା ଜଜ୍), ପୂଜନୀୟ କବି ଓ ଗାଳ୍ପିକ ଶ୍ରୀ ରବି-ନାରାୟଣ ସେନାପତି (ସଚିବ, ମହିଳା ଓ ଶିଶୁ କଲ୍ୟାଣ ବିଭାଗ), କବି ଡଃ ଶ୍ରୀ ପ୍ରସନ୍ନ ପାଟ୍ଟଶାଣୀ, କବି ଶ୍ରୀ ନିରଞ୍ଜନ ପାଢ଼ୀ (ଜିଲ୍ଲାପାଳ କେଉଁଝର), କବି ଶ୍ରୀ ରମାକାନ୍ତ ଜେନା (ସମ୍ପାଦକ ଗୋ-କର୍ଣ୍ଣିକା), ସମ୍ମାନନୀୟ ଶ୍ରୀ ଦେବରାଜ ମିଶ୍ର (ତହସିଲଦାର ଭୃଗୁଡ଼ା), ଶ୍ରୀମତୀ ପ୍ରମିଳା ମିଶ୍ର, ଅବସରପ୍ରାପ୍ତ ବ୍ରହ୍ମପୁର ବିଶ୍ୱ-ବିଦ୍ୟାଳୟର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ପ୍ରଫେସର ଡଃ ଶ୍ରୀ ସୀତାରାମ ମହାପାତ୍ର ପ୍ରଭୃତି ବିଶିଷ୍ଟ ବ୍ୟକ୍ତି ବିଶେଷଙ୍କୁ ଅନ୍ତରତମ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ଏହି ପୁସ୍ତକର ପ୍ରକାଶିକା ଶ୍ରୀମତୀ ଅନୁସୂୟା ଦାଶଙ୍କୁ ମୋର ଅନ୍ତରତମ ଭକ୍ତି ନୈବେଦ୍ୟ ଅର୍ପଣ କରୁଛି ତାଙ୍କର ପ୍ରଗାଢ଼ ଉଦ୍ୟମ ଯୋଗୁଁ ଚନ୍ଦ୍ରୋପଳା ପବ୍ଲିକେଶନ୍ସର ସହଯୋଗରେ 'ସୀତାକାନ୍ତଙ୍କ କାବ୍ୟମାନସ ମିଥ୍' ପ୍ରକାଶିତ ହେବାର ସୌଭାଗ୍ୟ ଅର୍ଜନ କରିଛି । ଓଡ଼ିଶାର ଖ୍ୟାତନାମା କବି, ଲେଖକ, ବିପ୍ଳବୀ ଶ୍ରୀ ସଦାଶିବ ଦାସଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି । ଯାହାଙ୍କର ପ୍ରଚ୍ଛନ୍ନ ପ୍ରେରଣା ମତେ ସବୁବେଳେ ଅନୁବନ୍ଧିତ କରିବା ସଙ୍ଗେ ସଙ୍ଗେ ମୋର ସାହିତ୍ୟିକ ଜୀବନରେ ନବ ଉନ୍ମେଷର ସୂତ୍ରପାତ କରାଇଛି ।

ତେବେ ଆସନ୍ତୁ ! ଏକାଠି ଠିଆହୋଇ ଏହି ସମ୍ଭାବନାର ନୂତନ ସୂର୍ଯ୍ୟୋଦୟକୁ ସ୍ୱାଗତ କରିବା ।

—ବିଧୁପ୍ରଭା ରଥ

ଝଲିକୋଟ
କାର୍ତ୍ତିକ ପୂର୍ଣ୍ଣିମୀ
ତା ୭।୧୧।୯୫

# ସୂଚୀପତ୍ର

## ଆଧୁନିକ କବିତାର ସ୍ୱରୂପ :

ଆଦିକବି ସାରଳା ଦାସଙ୍କଠାରୁ ଊନବିଂଶ ଶତାବ୍ଦୀର ଶେଷ ପାଦ ପର୍ଯ୍ୟନ୍ତ ସୁବିସ୍ତୃତ ପାଞ୍ଚ ଶତାବ୍ଦୀ କାଳ ଥିଲା ଓଡ଼ିଆ ସାହିତ୍ୟର ମଧ୍ୟଯୁଗ । ଓଡ଼ିଆ କବିତାର ଭାଷାଗତ ସହିତ ସାହିତ୍ୟର ପ୍ରବୃତ୍ତି ଓ ତାହାର ଅନ୍ତର୍ନିହିତ ସାଂସ୍କୃତିକ ତଥା ଆଧ୍ୟାତ୍ମିକ ମୂଲ୍ୟବୋଧ ଏହି କାଳ ବିଭାଗର ମୁଖ୍ୟ ନିୟାମକ ଅଟେ । ପରବର୍ତ୍ତୀ ଷୋଡ଼ଶ-ସପ୍ତଦଶ ଶତାବ୍ଦୀର କାବ୍ୟାଦର୍ଶ ସମ୍ପୂର୍ଣ୍ଣ ଆଖ୍ୟାୟିକାଧର୍ମୀ ଗାଥା ଉପରେ ହିଁ ନିର୍ଭରଶୀଳ ହୋଇ ପଡ଼ିଥିଲା । ଏପରିକି ଊନବିଂଶ ଶତାବ୍ଦୀର ତୃତୀୟ ପାଦ ପର୍ଯ୍ୟନ୍ତ ଓଡ଼ିଆ ମଧ୍ୟଯୁଗୀୟ କାବ୍ୟ ସାହିତ୍ୟର ପ୍ରବୃତ୍ତି ଓ ପ୍ରକୃତି ଗତାନୁଗତିକତା ଭିତରେ ଅପରିବର୍ତ୍ତିତ ରହିଥିଲା । ଅଷ୍ଟାଦଶ ଶତାବ୍ଦୀର ଅଳଙ୍କାର ପ୍ରାଚୁର୍ଯ୍ୟତା କାବ୍ୟର ରସାଭିବ୍ୟକ୍ତିରେ ଘୋର ବାଧା ସୃଷ୍ଟି କରିଥିଲା । ଏହି ଅଚଳ ଅବସ୍ଥାର ପରିସମାପ୍ତି ଘଟାଇ ଊନବିଂଶ ଶତାବ୍ଦୀର ଶେଷ ପାଦର କବି ରାଧାନାଥ ରାୟଙ୍କ କାବ୍ୟଶୈଳୀରେ ଏକ ନୂତନ କାବ୍ୟରୀତି ଅନୁବର୍ତ୍ତିତ ହୋଇଥିବାରୁ ତାଙ୍କୁ ଆଧୁନିକ ଓଡ଼ିଆ କବିତାର ଯୁଗ ପ୍ରବର୍ତ୍ତକ ଭାବରେ ଗ୍ରହଣ କରାଯାଇଥାଏ । ସେ ମଧ୍ୟଯୁଗର ଅଳଙ୍କାର ବହୁଳ, ବିଷମ ଭାଷା, ଶବ୍ଦାଡ଼ମ୍ବର ପୂର୍ଣ୍ଣ କାବ୍ୟରୀତିକୁ ପରିହାର କରି ଦେଶଜ ଶବ୍ଦ ସହିତ ସଂସ୍କୃତ ଏବଂ ବୈଦେଶିକ ଶବ୍ଦକୁ ମିଶ୍ରଣ କରି ଭାଷାର ସମନ୍ୱିନ୍ୟାସ ଏବଂ ଐକ୍ୟ ରକ୍ଷା କରିବାରେ ସମର୍ଥ ହୋଇଥିଲେ । ଏହି ମିଶ୍ରଣ ତାଙ୍କର ଭାଷା ଶୈଳୀକୁ ଦୋଷଦୁଷ୍ଟ କରିବା ପରିବର୍ତ୍ତେ ବରଂ ଅଧିକ ଭାବପ୍ରକାଶକ୍ଷମ କରିପାରିଛି । ପୁରାତନ ରାଗ-ରାଗିଣୀଯୁକ୍ତ ଛନ୍ଦମାନଙ୍କୁ ପରିହାର କରି ଅମିତ୍ରାକ୍ଷର ଛନ୍ଦର ସାର୍ଥକ ପ୍ରୟୋଗ ମଧ୍ୟ କରିବାରେ ସେ ସୁପରିଚିତ । ରାଧାନାଥଙ୍କ ଏହି ପ୍ରଚେଷ୍ଟା ପରବର୍ତ୍ତୀ ସତ୍ୟବାଦୀ ଯୁଗର କବିମାନଙ୍କୁ ଜାତୀୟତା ମୂଳକ ଆଦର୍ଶ ଭାବଧାରା

ସୃଷ୍ଟି କରିବାରେ ସାହାଯ୍ୟ କରିଥିଲା । ରାଧାନାଥ ଯୁଗୀୟ ଗୀତିକବି ମଧୁସୂଦନ, ଗଙ୍ଗାଧର, ନନ୍ଦକିଶୋର ପ୍ରଭୃତିଙ୍କ ଅବଦାନ ଉଲ୍ଲେଖଯୋଗ୍ୟ । ଆଧୁନିକ ଓଡ଼ିଆ କବିତାର ଶୈଶବ କାଳରେ ତାହାର ଶୈଳ୍ପିକ ମୂଲ୍ୟବୋଧକୁ ସଂରକ୍ଷଣୀୟ ସ୍ତରରେ ପରିଚିତ କରିବା ପାଇଁ ଯେଉଁ ପ୍ରୟାସ ହୋଇଥିଲା ସେ ସବୁର ମୁଖ୍ୟ କର୍ଣ୍ଣଧାର ଥିଲେ ସତ୍ୟବାଦୀ ଗୋଷ୍ଠୀ । ପ୍ରତ୍ୟକ୍ଷ ଭାବରେ ସତ୍ୟବାଦୀ ଗୋଷ୍ଠୀ ରାଧାନାଥୀ ସାହିତ୍ୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେହେଁ ଆଙ୍ଗିକ କାବ୍ୟ ସଂରଚନାରେ ତାଙ୍କର ଶୈଳୀକୁ ହିଁ ବ୍ୟବହାର କରିଥିଲେ । ଏହାର ପ୍ରକୃଷ୍ଟ ଉଦାହରଣ ହେଉଛି ନୀଳକଣ୍ଠ ଦାସଙ୍କର 'କୋଣାର୍କେ', 'ଖାରବେଳ', 'ପ୍ରଣୟିନୀ' ପ୍ରଭୃତି କାବ୍ୟ ସମୂହ ।

ପାଶ୍ଚାତ୍ୟ ରୋମାଣ୍ଟିକ୍ କାବ୍ୟର ଅଭିମୁଖ୍ୟ ତଥା ବଙ୍ଗଳାର ପ୍ରଖ୍ୟାତ କବି ରବୀନ୍ଦ୍ର ନାଥ ଠାକୋରଙ୍କ ଗୀତିକବିତା ସାମୟିକ ଭାବରେ ଓଡ଼ିଶାରେ କେତେଜଣ ତରୁଣ କବିଙ୍କୁ ଉଦ୍‌ବୁଦ୍ଧ କରିଥିଲା । ସେମାନେ ହେଲେ ଅନ୍ନଦା-ଶଙ୍କର ରାୟ, ବୈକୁଣ୍ଠନାଥ ପଟ୍ଟନାୟକ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ଶରତ ମୁଖାର୍ଜି, ହରିହର ମହାପାତ୍ର । ଏମାନେ ସମସ୍ତେ ସବୁଜ ଗୋଷ୍ଠୀ ଭାବରେ ପରିଚିତ । ସାମୟିକ ଭାବରେ 'ସବୁଜ ଦଳ' ଗଠନ ସବୁଜ ଯୁଗ ଭାବରେ ନାମିତ ହେଲେହେଁ ଏହାର ଯୁଗୀୟ ସ୍ୱାତନ୍ତ୍ର୍ୟ ସେପରି ମହତ୍ତ୍ୱପୂର୍ଣ୍ଣ ନୁହେଁ । ଏହାସତ୍ତ୍ୱେ ଏହି ସବୁଜ କବିତା ଆଧୁନିକ କବିତାକୁ ଏକ ନୂତନ ଚମକ ଦେବାରେ ଯଥେଷ୍ଟ ପ୍ରେରଣା ସୃଷ୍ଟି କରିଛି । ମାତ୍ରାବୃତ୍ତ ପ୍ରୟୋଗ, ମୁକ୍ତ ଛନ୍ଦର ବିକାଶ ତଥା ସନେଟ୍ ପ୍ରଭୃତି ଏହାର ମୌଳିକ ସୃଷ୍ଟି ଭାବରେ ସ୍ୱୀକୃତ । ସବୁଜ ଯୁଗ ହିଁ ପ୍ରଥମେ ଓଡ଼ିଆ ସାହିତ୍ୟରେ ଆନ୍ତର୍ଜାତିକ ବାତାବରଣ ସୃଷ୍ଟି କରିଥିଲେ ।

## ନୂତନ କବିତାର ଉନ୍ମେଷ : କ୍ରିୟା ଓ ପ୍ରତିକ୍ରିୟା—

ସ୍ୱାଧୀନୋତ୍ତର ଯୁଗରେ ହିଁ କବିତାରେ ଯୁଗାନ୍ତର ଆସିଲା । ଏହାକୁ ଆଧୁନିକ ବା ଅତ୍ୟାଧୁନିକ କବିତା ରୂପେ ଚିହ୍ନିତ କରିବା ଉଚିତ ହେବନାହିଁ । ସମାଲୋଚନାର ପରିଭାଷାରେ ଆଧୁନିକର ଏକ ନିର୍ଦ୍ଦିଷ୍ଟ ଚରିତ୍ର ଅଛି । ମଧ୍ୟଯୁଗୀୟ ପ୍ରବୃତ୍ତି ମଧ୍ୟରୁ ସମାଜ ଓ ସାହିତ୍ୟର ମାନବତାବାଦୀ ଉନ୍ମେଷକୁ (humanity) ସାଧାରଣତଃ ଆଧୁନିକ ନାମରେ ଚିହ୍ନିତ କରି ଯାଇଥାଏ । ଆଧୁନିକ ଶବ୍ଦଟି ନିତାନ୍ତ ଆପେକ୍ଷିକ । ମଧ୍ୟଯୁଗୀୟ ପ୍ରବୃତ୍ତି ଓ ଚେତନାରୁ ମୁକ୍ତ ପାଇ ଏହି ଯୁଗରେ ହିଁ ଆଧୁନିକତାର ନବଜନ୍ମ ଘଟିଥିଲା । ସାହିତ୍ୟରେ ମଧ୍ୟ ଘଟିଥିଲା ରୂପାନ୍ତର । କବି ମାୟାଧର ମାନସିଂହ, ରାଧାମୋହନ ଗଡ଼ନାୟକ, ସଚ୍ଚିଦାନନ୍ଦ ରାଉତରାୟ,

କୃଷ୍ଣଚନ୍ଦ୍ର ତ୍ରିପାଠୀ, ଚନ୍ଦ୍ରଶେଖର ମିଶ୍ର, କ୍ଷିତିଶଚନ୍ଦ୍ର ଦେ ପ୍ରମୁଖ କବିମାନେ ଓଡ଼ିଆ କବିତା କ୍ଷେତ୍ରରେ ପ୍ରାକ୍ ତିରିଶ କାଳରେ ଅବତୀର୍ଣ୍ଣ ହେଲାପରେ ସବୁଜ କାବ୍ୟ ଚେତନା ସବୁଜ କାବ୍ୟ ଗୋଷ୍ଠୀ ମଧ୍ୟରେ ଆବଦ୍ଧ ନ ରହି ଏକ ମିଶ୍ରିତ କାବ୍ୟ ଆନ୍ଦୋଳନର ରୂପ ଧାରଣ କରିଥିଲା । ପୁରାତନ କାବ୍ୟିକ ପଦ୍ଧତିକୁ ପରିହାର କରି ନୂତନ କିଛି ସୃଷ୍ଟି କରିବାର ଅଭିପ୍ସା ସବୁଜ କବିମାନେ ପ୍ରଥମେ ରବୀନ୍ଦ୍ର କାବ୍ୟ ମାନସ ଓ ପାଶ୍ଚାତ୍ୟ ରୋମାଣ୍ଟିକ୍ କାବ୍ୟଧାରା ମଧ୍ୟ ଦେଇ ଯେଉଁ ପରୀକ୍ଷାନିରୀକ୍ଷା ଆରମ୍ଭ କରିଥିଲେ ତାହା ପ୍ରାୟ ୧୯୩୫ ପର୍ଯ୍ୟନ୍ତ ଅବ୍ୟାହତ ଥିଲା । ଏଥିରୁ ସ୍ପଷ୍ଟ ହୁଏ ଯେ ଏକ ବଳିଷ୍ଠ ବାସ୍ତବବାଦୀ ସାହିତ୍ୟିକ ଆଭିମୁଖ୍ୟ ପାଇଁ ନିଶ୍ଚିତ ରୂପେ କ୍ଷେତ୍ର ପ୍ରସ୍ତୁତ ସେହି ସମୟରୁ ହିଁ ଆରମ୍ଭ ହୋଇଥିଲା । ନିଜକୁ ଅ-ସବୁଜ କବି ଭାବରେ ପ୍ରତିଷ୍ଠିତ କରିଥିବା କବି ମାୟାଧର ମାନସିଂହ ଗୀତି ଗୀତି ପ୍ରେମ କବିତାର ରୋମାଣ୍ଟିକ୍ ପ୍ରଣୟ ବିରୁଦ୍ଧରେ ଓଡ଼ିଆ ସାହିତ୍ୟରେ ଏକ ପ୍ରତିବାଦର ସ୍ୱର ତୀବ୍ରତର ହୋଇଥିଲା । ବିଶେଷତଃ କବି ଶ୍ରୀ ପ୍ରତାପ ସେନ୍ ଓ ଶ୍ରୀ ସଚ୍ଚି ରାଉତରାୟ ଓଡ଼ିଆ କବିତାର ଆଙ୍ଗିକରେ ଗଦ୍ୟ ଶୈଳୀର ଅନୁବର୍ତ୍ତନ କଲାପରେ ଏହି ପ୍ରତିବିପ୍ଳବୀର ସ୍ୱର ଅତ୍ୟନ୍ତ ଉଗ୍ରରୂପ ଧାରଣ କରିଥିଲା । ୧୯୩୦-୪୦ ଦଶକରେ ଯେଉଁ ପ୍ରଗତିବାଦୀ କାବ୍ୟଚେତନା ଓଡ଼ିଆ କାବ୍ୟ କବିତା କ୍ଷେତ୍ରରେ ଏକ ସମୟୋଚିତ ଆହ୍ୱାନର ସ୍ୱର ନେଇ ପ୍ରବେଶ କରିଛି ତାହା ଓଡ଼ିଆ କବିତାର ପାରମ୍ପରିକ ଧାରାରେ ଯେ ଏକ ନିଶ୍ଚିତ ବିପ୍ଳବ ଏଥିରେ ସନ୍ଦେହ ନାହିଁ । ଏହି କାବ୍ୟ ସ୍ୱରର ଉଦ୍‌ଗାତାମାନେ ନିର୍ଦ୍ଦିଷ୍ଟ ଭାବେ ମାର୍କସୀୟ ଚେତନାକୁ ହିଁ ପ୍ରଗତିବାଦୀ ନାମରେ ନାମିତ କରିଛନ୍ତି; କିନ୍ତୁ ଏହାଦ୍ୱାରା ଏହି ନବୀନ କାବ୍ୟ ଆଭିମୁଖ୍ୟର ସଂଜ୍ଞା ଓ ପରିସର ସଙ୍କୁଚିତ ହୋଇ ଯାଇଛି । ୧୯୩୫-୩୬ ବେଳକୁ ପ୍ରଗତିବାଦୀ କାବ୍ୟ ଚେତନାରେ ଏକ ଶୋଷଣମୁକ୍ତ ଶ୍ରମ ନିର୍ଭର ସମତୁଲ୍ୟ ସମାଜ ପ୍ରତିଷ୍ଠା ଦିଗରେ ଉଦ୍ୟମ ହୋଇଥିବାର ପ୍ରମାଣ ମିଳେ । ୧୯୨୦-୩୦ ମଧ୍ୟରେ ରୁଷର ଅକ୍ଟୋବର ବିପ୍ଳବର ପ୍ରଭାବରେ ଭାରତର ଦୁଇଟି ଅଗ୍ରଗାମୀ ପ୍ରଦେଶ ବଙ୍ଗ ଓ ବମ୍ବେରେ କୃଷୀ ଓ ଶ୍ରମିକମାନଙ୍କ ମଧ୍ୟରେ ନବ ଜାଗରଣ ଦେଖାଦେଇ ସେମାନଙ୍କ ପ୍ରତିନିଧି ମୂଳକ କମ୍ୟୁନିଷ୍ଟ ପାର୍ଟି ଗଢ଼ା ଯାଇଥିଲା । କିନ୍ତୁ ତତ୍କାଳୀନ ସରକାରଙ୍କ ୧୯୨୪ କାନପୁର ଷଡ଼ଯନ୍ତ୍ର ମାମଲା ଓ ୧୯୨୮ର ମିରଟ୍ କମ୍ୟୁନିଷ୍ଟ ଷଡ଼ଯନ୍ତ୍ର ମାମଲାରେ ଏହି ନବୋତ୍ଥିତ ଗଣ-ଆନ୍ଦୋଳନକୁ ଅବଦମିତ କରିବାକୁ ପ୍ରବଳ ଚେଷ୍ଟା ହୋଇଥିଲା । କିନ୍ତୁ ଓଡ଼ିଶାରେ ଏହି ଦଳ ଆଶାତୀତ ସଫଳତା ହାସଲ କରିପାରି ନ ଥିଲା । ଅତ୍ୟାଚାରିତ ଗଡ଼ଜାତ ଲୋକଙ୍କ ମନରେ ଆଶା ଉଦ୍ଦୀପନା ସୃଷ୍ଟି କରିବା ପାଇଁ

ଓଡ଼ିଶା କଂଗ୍ରେସ ସୋସାଲିଷ୍ଟ ପାର୍ଟି ଗଠିତ ହୋଇ ଜାଗରଣ ସୃଷ୍ଟି କରିଥିଲା । ଏହାର ନେତୃତ୍ୱ ନେଇଥିଲେ ସ୍ୱର୍ଗତଃ ଭଗବତୀ ଚରଣ ପାଣିଗ୍ରାହୀ, ନବକୃଷ୍ଣ ଚୌଧୁରୀ, ସ୍ୱର୍ଗତଃ ଭୁବନାନନ୍ଦ ଦାସ, ପ୍ରାଣନାଥ ପଟ୍ଟନାୟକ ପ୍ରମୁଖ । ଓଡ଼ିଆ ସାହିତ୍ୟରେ ଏକ ଭାବଗତ ପ୍ରଗତି ଚେତନା ସୃଷ୍ଟି କରିବା ପାଇଁ ୧୯୩୫ ମସିହା ନଭେମ୍ବର ୨୯ ତାରିଖରୁ ଡିସେମ୍ବର ୪ ତାରିଖ ପର୍ଯ୍ୟନ୍ତ କଟକର ଶ୍ରୀରାମଚନ୍ଦ୍ର ଭବନରେ ସ୍ୱର୍ଗତଃ ଭଗବତୀ ଚରଣ ପାଣିଗ୍ରାହୀଙ୍କ ନେତୃତ୍ୱରେ ଏକ ଆଲୋଚନା ଚକ୍ର ଅନୁଷ୍ଠିତ ହୋଇଥିଲା । ଏହି ଆଲୋଚନାର ପରିସର ମଧ୍ୟରୁ ଯେଉଁ ସାହିତ୍ୟ ଅନୁଷ୍ଠାନଟି ଯୁଗଚେତନାକୁ ଲକ୍ଷ୍ୟକରି ଗଠିତ ହୋଇଥିଲା ତାହା 'ନବଯୁଗ ସାହିତ୍ୟ ସଂସଦ' ନାମରେ ନାମିତ । ଏପରି ଏକ ସଙ୍ଗଠନ ଗଢ଼ିବା ପଛରେ ନିଶ୍ଚିତ ଭାବରେ ଭଗବତୀ ଚରଣଙ୍କ ଚିନ୍ତାଧାରାରେ ପ୍ୟାରିସ୍‌ରେ ଅନୁଷ୍ଠିତ ହୋଇଥିବା ବିଶ୍ୱଶାନ୍ତି କଂଗ୍ରେସର ପ୍ରଭାବ ଜୀବନ୍ତ ଥିଲା । କାରଣ ଏହି ସମ୍ମିଳନୀରେ ମୁଖ୍ୟତଃ ୟୁରୋପ, ଏସିଆର ବିଶିଷ୍ଟ ସାହିତ୍ୟିକମାନେ ଏକତ୍ରିତ ହୋଇଥିଲେ । ଆବାହକ ଥିଲେ ମାକସିମ୍ ଗର୍କି ଏବଂ ୟୁରୋପରୁ ରୋମାଁରୋଲା ଓ ବାରବୁସ୍ । ସମ୍ମିଳନୀରେ ଯେଉଁମାନେ ଯୋଗ ଦେଇଥିଲେ ସେମାନଙ୍କ ମଧ୍ୟରେ ଆନ୍ଦ୍ରେ ଜିଡ, ଇ: ଏମ୍‌ଫୋଷ୍ଟର୍, ଆନ୍ଦ୍ରେ ମଲର, ଆଲଡ଼ସ୍ ହକ୍ସଲେ, ମିଚେଲ ଗୋଲଡ଼, ଜନ୍ ଷ୍ଟ୍ରାଚି ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଏହି ମର୍ମରେ ଏକ ସାଂସ୍କୃତିକ ସମ୍ମିଳନୀ କରି ନୂତନ ସାହିତ୍ୟ ସୃଷ୍ଟି ନିମନ୍ତେ ବାତାବରଣ ଗଢ଼ି ତୋଳିବା ସ୍ୱର୍ଗତଃ ଭଗବତୀ ଚରଣଙ୍କ ସାମାଜିକ ନେତୃତ୍ୱ ଓ ଦୂରଦୃଷ୍ଟିର ପରିଚୟ ଦିଏ । କେବଳ ବକ୍ତୃତା ବା ସଭା ସମିତି ମାଧ୍ୟମରେ ଏହି ନବୀନ ଭାବଧାରାକୁ ଯଥାର୍ଥ ଭାବରେ ସମାଜରେ ପ୍ରତିଷ୍ଠିତ କରି ହେବନାହିଁ ଏବଂ ସେଥିପାଇଁ ଉପଯୁକ୍ତ ଗଣମାଧ୍ୟମ ଯେ ନିତାନ୍ତ ଆବଶ୍ୟକ ଏହି ବିଚାରରେ ସେ ୧୯୩୭ ମସିହା ମେ ମାସରେ 'ଆଧୁନିକ' ନାମରେ ଏକ ମାସିକ ପତ୍ର ପ୍ରକାଶ କଲେ । ଏହି ପତ୍ରିକାର ଆଭିମୁଖ୍ୟ ହିଁ 'ନବଯୁଗ ସାହିତ୍ୟ ସଂସଦ'ର ଘୋଷିତ ଆଭିମୁଖ୍ୟର ଅନୁବର୍ତ୍ତୀ ଥିଲା । ଆଧୁନିକ ପତ୍ରିକା ପ୍ରକାଶିତ ହେବାପରେ 'ଉତ୍କଳ ସାହିତ୍ୟ', 'ସହକାର', 'ନବଭାରତ' ପ୍ରଭୃତି ପତ୍ରିକାରେ ପୂର୍ବାନୁଲୋଚିତ ୟୁରୋପୀୟ ଚିନ୍ତାଧାରା ଦେଇ ଆସିଥିବା ଏକ ନବୀନ ଭାବଧାରାର ରୂପଗତ ସାହିତ୍ୟିକ ଚିତ୍ର କ୍ରମେ ବ୍ୟାପକତର ହୋଇଛି । ମୁଖ୍ୟତଃ କବିତା କ୍ଷେତ୍ରରେ ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ ଓ କାଳନ୍ଦୀ ଚରଣ ପାଣିଗ୍ରାହୀଙ୍କ ଠାରୁ ଏହି ମାନବବାଦୀ ବୈପ୍ଳବିକ ଭାବଧାରା ୧୯୩୫-୪୦ ମଧ୍ୟରେ ଆରମ୍ଭ ହୋଇ ୧୯୪୦-୫୦ ମଧ୍ୟରେ ଶ୍ରୀ ରଘୁନାଥ ଦାସ, ଶ୍ରୀ ମନମୋହନ ମିଶ୍ର, ଶ୍ରୀ

କୃଷ୍ଣ ବିହାରୀ ଦାଶ, ଶ୍ରୀ ରଜନୀକାନ୍ତ ଦାସ, ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ ଓ ଶ୍ରୀ ଚକ୍ରଧର ରାଉତ, ଜୀବନାନନ୍ଦ ଆଚାର୍ଯ୍ୟ, ବୈକୁଣ୍ଠନାଥ ଦାସ, ସୁନନ୍ଦ କର ପ୍ରମୁଖ ବହୁ ମୁଖ୍ୟ ଓ ଗୌଣ କବିଙ୍କ ଚେତନାରେ କ୍ରମଶଃ ପ୍ରତିଷ୍ଠିତ ହୋଇଛି । ସଚ୍ଚିଦାନନ୍ଦଙ୍କ କବିତା ସଙ୍କଳନ 'ଅଭିଯାନ' (୧୯୩୮), 'ବାଜିରାଉତ' (୧୯୪୩), କାଳନ୍ଦୀ ଚରଣଙ୍କ କବିତା 'ଜୀବନର ସ୍ୱର୍ଗ' (୧୯୩୫), 'ଜୟ ଭଗବାନ', 'ଯାଦୁଘର', 'ହ୍ରସ୍ୱଟିଏ କେଉଁଠା' 'ଆଗାମୀ' ପ୍ରଭୃତି ତଥା ଶ୍ରୀ ଅନନ୍ତ ପଟ୍ଟନାୟକଙ୍କ ରଚିତ 'ନବଯୁଗ ସାହିତ୍ୟ ସଂସଦ'ର ପ୍ରାରମ୍ଭିକ ସଙ୍ଗୀତ ରୂପେ ଧ୍ୱନିତ 'ଜାଗବନ୍ଧନ ହର' ଠାରୁ ସଚ୍ଚିବାବୁଙ୍କ ସହିତ ଯୁଗ୍ମ ପ୍ରଣେତା ଭାବରେ 'ରକ୍ତଶିଖା' ଓ ପରେ 'ଶାନ୍ତିଶିଖା'ରେ ଏବଂ ଶ୍ରୀ ଲକ୍ଷ୍ମୀଧର ନାୟକଙ୍କ 'ପ୍ରଳୟ ପଥେ', ପ୍ରବାଚର ଯାତ୍ରୀ, ବଞ୍ଚିତର ବ୍ୟଥା ଆଦି କବିତାରେ ଏହି ଭାବଧାରାର ଅସାଧାରଣ ଉନ୍ମୁଖତା ଲକ୍ଷ୍ୟ କରିଯାଏ । 'କୋଣାର୍କ' କବିତାରେ ସଚ୍ଚି ରାଉତରାୟ ନିଜର ପ୍ରଗତିଶୀଳ ଚିନ୍ତାଧାରା ପ୍ରକାଶ କରି କହିଥିଲେ—

"ତୁମେ ଯହିଁ ଦେଖ ଦିବ୍ୟ ଶିଳାରେ ରମ୍ୟ କଳାର ରୂପ
ମୁଁ ତହିଁ ଦେଖୁଛି କୋଟି କଙ୍କାଳ ଭଗ୍ନ ବୁକୁର ସ୍ତୂପ ।"
(କୋଣାର୍କ) (୧)

ଏତଦ୍ ବ୍ୟତୀତ ତାଙ୍କ ଲିଖିତ 'ଅଭିଯାନ' ପୁସ୍ତକରେ ସନ୍ନିବେଷ୍ଟିତ ପ୍ରତିଟି କବିତାରେ ବିପ୍ଳବର ସ୍ୱର ଝଙ୍କୃତ ହୋଇଥିଲି । କିନ୍ତୁ ସେ ତାଙ୍କୁ ସ୍ୱଚ୍ଛ କାବ୍ୟ ତଟିନୀର ଜଳଧାର ନ କରି ଅନେକ ରୂପକଳ୍ପ, ଚିତ୍ରକଳ୍ପର ହୁଡ଼ବାନ୍ଧି ହ୍ରଦରେ ପରିଣତ କରିଦେଲେ । ଯେପରି ଅନନ୍ତ ପଟ୍ଟନାୟକଙ୍କ କବିତାରେ ଏପରି ଯନ୍ତ୍ରଣା ଜର୍ଜରିତ ଯୁଗ ମାନସର ବ୍ୟଥା ସ୍ପଷ୍ଟ ପରିଲକ୍ଷିତ ହୋଇଥାଏ ।

"ମୃତ୍ୟୁର ଜଲେ ପହଁରି ପହଁରି
ତୋଲେ ଯେ ତୋ ଲାଗି ରକ୍ତ କଇଁ
କୃଷ୍ଣ ନାଗର ଦଂଶନେ ସେ କି
ପଡ଼ିବ ନଇଁରେ ପଡ଼ିବ ନଇଁ । (୨)
(ଝଡ଼ରେ ରୁଧିର—ଅନନ୍ତ ପଟ୍ଟନାୟକ ପୃ-୭)

ଏଠାରେ ମୃତ୍ୟୁର ଜଳ ଏକ ଶକ୍ତ ଭାବାପନ୍ନ ସଂଗ୍ରାମ ବୋଲି ଘୋଷଣା ହୋଇ ସାରିଲା ପରେ 'ରକ୍ତକଇଁ' ସାମ୍ୟବାଦର ଲୋହିତ ଭାବ ବୋଲି ପ୍ରତୀକିତ ହୋଇଛି । ତା' ଛଡ଼ା ଅନ୍ତିମ ଲକ୍ଷ୍ୟକୁ ପହଞ୍ଚିବା ପାଇଁ ମଝିରେ 'କୃଷ୍ଣନାଗର' ଭଳି କେତେ ବୁଜୁଆ ବସ୍ତୁ କଳ୍ପିତ ଭାବରେ ମେଣ୍ଟାପଲ ଭାବରେ ବାଟ

ରେକଛନ୍ତି । ଓଡ଼ିଆ ସାହିତ୍ୟାକାଶରେ ଉଦ୍ଦାମ ଝଡ଼ର ସନ୍ତ୍ରାସ ତୋଳୁଥିବା କବି ରବି ସିଂଙ୍କର ଲେଖନୀକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ସେ ସ୍ପଷ୍ଟବାଦୀ ଓ ନିର୍ଭୀକ ମନର ରୂପରେଖ ନେଇ ନିଜକୁ ପରିଚିତ କରାଇଛନ୍ତି ଜଣେ ଶିବିରମୁକ୍ତ ଲେଖକ ହିସାବରେ । ତେଣୁ ପ୍ରେମ କବିତାର ଗତିପଥରୁ ତାଙ୍କର ବିଚ୍ୟୁତି ଘଟିଛି ବହୁକାଳୁ । ସେ ତାଙ୍କର ପ୍ରତିଟି କାବ୍ୟ କବିତାରେ ସୁଲଳିତ ଛନ୍ଦର ଆବର୍ତ୍ତିମାନରେ ସର୍ବହରାର ବେଦନାକୁ ପ୍ରତିଷ୍ଠିତ କରିବା ସଙ୍ଗେ ସଙ୍ଗେ ମାର୍କସବାଦୀ ବୈପ୍ଲବିକ ତଥ୍ୟକୁ ସିଦ୍ଧ ବୋଲି ଘୋଷଣା କରିଛନ୍ତି—

"ବିପ୍ଳବ କି ମରେ କେବେ ଶାସକର ସୁତୀକ୍ଷ୍ଣ ସଙ୍ଗୀନେ,
ଫାଶୀ ମଞ୍ଚେ କାରାଗାରେ ଅବା କେଉଁ ବନର ଗହନେ ।
ସାମରିକ ସିପାହିର ଉଡ଼ାଣିଆ ରାଇଫଲ ଗ୍ରେନେଡ,
ପାରିଛି କି ବିଧିବେ ମାରି ଇତିହାସେ ପ୍ରଗତିର ଥାଟ ।" (୩)

(ଝଡ଼—ରବି ସିଂ)

ସାଂପ୍ରତିକ ତରୁଣ ରଥୀମାନଙ୍କ ଭିତରୁ ଯାହାଙ୍କ ଲେଖନୀରୁ ଏକ ଆଗ୍ନେୟ ଝଲକର ଉଦ୍‌ଗୀରଣ ହେଉଛି, ସେମାନଙ୍କ ଭିତରୁ ସଦାଶିବ ଦାଶ ଅନ୍ୟତମ । ତାଙ୍କର ଅନୁରୂପ ଶୈଳୀ ଓ ଦୀର୍ଘ କବିତା ମାଧ୍ୟମରେ ସେ ମାର୍କସବାଦୀ ଚେତନାର ଆଲୋଚନା ଏକ କର୍ମ ବହିର୍ଭୂତ କାର୍ଯ୍ୟ । ବିଶେଷତଃ କାବ୍ୟ ଜଗତରେ ଏହା ପ୍ରତି ମୁହୂର୍ତ୍ତରେ ଦରିଦ୍ର କବିର ଲେଖନୀରୁ ଲବ୍ଧ ହୋଇ ଝରିଥାଏ । କାରଣ ପ୍ରଚଳିତ ସମାଜ ବ୍ୟବସ୍ଥାରେ ପ୍ରତ୍ୟେକ କଳାକାର ଏଇ ଶୋଷଣରୂପୀ କଙ୍କାଳର ଶରବ୍ୟ । ଓଡ଼ିଶାର ଅନ୍ୟାନ୍ୟ କବିମାନଙ୍କ ଭିତରୁ ରମେଶ ଧଳ, ନଳିନୀଦେବୀ ରାଉତରାୟ, ପ୍ରମୋଦ ମହାନ୍ତି, ଡଃ ପ୍ରସନ୍ନ ମିଶ୍ର, ଅମିୟ ବସୁ, ହରେକୃଷ୍ଣ ଦାସ, ମହମ୍ମଦ ଜମିଉଲ୍ଲା 'ସିଦ୍ଧାର୍ଥ' ଇତ୍ୟାଦିଙ୍କ କାବ୍ୟ କବିତାରେ ମଧ୍ୟ ମାର୍କସବାଦୀ ଦୃଷ୍ଟିଭଙ୍ଗୀର ଛାପ ବିଶେଷ ଭାବରେ ପରିଲକ୍ଷିତ ହୁଏ ।

## ଆଧୁନିକ ଓଡ଼ିଆ କବିତାରେ ପ୍ରୟୋଗବାଦୀ ଧାରା—

ସାଧାରଣତଃ ଆଧୁନିକ ଓଡ଼ିଆ କବିତାର ବିକାଶ ପର୍ବକୁ କେହି କେହି ସମାଲୋଚକ ପ୍ରୟୋଗବାଦୀ ଧାରା ନାମରେ ନାମିତ କରିଛନ୍ତି । ମୋଟ ଉପରେ ୧୯୫୦ ପରବର୍ତ୍ତୀ ଦୁଇଟି ଦଶକ ହିଁ ଏହି ପ୍ରୟୋଗବାଦୀ ସମୟ । ଓଡ଼ିଆ କବିତା ଏହି ସମୟରେ ତା'ର ବାମପନ୍ଥୀ-ମାନବବାଦୀ-ସାମାଜିକ ଧାରାକୁ ଉପେକ୍ଷା କରି

ବିଶିଷ୍ଟ କବିମାନଙ୍କ କାବ୍ୟ ଚେତନାରେ ଏକ ବ୍ୟକ୍ତିମୁଖୀ ରୋମାଣ୍ଟିକ୍ ବାସ୍ତବବାଦୀ ଧାରା ବରଣ କରି ନେଇଛି । ଗୁରୁପ୍ରସାଦ ମହାନ୍ତିଙ୍କ 'ନୂତନ କବିତା' ଓ ସଚ୍ଚିଦାନନ୍ଦ ରାଉତରାୟଙ୍କ 'ସ୍ୱଗତ' ଏହି ପ୍ରୟୋଗବାଦୀ ଧାରାର ଦୁଇଟି ଉତ୍କୃଷ୍ଟ ପ୍ରତିନିଧିମୂଳକ ସୃଷ୍ଟି । ଗୁରୁପ୍ରସାଦଙ୍କ ବ୍ୟକ୍ତିଜୀବନ ଓ ସମାଜରେ ଘଟୁଥିବା ଅବମୂଲ୍ୟାୟନର ଚିତ୍ର ତାଙ୍କ କବିତାରେ ଏକ ଉତ୍କଟ ବାସ୍ତବବାଦୀ ଦୃଷ୍ଟିକୋଣରୁ ପ୍ରଦାନ କଲେ । କିନ୍ତୁ ବିକ୍ରବ୍ୟାଟିକୁ ସିଧାସଳଖ ନ କହି ଗୂଢ଼ୋକ୍ତି, ବ୍ୟଞ୍ଜନା ଓ ରୂପକ ମାଧ୍ୟମରେ ତାହା ପ୍ରକାଶ କଲେ । ଯୁଗେ ଯୁଗେ ଉତ୍କୃଷ୍ଟ କବିତାର ଏହା ହିଁ ଅନ୍ତର୍ନିହିତ ଧର୍ମ ଥିଲା । କିନ୍ତୁ ଗୁରୁପ୍ରସାଦଙ୍କ କବିତାରେ ଯେଉଁ ଅଭିମୁଖ୍ୟଟି ପରିଚ୍ଛନ୍ନ ହୋଇ ଉଠିଲା; ସମାଲୋଚକ ଯତୀନ୍ଦ୍ର ମୋହନ ମହାନ୍ତିଙ୍କ ମତରେ ତାହା ହେଲା—"ଏ କବିତାଗୁଡ଼ିକ ରୋମାଣ୍ଟିକ୍ କାବ୍ୟଧର୍ମୀ ନୁହନ୍ତି । ଏହି କବିତାଗୁଡ଼ିକର ଅନ୍ତରାଳରୁ ମେଟାଫିଜିକାଲ୍ କବିମାନଙ୍କ ସହିତ ବଦ୍‌ଲେୟାର ଓ ଇଲିୟଟ୍‌ଙ୍କୁ ମଧ୍ୟ ଦେଖାଯାଏ । ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ଏଠାରେ ରୋମାଣ୍ଟିକ୍ ନୁହେଁ, ବ୍ୟଙ୍ଗାତ୍ମକ । ଏହି କବିତାର ପ୍ରଧାନ ଉପାଦାନ (wit) ଓ ଏକ ରୁଚିପୂର୍ଣ୍ଣ ଶାଳୀନତା (urbanity), ଚେତନା ଏଠାରେ ବ୍ୟାପକ ଓ ବହୁ ବିଚିତ୍ର । କିନ୍ତୁ ଉପମା, ଉପମେୟର ସଂକ୍ଷିପ୍ତ ପ୍ରୟୋଗ ଦ୍ୱାରା ପ୍ରକାଶଭଙ୍ଗୀ କଠିନ ଭାବରେ ସୁନିୟନ୍ତ୍ରିତ ।" (୪) (ନୂତନ କବିତାର ଭୂମିକା—ପୃ : ୬) ଗୁରୁପ୍ରସାଦ ମହାନ୍ତି ଆଧୁନିକ ଓଡ଼ିଆ କବିତାର ଉନ୍ମେଷ ପର୍ବ (୧୯୩୫-୫୦)ରେ ଥିଲେ ଏକାନ୍ତ ରୋମାଣ୍ଟିକ୍; ତେଣୁ ତାଙ୍କୁ ସବୁଜଠାରୁ ଅଲଗା କରି ଦେଖିବାର ଅବକାଶ ମଧ୍ୟ ନ ଥିଲା । କିନ୍ତୁ କବିତା ରଚନାର ଦୀର୍ଘ ବିରତି ପରେ ସେ ସମ୍ପୂର୍ଣ୍ଣ ଏକ ପରିବର୍ତ୍ତିତ କାବ୍ୟମାନସ ନେଇ ଏହି ବିକାଶ ପର୍ବରେ ଆତ୍ମପ୍ରକାଶ କଲେ । ତାଙ୍କ କବିତାର ଅନ୍ତରାଳରୁ ପ୍ରତ୍ୟେକ ବ୍ୟକ୍ତିବିଶେଷର ଉତ୍କଟ ମାନସିକ ଆଲୋଡ଼ନ, ପ୍ରେମର ମୋହହୀନ ମହଳରୂପ, ଆତ୍ମପ୍ରତାରଣା, ଉତ୍କଟ ନୈରାଶ୍ୟ ଓ ପାପବୋଧ ପୁଣି ସାମାଜିକ ପରିବେଶର ନିତାନ୍ତ ଗ୍ଲାନିକର କୁତ୍ସିତ ଦାଗ ଓ ମଳିନ ଚିତ୍ର ପ୍ରାଞ୍ଜଳ ହୋଇ ଉଠିଲା । ବ୍ୟକ୍ତି ମାନସର ବିଖଣ୍ଡିତ ଚେତନାର ରୂପ ଦେବାକୁ ଯାଇ ସେ ଶକ୍ତିଶାଳୀ ରୂପକଳ୍ପ, ପ୍ରତୀକ ଓ ମିଥ୍ ମଧ୍ୟ ପ୍ରୟୋଗ କଲେ । ଏ ସବୁକୁ ଏକ ବ୍ୟଞ୍ଜନାତ୍ମକ କଥନଭଙ୍ଗୀ ମାଧ୍ୟମରେ ପ୍ରକାଶ କରି ସଚ୍ଚି ବାବୁଙ୍କ ବାକ୍‌ଚାତୁରୀଠାରୁ ବରଂ ଅଧିକ ଭାବେ କ୍ଲାସିକାଲ୍ କାବ୍ୟରୀତି ସହିତ ସମ୍ପର୍କ ସ୍ଥାପନ କଲେ । ଜୀବନର ଓ ସମାଜର ପରିବର୍ତ୍ତିତ ପରିସ୍ଥିତିକୁ ଯଥାର୍ଥ ଭାବରେ ରୂପ ଦେବାକୁ ଉପମା ଓ ପ୍ରତୀକ ଭାବରେ ସେ 'ଶିମୁଳିକଣ୍ଟା', 'ପରଘଡ଼ା', 'କୋରଡ଼ ଆଖି', 'ଥୁଣ୍ଟାଗଛ',

'ଟଳମୋଡ଼', 'ଭଙ୍ଗା କୋଠାଘର', 'ଛଣ୍ଡାଲୁଗା', 'ବାଲଚର' 'ବ୍ୟାଣ୍ଡବଲ୍', 'ବାଦୁଡ଼ି', 'କାଦୁଅ' ଏହି ପ୍ରାତ୍ୟହିକ ଜୀବନର ଦୃଶ୍ୟଗୁଡ଼ିକୁ ସଂଗ୍ରହ କଲେ । ଅନ୍ୟତମ ପ୍ରୟୋଗବାଦୀ କବି ରମାକାନ୍ତ ରଥଙ୍କ କବିତାରେ ଏହିପରି ରୂପ-ଚେତନାର ମାତ୍ରା ଅଧିକ । ଉଦାହରଣ ସ୍ୱରୂପ—'ମଲ୍ଲୀ ପାଦ', 'ଜିର୍ଣ୍ଣିମଗ୍ନ ଗ୍ରୀଷ୍ମ', 'ପାଚିଲା ପତ୍ର', 'ନିଭୃତ କୋଠରୀ', 'ହଳଦିଆ ଜହ୍ନ' ଆଦି ପ୍ରତୀକ ଓ ରୂପକ ମାଧ୍ୟମରେ ଏହି ବାସ୍ତବବାଦୀ କାବ୍ୟମାନସକୁ ଛୁଇଁହୁଏ । ଗୁରୁ ମହାନ୍ତିଙ୍କ ଚିତ୍ରକଳ୍ପ ଖୁବ୍ ଶାଣିତ ଭାବରେ ଆନୁପାତିକତା ରକ୍ଷାକରି ଲକ୍ଷ୍ୟବିଦ୍ଧ କଲାବେଳେ ସଚ୍ଚି ରାଉତରାୟଙ୍କ ଚିତ୍ରକଳ୍ପ ଖୁବ୍ ରୋମାଣ୍ଟିକ୍ ଓ ଆବେଗପ୍ରବଣ ଭଳି ମନେହୁଏ । ଉଦାହରଣ ସ୍ୱରୂପ—'ମାଛକାତି ମେଘରାତି', 'ଗହମ ରଙ୍ଗର ଗାଲ', 'ଚର୍ବିପରି ସ୍ନିଗ୍ଧ ନଦ', 'ଅଫିମ ରାତି', 'ଘାସର ହ୍ରଦ', 'ଶବଖି ଆଖି', 'ଚେଣମ ଶ୍ୱାସ', 'କାମନାର ନୀଳାଭ ଚୌରଙ୍ଗୀ'—ଏହିପରି ରାଶି ରାଶି ଉଦାହରଣ ଦିଆଯାଇ ପାରେ । ତୁଳନାତ୍ମକ ଭାବରେ ନିମ୍ନଲିଖିତ କେତୋଟି ଚିତ୍ରକଳ୍ପର ଦୃଷ୍ଟାନ୍ତରୁ ପ୍ରୟୋଗବାଦୀ କବିତାର ବିଶେଷତ୍ୱ ଜାଣିହେବ । ଉଦାହରଣ—"ସନ୍ଧ୍ୟା କେବେ ନଇଁଯାଏ ଗାଢ଼ନୀଳ ବଣନଈଁ ପରି / ଆକାଶର କଳାଧଳା ବଉଦର ପାହାଡ଼ ଉପରେ / ସନ୍ଧ୍ୟା ପୁଣି କେବେ ନଚେ କୁଢ଼ କୁଢ଼ କଳା କଳା ବଉଦ ଭିତରେ / କୋଇଲା ଚୁଲୀର ଶେଷ ଝିକିମିକି ରଙ୍ଗନିଅଁ ପରି / ଅରଖ ଫୁଲର ଫିକା ବାଇଚଣି ବଉଦ ଉପରେ / ସୂର୍ଯ୍ୟ କେବେ ରହିଯାଏ ମୁହୂର୍ତ୍ତିଙ୍କ ହଳଦିଆ ଟୋକାପତି ପରି / ଆକାଶର ଫିକା ନେଳି ହଳଦୀ ଓ ବାଇଗଣି ମୁଠା ମୁଠା ବଉଦ ଭିତରେ / ସୂର୍ଯ୍ୟ ପୁଣି କେବେ ନଚେ ଧୀରେ ଧୀରେ ଗ୍ରେଟ୍ ହୋଇ ବ୍ୟାଟେରୀ ନ ଥିବା ସାନ ଟର୍ଚ୍ଚ ଲାଇଟ୍ ପରି ।" (୫) (ହରେକୃଷ୍ଣ ଦାସ—ଲେ: ଗୁରୁ ମହାନ୍ତି । "ବସନ୍ତ ଆସେ ଯେ ଠେଲି / ଧକ୍କା ଖାଇ କୁକୁଡ଼ାର ଦନ୍ଦେ / ଭାଙ୍ଗି ବହୁ ମନ୍ଦିର ଯୋରେଇ / ମାଟିରେ ଗଡ଼ାଇ ଅବା ଫୁଲବଣ ସଙ୍ଗେ / ବସନ୍ତ ଆସେ ଯେ ଠେଲି ମଳିଚେର ଗନ୍ଧେ / ଶୁଖିଲା ହାଡ଼ର ରନ୍ଧ୍ରେ ବଜାଇ ସାନାଇ ।" (୬) (ବସନ୍ତର ନଛକ ଜିଭାରେ—ଲେ: ସଚ୍ଚିଦାନନ୍ଦ ରାଉତରାୟ ।)

ଉପରେ ଦିଆଯାଇଥିବା ଉଦାହରଣମାନଙ୍କରୁ ସ୍ପଷ୍ଟ ବୁଝିହେବ ଯେ, ରୂପଗତ ବା ଦୃଶ୍ୟଗତ କୌଣସି ସାମ୍ୟ ପ୍ରତି ଦୃଷ୍ଟିପାତ ନ କରି ପ୍ରୟୋଗବାଦୀ କବିତାରେ ବ୍ୟବହୃତ ରୂପକଳ୍ପରେ କି ଚମତ୍କାର ଭାବଗତ ସାମ୍ୟ ପ୍ରତିଷ୍ଠିତ ହୋଇଛି ଓ ତା'ର ଭାବ ପ୍ରବୋଧକ ଶକ୍ତିଶୀଳତାରେ ସଚେତନ ପାଠକକୁ ଉଦ୍‌ବୁଦ୍ଧ କରିପାରୁଛି । ପ୍ରୟୋଗବାଦୀ କବି ଅତି ସ୍ପଷ୍ଟ ଭାବରେ ପୁର୍ବତନ ଏକ

ସମାଜ ନିର୍ଭର ଉଗ୍ର ବାମପନ୍ଥୀ କାବ୍ୟଧାରାକୁ ଉପେକ୍ଷା କରି ଆତ୍ମମଗ୍ନ ସ୍ୱଗତୋକ୍ତି, ବ୍ୟକ୍ତିଗତ ନୈରାଶ୍ୟ ବିଜଡ଼ିତ ବିଷାଦବାଦୀତା ଭିତରେ ଆତ୍ମପ୍ରକାଶ କଲା । କବି ରାଜେନ୍ଦ୍ରକିଶୋରଙ୍କ 'ସ୍ୱଗତ' ଏହାର ଏକ ଉତ୍କୃଷ୍ଟ ଉଦାହରଣ । ଯଦିଓ ରାଜେନ୍ଦ୍ରଙ୍କ କବିତାରେ ଏହି ସ୍ୱର ପରିବର୍ତ୍ତନ ପାଇଁ ନାନାବିଧ ବ୍ୟକ୍ତିଗତ କାରଣ ଥିଲେ ବି ୧୯୫୦ ପରବର୍ତ୍ତୀ ଓଡ଼ିଆ କବିତାରେ ଏହା ହିଁ ଥିଲା ଅନିବାର୍ଯ୍ୟ ଐତିହାସିକ ପରିଣତି । ଏପରିକି ଏ ସମୟର ତରୁଣତମ କବିମାନଙ୍କ କବିତାରେ ଏହି ଆତ୍ମମଗ୍ନତାର ଚିହ୍ନ ଅଧିକରୁ ଅଧିକ ପ୍ରକଟିତ ରମାକାନ୍ତ ରଥଙ୍କ 'ଚନ୍ଦ୍ରମାର ଚୂଡ଼ି', 'ନବଗୁଞ୍ଜର' ଭଳି କେତୋଟି କବିତାରେ ସମାଜର ଉତ୍କଟ ବୈଷମ୍ୟ ଓ ଅର୍ଥନୈତିକ ଦୁର୍ଗତିର ଚିହ୍ନ ପ୍ରତିଫଳିତ ହୋଇଥିଲେ ବି ମୁଖ୍ୟ କାବ୍ୟ ସ୍ୱରଟି ଜଗତ, ପ୍ରେମର ବିଫଳତା, ପାପବୋଧ, ଅସହାୟତା, ନୈରାଶ୍ୟ, ନିଃସଙ୍ଗତା ଭାବ, ମୃତ୍ୟୁ ଭାବନା ଓ ସମାଜ ସହିତ ବିଚ୍ଛିନ୍ନ ଭାବରେ ଗଠିତ । କହିବାର ଭଙ୍ଗୀରେ ଜଟିଳତା ପ୍ରୟୋଗବାଦୀ କାବ୍ୟଧାରାର ଅନ୍ୟତମ ବିଲକ୍ଷଣ । ପୁଣି ନାନାବିଧ ବିଚ୍ଛିନ୍ନ ଭାବଧାରାକୁ ଏକତ୍ରିତ କରିବାପାଇଁ ଏହି ସମୟର କବି ଅଧିକରୁ ଅଧିକ ରୂପକ, ପ୍ରତୀକ ଓ ମିଥ୍‌ର ଆଶ୍ରୟ ନେବାକୁ ବାଧ୍ୟ ହୋଇଛନ୍ତି । କବିତାରେ ଅନେକ ଐତିହାସିକ ଅନୁଷଙ୍ଗ, ବୈଜ୍ଞାନିକ ମତବାଦ ପ୍ରବେଶ କରିଛି । ଏପରିକି ଐତିହାସିକ ଓ ପୌରାଣିକ କାହାଣୀକୁ ଅବଲମ୍ବନ କରି ଗାଥା କବିତା ଲେଖୁଥିବା ଯଶସ୍ୱୀ କବି ରାଧାମୋହନ ଗଡ଼ନାୟକ ମଧ୍ୟ ଦୁଇଟି ତାହାର 'ନେଶା'ରେ ଏହି ନୂତନ ଧାରାର ଶକ୍ତିମତ୍ତାକୁ ପରୀକ୍ଷା କରିବା ପାଇଁ ଆଗ୍ରହୀ ହୋଇ ଉଠିଛନ୍ତି । ଭାନୁଜୀ ରାଓ, କୃଷ୍ଣବିହାରୀ ଦାଶ, ସୀତାକାନ୍ତ ମହାପାତ୍ର, କମଳାକାନ୍ତ ଲେଙ୍କା ଓ ବହୁ ପରେ ରାଜେନ୍ଦ୍ର କିଶୋର ପଣ୍ଡା ଗଦ୍ୟ କବିତାରେ ଲେଖିବାକୁ ଯାଇ ସମ୍ପୂର୍ଣ୍ଣ ଗଦ୍ୟ ଲେଖି ବସିଛନ୍ତି ।

ଏଠାରେ ସ୍ପଷ୍ଟ କୁହାଯାଇ ପାରେ ଯେ, ପ୍ରୟୋଗବାଦୀ କବିତା ବହୁ ମାତ୍ରାରେ ଶୈଳୀସର୍ବସ୍ୱ ହେବାକୁ ବାଧ୍ୟ ହୋଇଛି । ଶବ୍ଦର ବିଳାସ, ଭାଷାର ଭଙ୍ଗୀ, ପ୍ରତୀକ ତଥା ଚିତ୍ରକଳ୍ପର ବ୍ୟାପକ ପ୍ରୟୋଗ ଓ ଇଂରେଜୀ ଢାଞ୍ଚାର ଅନୁସରଣରେ ଏହି ସମୟର କବିତା ଅନେକ ପରିମାଣରେ ନୂତନ ପରୀକ୍ଷାକୁ ମାନି ନେଇଛି । ପଦବନ୍ଧ ଓ ଗଦ୍ୟ ଛନ୍ଦରୁ ସମ୍ପୂର୍ଣ୍ଣ ଗଦ୍ୟଗ୍ରାସ ପର୍ଯ୍ୟନ୍ତ ଏହି ସମୟର କବିତାର ଗତିରେ ଦୁର୍ଗତି ଆସିଛି । ଓ, ଏବଂ, କିମ୍ବା, ବା, ଅଥବା ଇତ୍ୟାଦି ସଂଯୋଜକ ଓ ବିଯୋଜକ ଅବ୍ୟୟମାନଙ୍କୁ ପାଦରେ ଆଦ୍ୟରେ ରଖି କବିତା ପଂକ୍ତି ମଧ୍ୟ ରଚିତ ହୋଇଛି । ଏହାକୁ ନିଶ୍ଚିତ ଭାବରେ ଇଂରାଜୀ କବିତାର

ଅନୁସରଣ କରୁଥିବା କାବ୍ୟଶୈଳୀ ଲୁହାପିବ । ଏହି ସମୟରେ କିଛି ପରିମାଣରେ କଂକ୍ରିଟ କବିତା ମଧ୍ୟ ଲେଖା ହୋଇଛି । ସଚ୍ଚିଦାନନ୍ଦ ରାଉତରାୟଙ୍କ 'କବିତା ୧୯୬୬' କାବ୍ୟଗ୍ରନ୍ଥର 'ଶୀତ ବା ଦର୍ପଣ' ପ୍ରଭୃତି କବିତାରୁ ଏହାର ଦୃଷ୍ଟାନ୍ତ ମିଳିବ । ଭାବ ଚେତନାର ଅତିଶକ୍ତ ବ୍ୟକ୍ତିଗତତା ହେତୁ ଏ ସମୟର କବିତା କ୍ରମେ ଦୁର୍ବୋଧ ହୋଇ ପଡ଼ିଛି । ସଚ୍ଚି ରାଉତରାୟଙ୍କ 'ସ୍ୱଗତ' ଅନ୍ୟାନ୍ୟ ବହୁ କବିତା ଓ ରମାକାନ୍ତ ରଥଙ୍କ 'ଇନ୍ଦ୍ରଧନୁ', 'ପବନେ', 'ମୁଁ', 'ଆତ୍ମଜ୍ଞାନ' ପରି କେତେକ କବିତା ଏହି ଦୁର୍ବୋଧତାର ସ୍ୱାକ୍ଷର ବହନ କରେ । ଏସବୁ ବିଲକ୍ଷଣ ସତ୍ତ୍ୱେ ଏହି ସମୟର କବିତାରେ ରାଉତରାୟ, ଅନନ୍ତ ପଟ୍ଟନାୟକଙ୍କ ପରି ପୂର୍ବତନ ବାମପନ୍ଥୀ କବିମାନେ ଓ ବେଣୁଧର ରାଉତ, ଚନ୍ଦ୍ରାମଣି ବେହେରା, କୃଷ୍ଣବିହାରୀ ଦାଶ, ରାଧାମୋହନ ଗଡ଼ନାୟକ ପ୍ରମୁଖ କବିମାନେ ରୋମାଣ୍ଟିକ୍ ବାସ୍ତବବାଦୀ କାବ୍ୟ ସ୍ୱରର ବ୍ୟାପକ ପରିଚୟ ଦେଇଛନ୍ତି । ଏହି ପ୍ରୟୋଗବାଦୀ କାବ୍ୟଧାରା ଉତ୍ତର ଷାଠିଏ ବେଳକୁ ଅଧିକ ପୋଖତ ତଥା ଘନୀଭୂତ ହୋଇଛି । ପ୍ରେମ ଓ ଜୀବନ ପ୍ରତି ଏ ସମୟରେ ଆଉ ଆସକ୍ତ ଦୃଷ୍ଟିଭଙ୍ଗୀ ନାହିଁ, ବରଂ ଓଡ଼ିଆ କବିତାକୁ ଏକ ଅନିକେତ ଭାବ, ମୃତ୍ୟୁ ଭାବନା, ଅଧିକ ନୈରାଶ୍ୟ ଘନ ନିଃସଙ୍ଗତା ଓ ବିଚ୍ଛିନ୍ନତା ବୋଧ ଅଚ୍ଛନ୍ନ କରିଛି । ଉଦାହରଣ ସ୍ୱରୂପ—"ଏ ସମସ୍ତ ଅନ୍ତଃସତ୍ତ୍ୱା ଜୀବନର ଭଗ୍ନାଂଶ କେବଳ / ତେଣୁ ଏ ସହରର ଗଳିରେ ଛିନ୍ନ ପ୍ରାଣହୀନ ଦେହ ଓ କାମନା / ତେଣୁ ଏ ସହରର ବିବର୍ଣ୍ଣ ଦେହରେ ଶୀତ ଖଦଡ଼ ଓ ଉଲ୍‌ର ପୋଷାକ / ଭିତରେ ହଠାତ୍ ଆସି ଛିଡ଼ାହୁଏ ସାମ୍ନାରେ / ଅଭିଶପ୍ତ ମଣିଷର ପାପ ଆଉ ଭୟର ପ୍ରେତାତ୍ମା ।" (୭) (ହରେକୃଷ୍ଣ ଦାସ-୬) ବା "ମୋର ଚୌଦିଗେ ମୃତ୍ୟୁ ଏବଂ ତା'ର ଅଣ୍ଡା ଅଣ୍ଡା ହାତ / ଚପିବାକୁ ଆସେ ତମ ବେଳ ।" (୮) (ଅନନ୍ତ ଶୟନ—ରମାକାନ୍ତ ରଥ)

ବା "ସବୁଯାଏ ଜଳିପୋଡ଼ି ମନ ଓ ଇନ୍ଦ୍ରିୟ / ଜଳିଯାଏ ଅନୁଭୂତି ସକଳ ଭାବନା / ସବୁ ସ୍ୱପ୍ନ ଆହା ସବୁ ସ୍ୱପ୍ନ ସବୁ ଆଶ୍ୱାସନା / ଦାଉ ଦାଉ ଧପ ଧପ ଆକାଶକୁ କୁଦାମାରେ ନିଆଁ / ଲହ ଲହ ରକ୍ତ ଜିହ୍ୱା ଆକାଶ ପୃଥିବୀ ଭରେ ସ୍ଫୁଲିଙ୍ଗ ଓ ଧୂଆଁ ।" (୯) (ମୃତ୍ୟୁନାଚ—ସୀତାକାନ୍ତ ମହାପାତ୍ର)।

ଏହିସବୁ ବଳିଷ୍ଠ ଉଦାହରଣ ଗୁଡ଼ିକରୁ ଆଧୁନିକ ଯନ୍ତ୍ରଣାଦାୟକ ପରିବେଶ, ମୃତ୍ୟୁର ଭୟ ଓ ଏକ ଜୀବନ୍ତ ଦହନ ଭିତରେ ବଞ୍ଚିଥିବା କାବ୍ୟ ନାୟକର ସ୍ଥିତି ବେଶ୍ ପ୍ରତିଫଳିତ ହୁଏ । ମୃତ୍ୟୁ ଭାବନା ତଥା ତଜ୍ଜନିତ ଆତଙ୍କ ଭିତରୁ ତା'ର ମୁକ୍ତି ନାହିଁ । ରମାକାନ୍ତଙ୍କ 'ଅନେକ କୋଠରି' ଓ ସୀତାକାନ୍ତଙ୍କ 'ଅଷ୍ଟପଦୀ'ର ଅତି ପ୍ରାଞ୍ଜଳ ଓ ମୁଖ୍ୟ ସ୍ୱରଟି ଏହି ମୃତ୍ୟୁ ଭାବନାକୁ କେନ୍ଦ୍ରକରି

ସଙ୍ଗଠିତ । ରମାକାନ୍ତଙ୍କ 'କେତେଦିନର' (୧୯୬୮) କାବ୍ୟ ସ୍ତରରେ ଦେହ ଓ ତାକୁ କେନ୍ଦ୍ର କରି ଯେତେ ପ୍ରେମ, ପ୍ରଶ୍ନ, ବ୍ୟର୍ଥତା, ଅବସାଦ, ଆସକ୍ତି, ଅନାଶକ୍ତି, ଶୂନ୍ୟତା ଓ ନୈରାଶ୍ୟବୋଧ କାବ୍ୟ ନାୟକଙ୍କୁ ଅଚ୍ଛନ୍ନ କରିଥିଲା, 'ଅନେକ କୋଠରୀ' (୧୯୬୭)ର ମୁଖ୍ୟ ଭାବନା ଓ ଦେହାଂଶତକୁ ନାନା ମଧ୍ୟରେ ତାହା ଏକ ଉତ୍ତରଣର ପ୍ରତିଶ୍ରୁତି ରଖେ । ସେହିପରି ସୀତାକାନ୍ତ ତାଙ୍କ ଯାତ୍ରି ଓ ଦ୍ୟୁତି (୧୯୬୭)ର ବ୍ୟକ୍ତିଗତ ଜଗତ ଭିତରୁ 'ଅଷ୍ଟପଦୀ' (୧୯୬୭)ର ପରିବ୍ୟାପ୍ତ ଜଗତ ଭିତରକୁ ଓ ବ୍ୟାପକ ମାନସିକ ପ୍ରତିକ୍ରିୟା ମଧ୍ୟକୁ ବିସ୍ମୟକର ଭାବେ ଲମ୍ଫ ପ୍ରଦାନ କରିଛନ୍ତି ଓ ହଠାତ୍ ତାଙ୍କ କବିତା ଏକ ଅପୂର୍ବ ସିଦ୍ଧି ଆଡ଼କୁ ମୁହାଁଇ ଯାଇଛି । ବିଶେଷତଃ ମିଥ୍ ଓ ପ୍ରତୀକର ବ୍ୟାପକ ପ୍ରୟୋଗ ମାଧ୍ୟମରେ ସୀତାକାନ୍ତ ସାମ୍ପ୍ରତିକ ମଣିଷ ଜୀବନର ଅସହାୟ ଯନ୍ତ୍ରଣାଦଗ୍ଧ ମାନସିକତାକୁ ଅଖଣ୍ଡ କାବ୍ୟାବେଗ ମଧ୍ୟରେ କରିବାକୁ ଚେଷ୍ଟା କଲାବେଳେ ଶ୍ରୀ ରଥ ସେଇ ଜ୍ୱଳନକୁ ପ୍ରକାଶ କରିଛନ୍ତି ଗଦ୍ୟ ଭଙ୍ଗୀରେ ଓ ବଳିଷ୍ଠ ରୂପକଳ୍ପ ମାଧ୍ୟମରେ । ଏହି ଦୃଷ୍ଟିରୁ ଶ୍ରୀ ରଥ ଓ ଶ୍ରୀ ମହାପାତ୍ର ଆଧୁନିକ ଓଡ଼ିଆ କବିତାର ଯଥାର୍ଥ ଉତ୍ତରାଧିକାରିତ୍ୱ ଦାବୀ କରିବେ । 'କବିତା ୧୯୬୨'ରେ ଗୁରୁପ୍ରସାଦ ବୁଦ୍ଧିଦୀପ୍ତତା ଓ ରୂପକଳ୍ପର ପର୍ଯ୍ୟାପ୍ତ ପ୍ରୟୋଗ କରି ପାଠକମାନଙ୍କୁ ଏକ କାବ୍ୟ ଉଚ୍ଚତାରେ ଉପନୀତ କରାଇ ଦେଇଛି । ଠିକ୍ ସେହିପରି ଗୁରୁପ୍ରସାଦ ମଧ୍ୟ ଏହି ସମୟ ସୀମା ମଧ୍ୟରେ ତାଙ୍କ କାବ୍ୟ ଚେତନାର ଉଚ୍ଚତମ ଶୀର୍ଷରେ ପହଞ୍ଚି ଯାଇଛନ୍ତି । କିନ୍ତୁ ପରେ ପରେ ଏହି ଦୁଇ ବିଶିଷ୍ଟ କବିଙ୍କଠାରୁ କାବ୍ୟ ନେତୃତ୍ୱ ଛଡ଼ାଇ ନେଇଛନ୍ତି ଯଥାକ୍ରମେ ରମାକାନ୍ତ ଓ ସୀତାକାନ୍ତ । ସେମାନଙ୍କ ଶଂସିତ କାଳରେ ବହୁ ତରୁଣ ଓ ନୂତନ କବି ପ୍ରତିଷ୍ଠା ଦାବୀ କରିଛନ୍ତି । ବର୍ଷିୟାନ ଓ ପ୍ରତିଷ୍ଠିତ କବିମାନେ କାବ୍ୟ ରାଜ୍ୟରୁ କ୍ରମେ ଅପସାରିତ ହୋଇ ଯାଇଥିଲା-ବେଳେ ଏକ ନୂତନ କବି ଗୋଷ୍ଠୀର ଅଭ୍ୟୁଦୟ ଉତ୍କଳ ମାଟିରେ କବିତା ରାଜ୍ୟରେ ଏକ ବିସ୍ମୟକର ଆନ୍ଦୋଳନ ସୃଷ୍ଟି କରିଥିବା ଲକ୍ଷ୍ୟ କରାଯିବ । ପ୍ରୟୋଗବାଦୀ ଓଡ଼ିଆ କବିତାର ଅନ୍ୟ ଏକ ବଳିଷ୍ଠ ବିଭବ ଭାବେ ମିଥ୍‌ର ବ୍ୟାପକ ପ୍ରୟୋଗ ଓଡ଼ିଆ କାବ୍ୟ ଜଗତକୁ ବେଶ୍ ଭାବବାହୀ କରିଛି ଓ ଏକ ନୂତନ ଉଚ୍ଚତା ଆଣି ଦେଇଛି । ଗୁରୁପ୍ରସାଦ ତାଙ୍କ 'କାଳପୁରୁଷ' ଓ 'ଅକ୍ରୂର ଉବାଚ'ରେ ଏହି ମିଥ୍‌ର ପରୀକ୍ଷା କଲେ ଏବଂ ଏହା ତାଙ୍କ କବିତାରେ ଏକ କାବ୍ୟ ପ୍ରତିକ୍ରିୟା ଭାବେ ଆତ୍ମପ୍ରକାଶ କଲା । ଆଧୁନିକ ଜୀବନର ନାନାବିଧ ମାନସିକ ଓ ଆଧିଭୌତିକ ଯନ୍ତ୍ରଣାରେ ଘାଣ୍ଟି ହେଉଥିବା ମଣିଷ ଅକ୍ରୂର ହୋଇପାରେ ବା ପକ୍ଷକ୍ଷିତ ବି ହୋଇପାରେ । ପୁରାଣ ଏଠାରେ କେବଳ

ପ୍ରଚ୍ଛଦପଟ ଭାବରେ ଆଧୁନିକ ଜୀବନ ଯନ୍ତ୍ରଣାକୁ ପ୍ରତିପନ୍ନ କରୁଛି । ଆଜି ବି ମଣିଷ ଅଜସ୍ର ଆତ୍ମକୃତ ବେଦନାର ବୋଝକୁ ନେଇ ମୁକ୍ତି ପାଇଁ ବ୍ୟାକୁଳଭାବେ ଉପରକୁ ହାତ ଟେକୁଛି । ତେଣୁ ଗୁରୁ ମହାନ୍ତି ତାଙ୍କ କାବ୍ୟଚିନ୍ତାରେ ମିଥ୍‌କୁ ଏକ ଅପରିହାର୍ଯ୍ୟ ଅଙ୍ଗ ଭାବରେ ଗ୍ରହଣ କରି ଓଡ଼ିଆ କବିତାକୁ ଏ ଯେଉଁ ନୂତନ ଐଶ୍ୱର୍ଯ୍ୟ ପ୍ରଦାନ କଲେ ସୀତାକାନ୍ତଙ୍କ 'ଅଷ୍ଟପଦୀ'ରେ ତା'ର ଏକ ପରିପୂର୍ଣ୍ଣ ବିକାଶ ଘଟିଥିବା ଲକ୍ଷ୍ୟ କରାଯିବ । ଜୀବନ ଓ ମୃତ୍ୟୁର ପାରସ୍ପରିକ ସମ୍ପର୍କକୁ ସୂଚିତ କରିବାକୁ ଓ ଆଧୁନିକ ମଣିଷର ବିକଳ ଅସ୍ତି-ନାସ୍ତିର ଉନ୍ମୋଚନ ପାଇଁ ସେ ମିଥ୍‌କୁ ହିଁ ଏକମାତ୍ର ବଳିଷ୍ଠ ମାଧ୍ୟମ ରୂପେ ପ୍ରୟୋଗ କଲେ । 'କାଳପୁରୁଷ'ରେ ଜୀବନ ଓ ମୃତ୍ୟୁର ଅନୁଭବ ସହିତ ପାପ, ପୁଣ୍ୟ ଓ ଅଧ୍ୟାତ୍ମିକ ଅନୁଯୋଗର ଅନୁଭୂତି ବିଜଡ଼ିତ । 'ଅଷ୍ଟପଦୀ'ର କାବ୍ୟ ନାୟକ ଅନୁରୂପ ଭାବେ ଆଧୁନିକ ନର୍କରେ ଦଗ୍‌ଧୀଭୂତ ହେଲେ ବି ତା' ପାଇଁ ମୃତ୍ୟୁ ଯାତନାଟି ଅଧିକ ତୀବ୍ର । ଏହି ନର୍କରେ ଜୀବନ ନାହିଁ କି ମୃତ୍ୟୁ ନାହିଁ—ଏକ ଜୀବନ୍ମୃତ ଅବସ୍ଥା । ପୁନଶ୍ଚ ଏଠାରେ ପାପ ପୁଣ୍ୟର ଅନୁଭୂତି ମଧ୍ୟ ଭ୍ରଷ୍ଟ ଓ ବିପର୍ଯ୍ୟସ୍ତ । ତେଣୁ ଏପରି ଏକ କରୁଣ ଅବସ୍ଥାରୁ ମୁକ୍ତି ପାଇଁ ଗୁରୁପ୍ରସାଦଙ୍କ ଉଦ୍ଧବ ବା ଅକ୍ରୂର ଯେପରି ଉପରକୁ ହାତ ଟେକି ଉଦ୍ଧାର ପାଇଁ ଦସ୍ତିମା କରନ୍ତି । ସୀତାକାନ୍ତଙ୍କ ଯନ୍ତ୍ରଣା ପୀଡ଼ିତ କାବ୍ୟ ନାୟକମାନେ ତା' ନ କଲେ ବି ଏକ ମୁକ୍ତ, ଐଶ୍ୱର୍ଯ୍ୟ ପରିପୂର୍ଣ୍ଣ ଜୀବନ ପାଇଁ ମୃତ୍ୟୁର ଯନ୍ତ୍ରଣା ଓ ସ୍ଥିତିର ସୀମାବଦ୍ଧତା ଭିତରୁ ଏକ ପରିପୂର୍ଣ୍ଣ ସୁନ୍ଦର ଜୀବନର ଆସ୍ୱାଦନ ପାଇଁ ଆକୁଳତା ପ୍ରକାଶ କରିଛନ୍ତି ।

ଭାଗବତ ପୁରାଣର ଦେବକୀର ଅଷ୍ଟମ ଗର୍ଭ, ଭୀମର କାଳଚକ୍ର, କୁବୁଜାର କୃଷ୍ଣପ୍ରାପ୍ତି ବା ଗ୍ରୀକ୍ ମାଇଥୋଲୋଜିର ସୋଲନ୍‌ର ସମୁଦ୍ର ସହିତ ଅସ୍ମିତା ସ୍ଥାପନ ଭିତରେ ମୁକ୍ତି ବା ବୃହତ୍ତର ମୂଲ୍ୟବୋଧର ଏକ ଦିଗକୁ ଉପଲବ୍ଧି କରାଯାଇ ପାରେ । ମୋଟ ଉପରେ ମିଥ୍‌ର ବ୍ୟବହାର ଫଳରେ ଓଡ଼ିଆ କବିତାକୁ ଏକ ନିର୍ଦ୍ଦିଷ୍ଟ ସମୃଦ୍ଧି ଆସିପାରିଛି ଓ ଏହା ମାଧ୍ୟମରେ ମଣିଷର ଜଟିଳ ଭାବନାରାଜି ସ୍ୱଚ୍ଛନ୍ଦ ଭାବରେ ପ୍ରକାଶିତ ମଧ୍ୟ ହୋଇଛି । ଷଷ୍ଠ ଦଶନ୍ଧିର କବିତାରେ ମିଥ୍ ପ୍ରୟୋଗରେ ଗୁରୁପ୍ରସାଦ ଓ ସୀତାକାନ୍ତଙ୍କ ସିଦ୍ଧି ଅନନ୍ୟ ସାଧାରଣ ହେଲେ ବି ବିନୋଦ ନାୟକ, ବେଣୁଧର, ଚିନ୍ତାମଣି, ଦୀପକ, ବ୍ରଜନାଥ, କମଳାକାନ୍ତ, ପ୍ରତିଭା ପ୍ରଭୃତିଙ୍କ କବିତାରେ ଏହାର ପ୍ରୟୋଗ ଉଲ୍ଲେଖଯୋଗ୍ୟ । ଉତ୍ତର ସତୁରିର ଓଡ଼ିଆ କବିତାରେ ଏକ ମାନସିକ ଉତ୍ତରଣ ଚିହ୍ନ କ୍ରମେ ସ୍ପଷ୍ଟତର ହୋଇ ଉଠିଛି ଓ ଉତ୍ତର ସତୁରୀ କାଳରେ ଏହା ବେଶ୍

ସଫଳ ଭାବରେ ନିଜକୁ ଅଭିବ୍ୟକ୍ତ କରିପାରିଛି । ଓଡ଼ିଆ କବିତାର ଏହି ଉତ୍ତରଣ ପର୍ବରେ କବିର ମେଟାଫିଜିକାଲ୍ ଦୃଷ୍ଟିଭଙ୍ଗୀ ଓ ବାକ୍-ବୈଦଗ୍ଧ୍ୟ କ୍ରମେ ବିଶେଷ ଭାବରେ ପ୍ରକାଶ ପାଉଛି । ଏହି ଅନୁଭୂତି ପାଖରେ ବ୍ୟକ୍ତିଗତ ପ୍ରେମ ଜନିତ ବିଫଳତା, ନୈରାଶ୍ୟ, ଯନ୍ତ୍ରଣାବୋଧ ନିଃଶେଷିତ ହୋଇଯାଇ ତା' ମନରେ ଆଶାର ଉଜ୍ଜ୍ୱଳ ମୟୂଖ ପ୍ରକାଶିତ ହେଉଛି । ଏପରିକି ବାକ୍ସ୍ଫୀତି ମୂଳକ ଛନ୍ଦ ପ୍ରୟୋଗରେ ଏହି ସାବଲୀଳତା ମଧ୍ୟ ସୁବୋଧ ହୋଇ ଉଠୁଛି । ଏଣିକି କବିତା ହେଉଛି ଅଧିକ ସରଳ ଏବଂ ଭାବବୃତ୍ତିି ସ୍ପଷ୍ଟ ଓ ପ୍ରଶସ୍ତ । ସବୁଠାରୁ ଆକର୍ଷଣୀୟ ଭାବରେ ମିଥ୍, ପ୍ରତୀକ, ରୂପକ ଓ ରୂପକଳ୍ପର ପ୍ରୟୋଗରେ କାବ୍ୟ-ବିଭବ ପ୍ରକଟିତ ହେବାରେ ଲାଗିଛି । ସୁତରାଂ ଏହା ଏକ ସ୍ୱତନ୍ତ୍ର ଆଲୋଚନାର ବିଷୟ ।

## "ସାଂପ୍ରତିକ କବିତାରେ ମିଥ୍, ପ୍ରତୀକ, ଚିତ୍ରକଳ୍ପ-ଆର୍କିଟାଇପ୍, ଆଧ୍ୟାତ୍ମିକ ଉତ୍ତରଣ, ମୃତ୍ୟୁ ଚେତନା, ଶବ୍ଦ ଓ ଶୈଳୀ ତଥା ଆତ୍ମମଗ୍ନତାର ବିଷୟ ବିନ୍ୟାସ:—

(କ) ମିଥ୍—ଓଡ଼ିଆ କବିତାର ଏହି ବିକଶିତ ପର୍ବରେ ପାଠକ ସହିତ ମାନସିକ ଯୋଗାଯୋଗ ସ୍ଥାପନ ପାଇଁ କବିମାନେ ଅନେକାଂଶରେ ମିଥ୍ ଉପରେ ନିର୍ଭରଶୀଳ ହୋଇ ଉଠୁଥିବାର ଲକ୍ଷ୍ୟ କରିହେବ । ପ୍ରୟୋଗବାଦୀ କବିତାରେ ବଢ଼ି ଉଠୁଥିବା ଦୁର୍ବୋଧତା ଅନେକ ପରିମାଣରେ ଏହି ମିଥ୍ ମାଧ୍ୟମରେ ଯେ ପାଠକ ମାଧ୍ୟମରେ ଯେ ପାଠକ ସହିତ ବୁଝାମଣା ପ୍ରତିଷ୍ଠା ପାଇଁ ସୁଯୋଗ ସୃଷ୍ଟି କରିଛି ଏଥିରେ ସନ୍ଦେହ ନାହିଁ । ବର୍ଷୀୟାନ କବି ଗୁରୁପ୍ରସାଦ, ସଚ୍ଚିଦାନନ୍ଦ, ଜ୍ଞାନିନ୍ଦ୍ର ବର୍ମା, ବେଣୁଧର, ଚିନ୍ତାମଣି ପ୍ରମୁଖ ଉତ୍ତର ଷାଠିଏରେ ଏହି କାବ୍ୟଧର୍ମ ପ୍ରତି ବିଶେଷ ଆକୃଷ୍ଟ ହୋଇଥିଲେ । ଗୁରୁପ୍ରସାଦଙ୍କ 'କାଳପୁରୁଷ'ରେ ଅକ୍ରୂର ଓ ଉଦ୍ଧବର ନାମ ବାରମ୍ବାର ଉଚ୍ଚାରିତ ହୋଇ ଆଧୁନିକ ମଣିଷର ଅନ୍ତର୍ଦହନ ଓ ପାପବୋଧପାଇଁ କିଛିଟା ଆଧ୍ୟାତ୍ମିକ ଆଶ୍ୱାସନାର ବାଟ ଖୋଲି ଦେଇଥିଲା । ଏପରିକି 'ଅକ୍ରୂର ଉବାଚ' କବିତାରେ ଏହି ପୌରାଣିକ ଚରିତ୍ରଟିର ମନସ୍ତାତ୍ତ୍ୱିକ ଆଲୋଡ଼ନ କବି ଅତି କଳାପୂର୍ଣ୍ଣ ଭାବରେ ହିଁ ଆଧୁନିକ ମଣିଷ ମାଧ୍ୟମରେ ପରି-ବେଷଣ କରିଥିଲେ । ବିଂଶ ଶତାବ୍ଦୀର ସମାଲୋଚନା ସାହିତ୍ୟ ପାଇଁ ଏଲିୟଟ୍ଙ୍କ କାବ୍ୟକୃତି ଓ ଅନ୍ତର୍ଗତ ଆଦର୍ଶବାଦ ଏକ ପ୍ରଶସ୍ତ କ୍ଷେତ୍ର ହୋଇପଡ଼ିଛି । ଫିଲିପ୍ଟଏନ୍‌ଙ୍କ ଓ୍ୱାର୍ଡ଼ସ୍‌ଓ୍ୱାର୍ଥ-ଏଲିୟଟ୍ ସମୀକରଣ ପାଇଁ ଚେଷ୍ଟା କରିଥିବା-

ବେଳେ ଫ୍ରାଙ୍କ୍ କରମୋଡ଼୍ ଏଲ୍ଏଟ୍ ଓ ଆଧୁନିକ ସ୍ରଷ୍ଟାମାନଙ୍କ ଚରିତ୍ରକଳ୍ପ ଭିତରେ ଅନ୍ତମ ବା ଉପସଂହାରର ପଦଧ୍ୱନି (The sense of querding) ଶୁଣିବାକୁ ଚେଷ୍ଟା କରିଛନ୍ତି । ଶଂସିତ କାଳରେ ସୀତାକାନ୍ତ ତାଙ୍କ 'ଅଷ୍ଟପଦୀ'ରେ ମିଥ୍କୁ ଏକ ବ୍ୟାପକ ଭାବବୃତ୍ତ ଭାବରେ ଗ୍ରହଣ କରି ଓଡ଼ିଆ କବିତାକୁ ଏକ ନୂତନ ବୌଦ୍ଧିକ ମାନଚିତ୍ର ପ୍ରଦାନ କଲେ ଓ ପାଠକ ସହିତ ଅଧିକ ଯୋଗାଯୋଗ ସ୍ଥାପନ କଲେ । ଅଥଚ ତାଙ୍କର ଅଗ୍ରଜ କବି ରମାକାନ୍ତ ମଧ୍ୟ ଏ ସମୟରେ ଏହି କାବ୍ୟ ଆତ୍ମା ପ୍ରତି ଏତେ ନିବିଡ଼ ଭାବେ ସଚେତନ ହୋଇପାରି ନ ଥିଲେ । କିନ୍ତୁ ପରବର୍ତ୍ତୀ କାଳରେ ରମାକାନ୍ତଙ୍କ ସମେତ ରଘୁନାଥ ଦାସ, ଦୀପକ ମିଶ୍ର, ପ୍ରତିଭା ଶତପଥୀ, ବ୍ରଜନାଥ ରଥ ପ୍ରମୁଖ କବିମାନେ ଏହି ଭାବବୃତ୍ତ ମଧ୍ୟକୁ ଅନୁପ୍ରବେଶ କରି ଓଡ଼ିଆ କବିତାକୁ ଏକ ନୂତନ ବିଭୂତି ପ୍ରଦାନ କରିଛନ୍ତି । ଏତଦ୍ ବ୍ୟତୀତ ତରୁଣ କବିମାନଙ୍କ ମଧ୍ୟରୁ ମମତା ଦାଶ, ହରିହର ମିଶ୍ର, କମଳାକାନ୍ତ ଲେଙ୍କା, ବିବେକ ଜେନା ପ୍ରମୁଖ ସେମାନଙ୍କ କବିତାରେ ଶୈଳୀଗତ ଆଙ୍ଗିକକୁ ଏକ ନୂତନ ମୋଡ଼ ଦେବାରେ ସମର୍ଥ ହୋଇଛନ୍ତି । ମମତା ଦାଶଙ୍କ 'ନୈମିଷାରଣ୍ୟ' ଏହାର ଶ୍ରେଷ୍ଠ ପ୍ରତିନିଧି । କବି ଚନ୍ଦ୍ରାମଣି ବେହେରା ଓ ରମାକାନ୍ତ ସେମାନଙ୍କ କବିତାରେ ମିଥ୍କୁ ପ୍ରତୀକ ଭାବରେ ଗ୍ରହଣ କରିଥିଲାବେଳେ ସୀତାକାନ୍ତ ମହାପାତ୍ର ଓ ପ୍ରତିଭା ଶତପଥୀ ଏହାକୁ ସମଗ୍ର କବିତାର ଆତ୍ମିକ (Theme) ବିଭାବ ଭାବରେ ପ୍ରୟୋଗ କରିଛନ୍ତି ଏବଂ ଆଧୁନିକ ମଣିଷର ଜୀବନ ଜଞ୍ଜାଳ ସହିତ ପୌରାଣିକ ପ୍ରାସଙ୍ଗିକତାର ବିପୁଳ ସାମଞ୍ଜସ୍ୟ ଦର୍ଶାଇଛନ୍ତି । କୁବୁଜା, ଦୁର୍ଯ୍ୟୋଧନ, ନିଶଙ୍କୁ, ସୋଲନ୍ (Greek mythology) ଆଦି ଯେପରି ସୀତାକାନ୍ତଙ୍କ 'ଅଷ୍ଟପଦୀ'ର ଅପରିହାର୍ଯ୍ୟ ଭାବବସ୍ତୁ ଓ ଆଧୁନିକ ମଣିଷ ଜୀବନର ଜୀବନ୍ତ ଉଦ୍ଧାର ଓ କାରୁଣ୍ୟ ସହିତ ସମନ୍ୱିତ ସେହିପରି ପ୍ରତିଭା ଶତପଥୀଙ୍କ କବିତାରେ ଶିଖଣ୍ଡୀ, ହରିଶ୍ଚନ୍ଦ୍ର, ଶକୁନି, ଅହଲ୍ୟା, ଶ୍ରମଣା, ଦେବକୀ ଆଦି କାବ୍ୟ ଆତ୍ମାରେ ସମ୍ପୂର୍ଣ୍ଣ ଭାବରେ ସଲଗ୍ନ । ପାଠକକୁ କେବଳ ଏସବୁ ଚରିତ୍ରର ଦ୍ୱିଜତ୍ୱ ଆଧାର ଜୀବନଚର୍ଯ୍ୟା ଭିତରୁ ଖୋଜିବାକୁ ହେବ । ରଘୁନାଥ ଦାସଙ୍କର କବିତାର 'ଜଟାୟୁ' ସତେ ଯେପରି ରାଜନୈତିକ ଭ୍ରଷ୍ଟାଚାର ଓ ଅର୍ଥନୈତିକ ଶୋଷଣ ବିରୁଦ୍ଧରେ ସତ୍ୟ ଓ ନ୍ୟାୟର ପ୍ରତୀକ ଭାବରେ ଛିଡ଼ା ହୋଇଛି । ଯଦିଓ ତା'ର ଶକ୍ତି ଖୁବ୍ ସୀମିତ ତଥାପି ସେ ଅନ୍ୟାୟର ପ୍ରତିରୋଧ କରେ । ସେହିପରି ଦୀପକ ମିଶ୍ରଙ୍କ କବିତାର ମହୀରାବଣ ଏକ ଅନାସକ୍ତ, ନିରହଙ୍କାର ବ୍ୟକ୍ତିତ୍ୱର ପ୍ରତୀକ । ଅଥଚ ମର୍ତ୍ତ୍ୟର ମଣିଷ ନିଜର ଶକ୍ତି ଓ ପରାକାଷ୍ଠା ଦେଖାଇବାକୁ ତାକୁ ଅକାରଣ ହତ୍ୟା କରେ । ଏକ ଅସମ

ଯୁଗରେ ନନ୍ଦିତ ଏହି ମହାନ୍ ଏବର ବ୍ୟକ୍ତିତ୍ୱ କିନ୍ତୁ ଅସୁର ନାମରେ 'ଘୃଣ୍ୟ' ହୁଏ ଅଥଚ ହତ୍ୟାକାଙ୍କ୍ଷୀ ଦେବତା ବୋଲାଏ । ଅବଶ୍ୟ ଏହା ପୂର୍ବରୁ ଆଧୁନିକ କବିତାର ବିକାଶ ପର୍ବରେ କବି ସଚ୍ଚିଦାନନ୍ଦ ରାଉତରାୟଙ୍କ କବିତାରେ ହିରଣ୍ୟ କଶିପୁ, ଚନ୍ଦ୍ରସେଣା ଆଦି କେତେକ ପୌରାଣିକ ଚରିତ୍ର ସମ୍ପର୍କରେ ନୂତନ ଭାବଗତ ସମୀକ୍ଷା ପ୍ରକାଶ ପାଇଥିଲା ! ହିରଣ୍ୟ କଶିପୁଙ୍କୁ କବି ଏକ ବ୍ୟକ୍ତିତ୍ୱବାନ୍ ପୁରୁଷ ଭାବରେ ଚିତ୍ରଣ କରିଥିଲେ । କାରଣ ସେ ସମସ୍ତ ଅନ୍ଧବିଶ୍ୱାସ ଓ କୁସଂସ୍କାର ବିରୁଦ୍ଧରେ ପ୍ରତ୍ୟକ୍ଷ ପ୍ରମାଣ ଚାହିଁଥିଲା । ସେଥିରେ ତା'ର ଶରୀରର ମୃତ୍ୟୁ ହୋଇ-ଥିଲେ ବି ବ୍ୟକ୍ତିତ୍ୱର ବିଜୟ ହୋଇଥିଲା । କାରଣ ସେ ଅନ୍ଧବିଶ୍ୱାସ ନ ଥିଲା । ଯେ ବିଷ୍ଣୁଙ୍କ ପ୍ରତ୍ୟକ୍ଷ ରୂପ ଦେଖିବାକୁ ଚାହିଁଥିଲା । ଏଠାରେ ମିଥ୍ ପ୍ରୟୋଗର ବାହ୍ୟ ରୂପଟି ପ୍ରକାଶିତ ହେଲେହେଁ ଅନ୍ୟାନ୍ୟସ୍ଥଳରେ ଆଧୁନିକ ମଣିଷର ଜିଜ୍ଞାସୁ ଆତ୍ମମଗ୍ନ ଦୃଷ୍ଟିକୋଣଟି ସ୍ପଷ୍ଟତର ହୋଇ ଉଠିଛି । ମିଥ୍ ବାସ୍ତବିକ୍ ମଣିଷ ଜୀବନର ଜଟିଳ ମନସ୍ତତ୍ତ୍ୱ ଭିତରେ କ୍ରମଶଃ ସଂଲଗ୍ନ ହୋଇ ଏକ ଅପରିହାର୍ଯ୍ୟ ମୌଳିକ ଆନ୍ଦୋଳନ ସୃଷ୍ଟି କରିବାରେ ଯେ ଏକାନ୍ତ ସଫଳ ତାହା ଉପରୋକ୍ତ କବିତା ଗୁଡ଼ିକର ଚରିତ୍ରମାନଙ୍କରୁ ହୃଦବୋଧ ହେଉଛି । ଗୋଟିଏ ଶ୍ରେଷ୍ଠ ଉଦାହରଣ ଦେଲେ ଏହା ଆହୁରି ଯଥାର୍ଥ ହେବ । ସୀତାକାନ୍ତ ମହାପାତ୍ରଙ୍କ କୁବୁଜା ତା'ର ନିପୀଡ଼ିତ ନାରୀତ୍ୱ, ବିଶ୍ରୀଆକୃତି ଓ ପରାଜିତ ଜୀବନ ନେଇ ପରମ ପୁରୁଷ ଶ୍ରୀକୃଷ୍ଣଙ୍କ ସାନ୍ନିଧ୍ୟ ପାଇଁ ଅପେକ୍ଷା କରିଛି ଅନେକ ଯୁଗରୁ । ସେହି କୃଷ୍ଣଙ୍କୁ ଯେତେବେଳେ ସେ ବରଣ କରିଛି ତାଙ୍କର ମୋହଗ୍ରସ୍ତ ସ୍ପର୍ଶରେ ତା'ର ଲାଞ୍ଛିତ ନାରୀତ୍ୱ ପୁଲକିତ ହୋଇ ଉଠିଛି । ଏହି ମିଥ୍ ଚରିତ୍ରଟି କେବଳ ଦ୍ୱାପର ଯୁଗରୁ ଚିରନ୍ତନ ସତ୍ୟ ହୋଇ ରହିନାହିଁ ବରଂ ଆଜି ବି ଅସଂଖ୍ୟ କୁବୁଜା ଏପରି ସାମାଜିକ ପୀଡ଼ା ଓ ଲାଞ୍ଛନା ଭିତରେ କାଳାତିପାତ କରୁଥିବାବେଳେ ସେହି ପରମପରାତ୍ପର ପାଖରେ ନିଜକୁ ସମର୍ପଣ କରିବାକୁ ଚାହାନ୍ତି—"ଆଜି ତୋର ପାଇଁ ଦେହ ମନ ହୃଦୟ ଓ ଆତ୍ମାର ନିବାସ ଶେଷେ / ସୀମିତ ଅପୂର୍ଣ୍ଣ ରୁଗ୍ଣ କୁବ୍ଜ ପ୍ରାଣ ମରୁ ଶେଷେ । ସ୍ୱପ୍ନ କ୍ଷମା କୁବୁଜା ସେ / ଦେହ ମନ ହୃଦୟ ମଣ୍ଡାଇ / ବସିଅଛୁ ପଥ ତୋର ଚାହିଁ ।" (୧୦) (କୁବୁଜା ପାଇଁ ଗୋଟିଏ ସଙ୍ଗୀତ—ସୀତାକାନ୍ତ ମହାପାତ୍ର) ପ୍ରତିଭାଙ୍କ କବିତାରେ ଶ୍ରମଣା କେତେ ଆଶା ଓ ଉତ୍କଣ୍ଠା ନେଇ ସେ ଦେବତାର ପଦପାତ ପାଇଁ ପ୍ରତୀକ୍ଷାରତ—"ଦୁଃଖ ଗ୍ଲାନି କ୍ଲାନ୍ତି ଆଉ ଅବଶୋଷ ଆଶା ଅଭିଳାଷ / ସବୁ ମିଶାମିଶି ହୋଇ ଟୋପାଏ ବହଳ ତେଲ ତା' ଭିତରେ ଜୀର୍ଣ୍ଣ ସଳିତାଟେ / ମୁଁ ଏମିତି ଜଳୁଥାଏ କାଳେ ତୁମେ ତେଜ-

ଦେବ । କାଲେ ଆଲୁଅରେ ଏ ଜଙ୍ଗଲ, ଏ ଅନ୍ଧାର, ଏ ଅଭାବ ଘୁରିଯିବ । ଆଗାମୀ ମୁହୂର୍ତ୍ତି ଠାରୁ ବହୁଯୁଗ ।" (୧୧) (କ୍ରମଶ)

କହିବାକୁ ଗଲେ ଏପରି ପ୍ରୟୋଗରେ ଓଡ଼ିଆ କବିତାର ଯେ ଯଥେଷ୍ଟ ଲାଭ ହୋଇଛି; ଏକଥା ଅନାୟାସରେ କୁହାଯାଇ ପାରେ । ପ୍ରବହମାନ କୌଣସି ଘଟଣାକୁ ପ୍ରକାଶ କରିବାକୁ ଭାଷାର ଅକ୍ଷମତା ତଥା ପରିସ୍ଥିତିର ଅନୁକୂଳହୀନତା କବି ପ୍ରାୟ ସବୁବେଳେ ଅନୁଭବ କରିଥାଏ । କିନ୍ତୁ ମିଥ୍‌ର ପ୍ରୟୋଗରେ ସେ ଏପରି ଅକ୍ଷମତା ଏବଂ ଆଶଙ୍କା ଭିତରୁ ନିଜକୁ ରକ୍ଷା କରିପାରେ ଏବଂ ତା'ର ଆକାଙ୍‌କ୍ଷିତ ଲକ୍ଷ୍ୟଟି ପାଠକ ପାଇଁ ଆହୁରି ସ୍ପଷ୍ଟ ଓ ପ୍ରାଞ୍ଜଳ ହୋଇଯାଏ ।

ଏହି ପର୍ଯ୍ୟାୟରେ ରମାକାନ୍ତ ରଥଙ୍କ 'ଶ୍ରୀରାଧା' ଏବଂ ସୌଭାଗ୍ୟ ମିଶ୍ରଙ୍କ 'ଶକୁନ୍ତଳା' ଦୁଇଟି ମିଥ୍‌ଧର୍ମୀ ଉତ୍କୃଷ୍ଟ ରଚନା । ମଧ୍ୟ ଯୁଗର ଦୁଇଜଣ ବିଶିଷ୍ଟ ପ୍ରେମିକା ରାଧା ଏବଂ ଶକୁନ୍ତଳା ଆଜି ବି ଏହି ଉତ୍ତର ଅଶୀ କାଳରେ କବି ପ୍ରାଣକୁ ପୂର୍ବପରି ଆଚ୍ଛନ୍ନ ଏବଂ ଅପ୍ଲୁତ କରି ରଖିଛି, ଏହା କମ୍ ଗୌରବର କଥା ନୁହେଁ ? ଏହି କାଳଜୟୀ ପୌରାଣିକ ଚେତନାକୁ ଉପୋତ୍ତୀର୍ଣ୍ଣ କରିବା ପାଇଁ ସାଂପ୍ରତିକ ଯୁଗର ଆଧୁନିକ କବି ନିଜର ପରୀକ୍ଷାମୂଳକ ଉଦ୍ୟମ ଅବ୍ୟାହତ ରଖିଛି । ତେଣୁ ଏଠାରେ ଗୋଟିଏ କଥା ମନରେ ଆସୁଛି ଆଜିର କବି ଉଭୟ ପୁରାତନ ଏବଂ ନୂତନ ଭିତରେ ଏକ ବଳିଷ୍ଠ ଯୋଗସୂତ୍ରକାରୀ ମାଧ୍ୟମ ଏହା ଅସ୍ୱୀକାର କରାଯାଇ ନ ପାରେ । ରମାକାନ୍ତ ରଥଙ୍କ 'ଶ୍ରୀରାଧା' କବିତା ହିନ୍ଦୀ କବି ଦିନକରଙ୍କ 'ଉର୍ବଶୀ' ଓ 'କୁରୁକ୍ଷେତ୍ର' କାବ୍ୟପରି ତା'ର ମୌଳିକ ଗାମ୍ଭୀର୍ଯ୍ୟ ରକ୍ଷା କରି ପାରିଲେ ଏହା ଏକ କ୍ଲାସିକ ସୃଷ୍ଟି ଭାବରେ ଓଡ଼ିଆ ସାହିତ୍ୟର ଗୌରବ ବୃଦ୍ଧି କରିବ ଏଥିରେ ସନ୍ଦେହ ନାହିଁ; କିନ୍ତୁ ଏ ପର୍ଯ୍ୟନ୍ତ 'ଶ୍ରୀରାଧା' କବିତାର ପୂର୍ଣ୍ଣାଙ୍ଗ ପ୍ରକାଶିତ ହୋଇନାହିଁ । ସମ୍ପ୍ରତି ପ୍ରକାଶିତ କବି ସୌଭାଗ୍ୟ ମିଶ୍ରଙ୍କ 'ଶକୁନ୍ତଳା' (ସୁଚରିତା—ଲେଖକ ସଂଖ୍ୟା ୧୯୮୬) ସମ୍ପର୍କରେ ଉଚ୍ଛ୍ୱସିତ ପ୍ରଶଂସା କରାଯାଇ ପାରେ । 'ଶକୁନ୍ତଳା' କବିତାଟି ମିଥ୍ ପ୍ରୟୋଗରେ ଏକ ଅନନ୍ୟ ସାଧାରଣ ଶକ୍ତିଶାଳୀ ସୃଷ୍ଟି । ଶ୍ରୀ ମିଶ୍ର ଚେଷ୍ଟା କଲେ ମିଥ୍‌କୁ ହିଁ ତାଙ୍କ କାବ୍ୟ କଳ୍ପନାର ସାର୍ଥକ ଉପାଦାନ ଭାବରେ ଗ୍ରହଣ କରି ପାରିବେ ।

"+ + ଦିନେ ପାହାନ୍ତି ପହର, ପୋଡ଼ା ସଳିତା ଗନ୍ଧରେ ବିଭୋର, ଶଯ୍ୟନକକ୍ଷ;। ମୁଁ ତାଙ୍କ ଭାରି ନିଦର ବାହୁ ବେଷ୍ଟନୀରୁ ଖସି ପଳାଇ ଆସିଲି ଚହ୍ଲା ନଈ କୂଳକୁ । କେଉଟକୁ କହିଲି ଡ଼ଙ୍ଗାଟିଏ, ସଜାଡ଼ି ଦେ ଜାଲ୍ । ମାଛକୁ କହିଲି, ଉଠ୍ ବେଳ ହେଲଣି ଧରା ପଡ଼ିବାର ।"

(ଶକୁନ୍ତଳା)—(୧୨)

ସ୍ଫୋଟବାଦ ଠାରୁ ସମ୍ପୂର୍ଣ୍ଣ ମୁକ୍ତ ସରଳ ଶବ୍ଦାବଳୀ ଓ ପଦବିନ୍ୟାସ ମଧ୍ୟରେ ଏକ ନୂତନ ପ୍ରକାଶର ସାର୍ଥକତା ପାଇଁ ଆଧୁନିକ କବିତା କ୍ରମେ ବାଟ ଖୋଲୁଛି । ବୋଧହୁଏ ମିଥ୍ ହିଁ ଆଧୁନିକ କବିତା ପାଇଁ ଏକ ନୂତନ ଯୁଗର ସମ୍ଭାବନା ପାଇଁ କ୍ଷେତ୍ର ପ୍ରସ୍ତୁତ କରିବ ଏବଂ ଉନ୍ନତ ରୁଚି ସହିତ ପରିପକ୍ୱ ଚେତନାର ଆତ୍ମୀୟ ସଂଯୋଗ ଘଟି ମିଥ୍‌ର ଭାବବୃତ୍ତ ପ୍ରସାରିତ ହେବ ।

## ପ୍ରତୀକ—

ମଣିଷର ମନ ଏକ ବିଚିତ୍ରମୟ ରହସ୍ୟ ବିଜଡ଼ିତ ଜଗତ । ଏଇ ମନ ମଧ୍ୟରେ ରୂପ-ଅରୂପର ଲୀଳାଖେଳା ଚାଲିଥାଏ । ଦୃଶ୍ୟମାନ ଜଗତର ଇନ୍ଦ୍ରିୟ ଗ୍ରାହ୍ୟ ସକଳ ପଦାର୍ଥ ମନରେ ଚମକ ସୃଷ୍ଟି କରେ । କିନ୍ତୁ ଅରୂପକୁ ମଣିଷ ରୂପ ଦିଏ ତା'ର ଭାବନା ମନନଶୀଳତା ଦ୍ୱାରା । ଅର୍ଥବ୍ୟଞ୍ଜକ ଶବ୍ଦ ବା ଭାଷା ଦ୍ୱାରା ଏହି ଭାବନା କାର୍ଯ୍ୟକାରୀ ହୋଇଥାଏ । ତେଣୁ ଶବ୍ଦ ହେଉଛି ବସ୍ତୁର ଚିହ୍ନ ସ୍ୱରୂପ । ଏହି ଚିହ୍ନ ଯେତେବେଳେ ଭାବନାର ପ୍ରତିନିଧିତ୍ୱ କରେ ସେତେବେଳେ ତାହା ପ୍ରତୀକ ରୂପେ ଗଣ୍ୟ ହୁଏ । କିନ୍ତୁ ସବୁ ଚିହ୍ନ ପ୍ରତୀକ ନୁହେଁ । ଚିହ୍ନ ମାଧ୍ୟମରେ ଅଭିବ୍ୟଞ୍ଜନା ଯେତେବେଳେ ଆରୋପିତ ହୁଏ ସେତେବେଳେ ତାହା ପ୍ରତୀକରେ ପରିଣତ ହୁଏ । ସଭ୍ୟତାର ବିକାଶ ସହିତ ପ୍ରତୀକ ସୃଷ୍ଟିର ଇତିହାସ ଘନିଷ୍ଠ ଭାବରେ ସଂପୃକ୍ତ । ମଣିଷ ପ୍ରଥମେ ବସ୍ତୁ ଧାରଣାରୁ ପ୍ରତୀକ ଧାରଣାରେ ଉପନୀତ ହୋଇଛି । ପ୍ରଥମେ ବସ୍ତୁକୁ ଚିତ୍ର ମାଧ୍ୟମରେ ପ୍ରକାଶ କରାଯାଉଥିଲା, ପରେ ଚିତ୍ର ବଦଳରେ ଶବ୍ଦର ପ୍ରତୀକ ବ୍ୟବହୃତ ହେଲା । ଉଦାହରଣ ସ୍ୱରୂପ, ଦେବତାର ପ୍ରତୀକ ଥିଲା ଦେବମୂର୍ତ୍ତିର ଚିତ୍ର; କିନ୍ତୁ ତା'ପରେ ବସ୍ତୁରେ ପରିଣତ ହୋଇ ତାହା ଶାଳଗ୍ରାମ ହେଲା । ଏହାପରେ ଈଶ୍ୱର ଓଁକାର ଶବ୍ଦର ପ୍ରତୀକରେ ପରିଣତ ହୋଇଗଲେ । ଏହି ଧାରଣାରୁ ସ୍ପଷ୍ଟ ଜଣାପଡ଼େ ଯେ ମଣିଷ ସଭ୍ୟତାର ଇତିହାସରେ ପ୍ରତୀକ ସ୍ଥୂଳ ବସ୍ତୁ ଜଗତରୁ ଆରମ୍ଭ କରି ସୂକ୍ଷ୍ମ ମାନସ ଜଗତ ପର୍ଯ୍ୟନ୍ତ ବିଚରଣ କରି ପରସ୍ପର ଭିତରେ ସମ୍ପର୍କ ରକ୍ଷା କରିଛି । ମଣିଷର ଚେତନ ଓ ଅବଚେତନ ମନ ଭିତରେ ବିପୁଳ ଅନୁଭୂତିର ଭଣ୍ଡାର ଲୁଚି ରହିଛି । ଏହି ବ୍ୟକ୍ତିଗତ ଧାରଣା ଅନେକାଂଶରେ ସାମୂହିକ ଅଭିଜ୍ଞତା ଭାବରେ ପ୍ରକାଶିତ ହୋଇଥାଏ । ମନୋବିଜ୍ଞାନ ଅନୁସାରେ ଏହାକୁ 'Collective unconsciousness' ବା 'ଯୌଥ ଅବଚେତନ' ବୋଲି ନାମିତ କରାଯାଏ । ଯୌଥ ଅବଚେତନର ସଞ୍ଚିତ ଅଭିଜ୍ଞତା ମଣିଷ ମସ୍ତିଷ୍କର ଗୋଟିଏ ଅଂଶରେ ଜମା ହୋଇ ରହିଥାଏ । କୌଣସି ବିଶେଷ ମୁହୂର୍ତ୍ତରେ, କୌଣସି ବିଶେଷ ଘଟଣାର

ପରିପ୍ରେକ୍ଷୀରେ ହଠାତ୍ ସେଇ ଜ୍ଞାନ, ଅଭିଜ୍ଞତା ମଣିଷର ସଚେତନ ମନରେ ଝଲସି ଉଠେ । ପ୍ରତୀକ ପ୍ରେମୀମାନେ ସଚେତନ ମନର ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ ସହିତ ଏବଂ ଅବଚେତନ ମନର ରହସ୍ୟମୟ ଅନୁଭୂତିର ସମନ୍ୱୟରେ ପାଠକ ମନରେ ଏଭଳି ଏକ ଅନୁଭୂତିର ପ୍ରତିମୂର୍ତ୍ତି ନିର୍ମାଣ କରନ୍ତି ଯାହାର କିଛି ଅଂଶ ଅସ୍ପଷ୍ଟ ଅଥଚ ସୁନ୍ଦର ଏହା ହିଁ ପ୍ରତୀକ ।

'ସାହିତ୍ୟ'ରେ 'ପ୍ରତୀକ' ନୂତନ ଆବିଷ୍କାର ନୁହେଁ । ବହୁ ପ୍ରାଚୀନ କାଳରୁ କାବ୍ୟ କବିତାରେ ପ୍ରତୀକର ବ୍ୟବହାର ଲକ୍ଷ୍ୟ କରାଯାଏ । ଭାରତବର୍ଷରେ ପ୍ରାଚୀନ ପ୍ରତୀକର ବ୍ୟବହାର ଲକ୍ଷ୍ୟ କରାଯାଏ । ଋଗ୍‌ବେଦରେ ପ୍ରତୀକ ସମ୍ପର୍କରେ ଉଲ୍ଲେଖ ଅଛି—'ଅଶ୍ରୀରମ୍ ଚିତ୍ କୃଣୁଥା ସୁପ୍ରତୀକମ୍' —(୧୩) (ଋଗ୍‌ବେଦ ୬।୬୮।୬) ଆମ ଧର୍ମଶାସ୍ତ୍ର ଓ ସାହିତ୍ୟରେ ପଦ୍ମଫୁଲକୁ ବିଭିନ୍ନ ପ୍ରତୀକ ରୂପରେ ବ୍ୟବହାର କରାଯାଇଛି । ବୌଦ୍ଧ ସାହିତ୍ୟରେ 'ମଣିପଦ୍ମ'ଠାରୁ ତନ୍ତ୍ର ଶାସ୍ତ୍ରରେ 'ସହସ୍ରାର' ବା ସହସ୍ରଦଳ ପଦ୍ମ ପର୍ଯ୍ୟନ୍ତ ଏବଂ ସଂସ୍କୃତ ସାହିତ୍ୟରେ ପ୍ରେମିକା ହାତରେ 'ଲୀଳାପଦ୍ମ' ସବୁ-ପଦ୍ମ ବିଭିନ୍ନ ପ୍ରତୀକ ରୂପେ ବ୍ୟବହୃତ ହୋଇଛି । ଗ୍ରୀକ୍ କବି ଦାନ୍ତେଙ୍କ 'Divine comedy' ଏକ ସାର୍ଥକ ପ୍ରତୀକବାଦୀ କାବ୍ୟ ଭାବରେ ଖ୍ୟାତି ଅର୍ଜନ କରିଛି । ପାରସ୍ୟ ଦେଶର ରୁମି ହାଫିଜ୍, ଓମାରଖୟାମ୍‌ଙ୍କ କବିତାରେ ମଧ୍ୟ ପ୍ରତୀକର ସାର୍ଥକ ପ୍ରୟୋଗ ହୋଇଛି । ଊନବିଂଶ ଶତାବ୍ଦୀର ଶେଷଭାଗରେ ସ୍ୱଭାବବାଦ ବିରୁଦ୍ଧରେ ଏକ ପ୍ରତିକ୍ରିୟା ରୂପେ ସାହିତ୍ୟରେ ପ୍ରତୀକ ପ୍ରୟୋଗ ଯେପରି ଏକ ଆନ୍ଦୋଳନରେ ପରିଣତ ହୋଇଥିଲା ତାହା ଆଗରୁ କେବେ ଘଟି ନ ଥିଲା । ଫରାସୀ କବିଗୋଷ୍ଠୀ ଏହି ପ୍ରତୀକବାଦୀ ଆନ୍ଦୋଳନର ପ୍ରତିଷ୍ଠାତା । ଖ୍ୟାର୍ଲସବୋଦଲେୟାର ଷ୍ଟିଫେନ୍ ମାଲର୍ମେ ଓ ର୍‍ୟାମ୍ବୋ ପ୍ରମୁଖ ସେମାନଙ୍କ ସୃଷ୍ଟି ଓ ସମାଲୋଚନା ମଧ୍ୟରେ ପ୍ରତୀକର ନୂତନ ପ୍ରୟୋଗ କରି ସମଗ୍ର ପାଶ୍ଚାତ୍ୟ ଦେଶର ବୁଦ୍ଧିଜୀବୀଙ୍କୁ ଆଲୋଡ଼ିତ କରିଥିଲେ । ଊନବିଂଶ ଶତାବ୍ଦୀର ଷଷ୍ଠ ଦଶକର ଶେଷଭାଗରେ ସରଳ, ତରଳ, ଭାବଉଚ୍ଛ୍ୱାସମୟ କବିତା ରଚନା ବିରୁଦ୍ଧରେ ଏହି ପାର୍‌ନାଶିୟାନ୍‌ମାନେ ନିଜର ଉଦାତ୍ତ କଣ୍ଠସ୍ୱର ଉତ୍ତୋଳନ କରିଥିଲେ । କବିତାରେ ରୋମାଣ୍ଟିକ୍ ଆତ୍ମକୈନ୍ଦ୍ରିକତା ଓ ଭାବାବେଗକୁ ପ୍ରତ୍ୟାଖ୍ୟାନ କରିବା ସଙ୍ଗେ ସଙ୍ଗେ ସେମାନେ କବିତାର ଭାଷାରେ ପ୍ରାଚୀନ ଦୁରୂହ କଠିନ ଶବ୍ଦର ପ୍ରଚଳନ ଏବଂ ବ୍ୟକ୍ତିକୈନ୍ଦ୍ରିକତା ବଦଳରେ ନୈର୍ବ୍ୟକ୍ତିକତା ଉପରେ ଅଧିକ ଗୁରୁତ୍ୱ ଆରୋପ କରିଥିଲେ । ଏହି ପାର୍‌ନାଶିୟାନ୍ କବିଗୋଷ୍ଠୀର କାବ୍ୟ ସଂକଳନ 'Le Purnasse Contemprain' ପ୍ରକାଶକ Lemenne ୧୮୬୬, ୧୮୭୧

ଏବଂ ୧୮୭୬ ମସିହାରେ ତିନ ଖଣ୍ଡରେ ପ୍ରକାଶ କରିଥିଲେ । ଏହି କାବ୍ୟ ଆନ୍ଦୋଳନ ରୋମାଣ୍ଟିସିଜିମ୍‌ର ବିରୋଧୀ ଥିଲେ ସତ୍ୟ; କିନ୍ତୁ ଏମାନଙ୍କ ପ୍ରକାଶଭଙ୍ଗୀ ଥିଲା ସ୍ୱଭାବବାଦୀମାନଙ୍କ ଭଳି ପ୍ରତ୍ୟକ୍ଷ-ବର୍ଣ୍ଣନାଧର୍ମୀ । ଏମାନଙ୍କ କବିତାରେ କୃତ୍ରିମତା ପ୍ରବେଶ କରିଥିଲା । ଫଳରେ ଏମାନେ ରୋମାଣ୍ଟିସିଜିମ୍‌ର ବିରୋଧ କରୁଥିଲେ ମୁଦ୍ଧା ବାସ୍ତବରେ ନବ୍ୟ ରୋମାଣ୍ଟିକ୍ (Neo-romantic) ଭାବରେ ଫରାସୀ ସାହିତ୍ୟରେ ପରିଗଣିତ ହୋଇଥିଲେ । ପ୍ରତୀକବାଦୀ ଆନ୍ଦୋଳନ କେବଳ ଫ୍ରାନ୍‌ସ ମଧ୍ୟରେ ସୀମାବଦ୍ଧ ନ ଥିଲା । ଏହା Stefan George ଏବଂ Rainer Maria Rilkeଙ୍କ କବିତା ମଧ୍ୟ ଦେଇ ଜର୍ମାନ୍ ସାହିତ୍ୟକୁ, Ruban Dainoଙ୍କ ଦ୍ୱାରା ସ୍ପ୍ୟାନିସ୍ ସହରକୁ ସ୍ପେନ୍‌କୁ, W. B. Yeats, Ezra Pound ଏବଂ T. S. Eliotଙ୍କ କବିତା ମାଧ୍ୟମରେ ଇଂରେଜୀ ସାହିତ୍ୟକୁ ପରିବ୍ୟାପ୍ତ ହୋଇ ଯାଇଥିଲା । ଇଏଟସ୍ ନିଜ କବିତାରେ ପ୍ରତୀକର ଗୁରୁତ୍ୱ ବୁଝାଇବାକୁ ଘୋଷଣା କରିଥିଲେ—'I have no speech but symbol' । ଆର୍ଥର ସିମନସ୍ ଥିଲେ ଇଂରେଜୀ ସାହିତ୍ୟରେ ଫରାସୀ ପ୍ରତୀକବାଦୀ କବିତାର ବାର୍ତ୍ତାବହ । ୧୮୯୯ ମସିହାରେ ତାଙ୍କର 'The symbolist movement in literature' ଲେଖା ପ୍ରକାଶିତ ହେବା ପରେ ଇଂରେଜୀ ସାହିତ୍ୟରେ ଆଲୋଡ଼ନ ସୃଷ୍ଟି ହୋଇଥିଲା ।

## (ଗ) ଓଡ଼ିଆ କାବ୍ୟ କବିତାରେ ପ୍ରତୀକର ପ୍ରୟୋଗ—

ଓଡ଼ିଆ କାବ୍ୟ କବିତାଠାରୁ ଆରମ୍ଭ କରି ଆଧୁନିକ କବିତା ପର୍ଯ୍ୟନ୍ତ ସର୍ବଜ୍ଞ କବିଗଣ ପ୍ରତୀକ ପ୍ରୟୋଗରେ ଦକ୍ଷତା ପ୍ରଦର୍ଶନ କରିଥିବା ଲକ୍ଷ୍ୟ କରାଯାଏ । ୮ମ ୯ମ ଶତାବ୍ଦୀ ବେଳକୁ ବୌଦ୍ଧଧର୍ମ ଦର୍ଶନରେ ଏହି ପ୍ରତୀକର ଦୃଷ୍ଟାନ୍ତ ପ୍ରଚୁର ପରିମାଣରେ ରହିଛି । ବସ୍ତୁତଃ ଭାରତୀୟ ସାହିତ୍ୟରେ ଏହି ସମୟରେ ହିଁ ପ୍ରତୀକବାଦ ପୂର୍ଣ୍ଣାଙ୍ଗ ରୂପେ ଆତ୍ମପ୍ରକାଶ କରିଛି । ବଜ୍ରଯାନ ଓ ସହଜଯାନ ଧର୍ମପନ୍ଥାକୁ ଅବଲମ୍ବନ କରି ଅପଭ୍ରଂଶ (ପ୍ରାକୃତ) ଭାଷାରେ ଲିଖିତ ବୌଦ୍ଧଗାନ ଓ ଦୋହା ସମ୍ପୂର୍ଣ୍ଣ ଭାବରେ ପ୍ରତୀକବାଦୀ ସାହିତ୍ୟର ଅନ୍ତର୍ଭୁକ୍ତ । ଉଦାହରଣ ସ୍ୱରୂପ—"ଉଁଚ୍ଚ ଉଁଚ୍ଚ ପାବତ ତହିଁ ବସଇ ଶବରୀବାଲୀ / ମୋରଙ୍ଗୀ ପିଚ୍ଛ ପିରହିଣ ଶବରୀ ଗିବତ ଗୁଞ୍ଜରୀମାଲୀ / ଉମତ ଶବର, ପାଗଲ ଶବର ମା' କରଗୁଲି ଗୁହାରି ତୋ ହରି / ଣିଅ ଘରିଣି ନାମେ ସହଜ ସୁନ୍ଦରୀ ।" (୧୪)

(ଶବରୀପାଦ)

ଶବରୀପାଦଙ୍କ କବିତାର 'ଶବରୀବାଳୀ' ଆପାତ ଅର୍ଥରେ ଶବରୁଣୀ ହେଲେ ମଧ୍ୟ ତାହା ପ୍ରକୃତ ନିହିତ ଅର୍ଥ ନୁହେଁ । ଏଠାରେ ଶବରୀବାଳୀ

ନୈରାମ୍ୟ ଦେବୀ ରୂପେ ଉଁଚା ପର୍ବତ ନିର୍ବାଣ ଦେବୀର ଅଧିଷ୍ଠାନ (ଆସ୍ଥାନ) ରୂପେ ଉନ୍ନତ ଶବର ଯୋଗୀ ଅର୍ଥରେ ବ୍ୟବହୃତ । ସେହିପରି 'ଭାଗବତ'ରେ ବିଭିନ୍ନ ପଦାବଳୀରେ ଜଗନ୍ନାଥ ଦାସ ବହୁ ଆଧ୍ୟାତ୍ମିକ ପ୍ରତୀକ ବ୍ୟବହାର କରିଥିବା ଲକ୍ଷ୍ୟ କରାଯାଏ । ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟରେ ଆତ୍ମାର ପ୍ରତୀକ ଭାବରେ 'ଝାଡ଼ଜଙ୍ଗଲ' (ସ୍ତୁତି : ଭୀମା ଭୋଇ) ବହୁ ଭାବରେ ବ୍ୟବହୃତ ହୋଇଛି । ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ କବିତାରେ ଏହି ପ୍ରତୀକାତ୍ମକ ପ୍ରୟୋଗ ଖୁବ୍ କ୍ଷୀଣ । ପ୍ରାୟ ପ୍ରାକ ଆଧୁନିକକାଳ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ଏହି ପ୍ରତୀକାତ୍ମକ ଶୈଳୀର କାବ୍ୟ କବିତା ଲେଖା ଯାଇନାହିଁ । ଫରାସୀ ସାହିତ୍ୟରେ ଯେଉଁ ପ୍ରତୀକବାଦୀ ଆନ୍ଦୋଳନ ଦେଖା ଯାଇଥିଲା ତାହାର ପ୍ରଭାବରେ ଓଡ଼ିଆ କାବ୍ୟ କବିତାରେ ୧୯୩୫-୩୬ ବେଳକୁ ପ୍ରତୀକ ପ୍ରୟୋଗର ସାର୍ଥକ ବିକାଶ ପରିଲକ୍ଷିତ ହେଲା । ଏହି ଶତାବ୍ଦୀର କବି ପ୍ରତୀକକୁ କବିତାର ପ୍ରାଣ ଭାବରେ ଗ୍ରହଣ କରି ନେଇଛି । ଗତାନୁଗତିକ ବା ପାରମ୍ପରିକ ଭାବରେ ସେ ପ୍ରତୀକ ପ୍ରୟୋଗ କରେନାହିଁ ବରଂ ତା'ର ପ୍ରୟୋଗ ସମ୍ପୂର୍ଣ୍ଣ ରୂପେ ବୌଦ୍ଧିକ ଓ ମାନସିକ । ଉପମାନ ଓ ଉପମେୟ ମଧ୍ୟରେ କୌଣସି ଦୃଷ୍ଟିଗତ ସାମଞ୍ଜସ୍ୟ ନ ଥାଇ ମଧ୍ୟ ଅବବୋଧର ମୁହୂର୍ତ୍ତରେ କବି ଚିନ୍ତାରେ ନୂତନ ପ୍ରତୀକଟିଏ ଜନ୍ମ ନେଇପାରେ । ଆଧୁନିକ ଓଡ଼ିଆ କବିତାର ପ୍ରାରମ୍ଭ ପର୍ବରେ (୧୯୩୫-୫୦) ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ ଓ କାଳନ୍ଦୀ ଚରଣ ପାଣିଗ୍ରାହୀ ବାମପନ୍ଥୀ ଚେତନା ସମ୍ବଳିତ ପ୍ରତୀକ ପ୍ରୟୋଗରେ (ଫାଶୀଖୁଣ୍ଟ, କାରାଗାର, ସୂତିକାଗୃହ, ଦା'-ହାତୁଡ଼ି, ଝଡ଼, ଚକ୍ରକାଇଁ, କୃଷ୍ଣନାଗ, ସନ୍ଧ୍ୟାନ୍ତ, ଦୂତ, ସୂର୍ଯ୍ୟ ଇତ୍ୟାଦି) ଯେଉଁ ନୂତନତା ଆଣିଥିଲେ ପ୍ରୟୋଗବାଦୀ ଓଡ଼ିଆ କବିତାରେ (୧୯୫୦-୬୭) ତାହା ବାସ୍ତବବାଦୀ ଓ ଅତି ବାସ୍ତବବାଦୀ ଚେତନାକୁ ଅବଲମ୍ବନ କରି ନୂତନ ରୂପ ପରିଗ୍ରହ କରିଥିଲା । ଏପରିକି କବି ରାଉତରାୟଙ୍କ 'ଭାନୁମତୀର ଦେଶେ' କାବ୍ୟଟି ପ୍ରତୀକ ପ୍ରୟୋଗର ମାନସିକତାକୁ ବହୁ ବ୍ୟାପ୍ତ କରିଥିବା ଅବିସମ୍ବାଦିତ । କେତୋଟି ଉଦାହରଣରୁ ଏହା ସ୍ପଷ୍ଟ ଉପଲବ୍ଧି କରିହେବ ।

"ତମେ ଲେଖିଥିଲ ତରଙ୍ଗ ଅସ୍ତ ସୂର୍ଯ୍ୟର କବି / ଫୁଲ ଫୁଟିବାର ଉତ୍ସବରୁ / ତା'ର ନିମନ୍ତ୍ରଣ ଆସିଥିଲା / ସେ ଫେରାଇ ଦେଲା / ତା' କଣ୍ଠରେ ଝରାଫୁଲର ବନ୍ଦନା ।" (୧୫)

ଏଠାରେ ଅସ୍ତ ସୂର୍ଯ୍ୟ ଉଦ୍‌ଗତ କାମନା ବା ଅବଲୁପ୍ତ ଯୌବନର ପ୍ରତୀକ । ଝରାଫୁଲ ସଂସାରର କ୍ଳେଶ, କ୍ଳାନ୍ତି, ତାପ, ଅପଘାତର ପ୍ରତୀକ ।

'ଖାନୁମଣୀର ଦେଶେ'ର ନାୟକ ତରଙ୍ଗ ନାୟିକା ବନୀତା ପରି ଜୀବନକୁ ସ୍ୱପ୍ନ, ଉପଭୋଗ, ଉତ୍ସବ ଭିତରେ ନ ଦେଖି ଜୀବନର ଇତକଥା, ପ୍ରଚ୍ଛନ୍ନ ଉଦ୍ଦେଶ୍ୟ, ଯନ୍ତ୍ରବସ୍ତୁ, ଆବଶ୍ୟକତା ମଧ୍ୟ ଦେଇ ଦେଖିଛୁ । ଏସବୁ ପ୍ରତୀକ ମଝରେ କବି ଶ୍ରୀ ଅନନ୍ତ ପଟ୍ଟନାୟକଙ୍କ 'ଶାନ୍ତିଶିଖା'ରେ ପ୍ରକାଶିତ 'ଝରରେ ରୁଧିର'ର ନିମ୍ନ ପଂକ୍ତିଟି ଯେଉଁ ବଳିଷ୍ଠ ରାଜନୈତିକ ପ୍ରତୀକ ସୃଷ୍ଟି କରିଛି ତାହା ଏକାନ୍ତ ସ୍ୱାଗତ-ଯୋଗ୍ୟ । "ରୁଧିର ସାଗରେ ପହଁରି ପହଁରି / ତୋଳେ ଯେ ତୋ ପାଇଁ ରକ୍ତ-କଇଁ/କୃଷ୍ଣ ନାଗର ଦଂଶନେ ସେ କି / ପଡ଼ିବ ନଇଁରେ ପଡ଼ିବ ନଇଁ ।" (୧୬) ଏଠାରେ ରକ୍ତକଇଁ, କୃଷ୍ଣନାଗ ପ୍ରଭୃତି ଯେଉଁ ବୈପ୍ଳବିକ ସାମାଜିକ ମୂଲ୍ୟବୋଧର ପ୍ରତୀକ ଭାବରେ ଠିଆ ହୋଇଛନ୍ତି ତାହା କେବଳ ଜଣେ ସାମ୍ୟବାଦୀ କବିର ସାମାଜିକ ଅଙ୍ଗୀକାରର ପ୍ରତିଫଳନ ମାତ୍ର । ପରିବର୍ତ୍ତିତ ସମାଜ, ଅର୍ଥନୈତିକ ପରିସ୍ଥିତି ହିଁ ଏପରି ଏକ ପ୍ରତୀକ ସୃଷ୍ଟି ପାଇଁ ଦାୟୀ ଓ କବି ଚେତନାର ଏହି ଭାବନା ଏକ ଶୋଷଣମୁକ୍ତ ସାମ୍ୟବାଦୀ ସମାଜ ଗଠନ ପାଇଁ ଅଭିପ୍ରେତ ।

ପରବର୍ତ୍ତୀ ଦଶନ୍ଧିରେ ଚନ୍ଦ୍ରାମଣି, ରମାକାନ୍ତ ଓ ସୀତାକାନ୍ତଙ୍କ ପ୍ରତୀକଗୁଡ଼ିକ ଅଧିକ ସମ୍ପ୍ରସାରଣଶୀଳ ଓ ଉଦ୍‌ବୋଧନକ୍ଷମ ମନେହୁଏ । ତୃତୀୟ ଚକ୍ଷୁ, ସପ୍ତମ ଋତୁ, ସମୁଦ୍ର, ଶବନଦୀ, ସପ୍ତମ ପୃଥିବୀ, କାଗଜ ଡଙ୍ଗାର ଶୋକ ଆଦି ମହୁମାଛି, ଅରଣ୍ୟ ମଇଁଷି ଆଦି ନାମକରଣ ମଧ୍ୟରେ ଏହି ପ୍ରତୀକ ପ୍ରୟୋଗର ଅପରିହାର୍ଯ୍ୟତାକୁ ଲକ୍ଷ୍ୟ କରାଯାଇ ପାରେ । ଆଜି ସମଗ୍ର ମଣିଷ ସମାଜ ଏକ ପ୍ରତୀକାତ୍ମକ ବିଶ୍ୱରେ ବଞ୍ଚୁଥିଲାବେଳେ କବି ତା'ର କାବ୍ୟ ପରିସର ମଧ୍ୟରେ ପ୍ରତୀକ ପ୍ରୟୋଗ କରିବା ସ୍ୱାଭାବିକ । ସୀତାକାନ୍ତ ମହାପାତ୍ରଙ୍କ ପ୍ରତୀକମାଳା ପ୍ରାଣହୀନ ଜୀବନ ଭିତରୁ ସଂଗୃହୀତ ହୋଇଥିଲେହେଁ ପରମେଟାଫିଜିକାଲ୍ ଦୃଷ୍ଟିଭଙ୍ଗୀକୁ ସ୍ୱୀକାର କରିବାକୁ ହେବ । ସମୁଦ୍ର, କଇଁଚ, ମଲ୍ଲଓଟ, ଗାଉଁଲି କମାର, ଗାଉଁଲି ତନ୍ତୀ, ମରୁଭୂମି, ନଈ ଆଦି ଶବ୍ଦକୁ ସେ ଜୀବନ, ମୃତ୍ୟୁ, ମଣିଷ, ଭଗବାନ ଓ ବୃହତ୍ତର ଚେତନାର ପ୍ରତୀକ ରୂପେ ବ୍ୟାପକ ଭାବରେ ବ୍ୟବହାର କରିଛନ୍ତି । ସେହିପରି ରମାକାନ୍ତ ରଥ ମଧ୍ୟ ବିମାନ ବନ୍ଦର, ବ୍ୟୋମଯାନ, ପକ୍ଷୀ, ବୃକ୍ଷ, ନଈ, ସମୁଦ୍ର ଢେଉ ପ୍ରଭୃତିଙ୍କୁ ତାଙ୍କ କବିତାରେ ପ୍ରତୀକାର୍ଥରେ ପ୍ରୟୋଗ କରିଛନ୍ତି । ଏହି ପରିପ୍ରେକ୍ଷୀରେ 'ଲଣ୍ଠନ' ଓଡ଼ିଆ ସାହିତ୍ୟରେ ଏକ ଉତ୍କୃଷ୍ଟ ପ୍ରତୀକାତ୍ମକ କବିତା ଭାବରେ ବିବେଚ୍ୟ । ସୀତାକାନ୍ତ ମହାପାତ୍ରଙ୍କ 'ପ୍ରଜାପତିର ମୃତ୍ୟୁ', ଘାସଫୁଲ ଓ ପ୍ରତିଭା ଶତପଥୀଙ୍କ ସାହାଡ଼ା ସୁନ୍ଦରୀ ଯଥାକ୍ରମେ ସୌନ୍ଦର୍ଯ୍ୟବୋଧ ଓ ମଣିଷର inner beingର ପ୍ରତୀକ ଭାବରେ କବିତାରେ ପ୍ରୟୋଗ କୁଶଳତା ଲାଭ କରିଛି । ଦୀପକ ମିଶ୍ରଙ୍କ

କବିତାରେ ପ୍ରତୀକ ରୂପରେ ବିଧବା, ଖଣ୍ଡା, ବିମାନ, ଶବ, ପଦ୍ମ, ତାରା ପ୍ରଭୃତି ରୂପ ପାଇଛନ୍ତି । ସେ ମୃତ୍ୟୁକୁ ଅରଣା ମଇଁଷି ଏବଂ ମୃତ୍ୟୁ ପରବର୍ତ୍ତୀ ଏକ ଭୌତିକ ଜଗତକୁ ସପ୍ତମ ପୃଥିବୀ ଭାବରେ ପ୍ରତୀକିତ କରିଛନ୍ତି । କବି ସୌଭାଗ୍ୟ ମିଶ୍ର ଝିଟିପିଟି, ମାଙ୍କଡ଼ସା, ସାପ ପ୍ରଭୃତିକୁ ମଣିଷର ଦୈହିକ କ୍ଷୁଧା ଭାବରେ ପ୍ରତୀକିତ କରିଛନ୍ତି ଓ 'ମହୁମାଛି'କୁ ଆଧୁନିକ ବ୍ୟସ୍ତ ମଣିଷର ପ୍ରତିନିଧି ରୂପରେ ବାଛିଛନ୍ତି । ଏହିପରି ବହୁ ବୁଦ୍ଧିଦୀପ୍ତ ଓ ଉଦ୍‌ବୋଧନକ୍ଷମ ପ୍ରତୀକ ପ୍ରୟୋଗରେ ଉତ୍ତରକାଳୀନ ଓଡ଼ିଆ କବିତା ଅର୍ଥପୂର୍ଣ୍ଣ ଏବଂ ଗମ୍ଭୀର ହୋଇ ଉଠିଛି ।

## (ଘ) ଚିତ୍ରକଳ୍ପ : ଆର୍କିଟାଇପ—

ମନସ୍ତତ୍ତ୍ୱ ମଣିଷ ମନର କୋଣ ଅନୁକୋଣ ଯଥାସମ୍ଭବ ଉଦ୍‌ଘାଟନ କରିପାରି ଥିବାରୁ କାବ୍ୟ ବିଚାର କ୍ଷେତ୍ରରେ ନିଜର ଦୃଢ଼ ଅଧିକାର ସାବ୍ୟସ୍ତ କରିପାରିଛି । ତାହା ଯେପରି କାବ୍ୟ ସୃଷ୍ଟି ପ୍ରକ୍ରିୟା ବିଶ୍ଳେଷଣ କରିପାରେ ଠିକ୍ ସେପରି କବିଙ୍କ ସୃଷ୍ଟି କ୍ଷମତାର ମୂଳ ସୂତ୍ରଗୁଡ଼ିକର ରହସ୍ୟ ମଧ୍ୟ ଭେଦ କରିପାରେ । ସମ୍ପ୍ରତି କାବ୍ୟ ସୃଷ୍ଟିର ଦୁଇଟି ରୀତି ଅନୁସୃତ ହେଉଛି । ପ୍ରଥମଟି ହେଲା ସାଇକୋଲୋଜିକାଲ୍ ଭିଜନାରୀ ରୀତି ଏବଂ ଦ୍ୱିତୀୟ ମନସ୍ତତ୍ତ୍ୱବିତ୍‌ଙ୍କର ପ୍ରିୟତର । ପ୍ରଥମଟି ମଣିଷ ମନରୁ ଚେତନ ସ୍ତରର କଥା । କବି ସେଥିରେ ଚେତନ ମନର ବିଶ୍ଳେଷଣ କରିଥାନ୍ତି । ମଣିଷର ସୁଖ ଦୁଃଖର ଚିରନ୍ତନ ଅନୁଭୂତି ଓ ଅଭିଜ୍ଞତାକୁ ହିଁ ଭାସିତ ରଖିଥାନ୍ତି । ସାଇକୋଲୋଜିକାଲ ରୀତି ନିଜ ନିଜର ବ୍ୟାଖ୍ୟାନ । ବିଶ୍ୱ ସାହିତ୍ୟର ଅଧିକାଂଶ ରଚନା ଏହି ଶ୍ରେଣୀର ଅନ୍ତର୍ଭୁକ୍ତ । ରୂପ ଯାହା ହେଉନା କାହିଁକି ମନସ୍ତାତ୍ତ୍ୱିକ ରଚନା ରୀତି ମଣିଷର ଚେତନ ମନର ସୁବିସ୍ତୃତ ଅଭିଜ୍ଞତା ଉପାଦାନ ସ୍ୱରୂପ ସଂଗ୍ରହ କରିଥାଏ, ଚେତନ ଜଗତ ତାହା ଆମ ଦୃଷ୍ଟି ସମ୍ମୁଖକୁ ଆଣେ । ଅନ୍ତର୍ଦୃଷ୍ଟି ସମ୍ପନ୍ନ ରଚନା ରୀତିର କାବ୍ୟ ସୃଷ୍ଟି (risionery mode of artistic creation)ରେ ମନସ୍ତତ୍ତ୍ୱବିତ୍‌ଙ୍କର ଆନନ୍ଦ । ଏହା ପ୍ରଥମର ସମ୍ପୂର୍ଣ୍ଣ ବିପରୀତ ଏକ ରଚନା ରୀତିର ସାହିତ୍ୟ ସୃଷ୍ଟି । ଏହାର କାବ୍ୟୋପାଦାନ ଅଭିଜ୍ଞତା ସମ୍ପୂର୍ଣ୍ଣ ଅପରିଚିତ ଜଗତର । ଅର୍ଥାତ୍ ଏହା ମଣିଷର ଚେତନ ମନର ଅନ୍ତରାଳବର୍ତ୍ତୀ ଅଦ୍ଭୁତ ଏକ ଅଭିଜ୍ଞତାର ଜଗତରୁ ନିଜର ଅସ୍ତିତ୍ୱ ଉତ୍ପାଦନ କରେ ଓ ମଣିଷର ଅତିମାନବୀୟ ଜଗତ (Super human world)କୁ ପ୍ରବୋଧନ କରେ । ସେ ସବୁ ଅଭିଜ୍ଞତା ହେଉଛି ମଣିଷର ଆଦିମ ମୌଳ ଅଭିଜ୍ଞତା (Primondial experience) । ତାହା ସର୍ବାଂଶରେ ମଣିଷର ବୋଧଶକ୍ତିର ଦୁରଧିଗମ୍ୟ,

ତାହା ନିକଟରେ ମଣିଷର ଜ୍ଞାନ ବାରବାର ପରାଭୂତ ହୁଏ । ବିପୁଳ ଏହି ଅଭିଜ୍ଞତା ନିଜର ବିଶାଳତାରୁ ଅର୍ଥ ଓ ଶକ୍ତି ସଂଗ୍ରହ କରି କାଳାତୀତ ଏକ ଗଭୀର ସ୍ତରରୁ ଆତ୍ମପ୍ରକାଶ କରେ । ଅନ୍ତର୍ଦୃଷ୍ଟି ତଳେ ଅଦ୍ଭୁତ ଏକ ଜଗତ ମୁହୂର୍ତ୍ତିକ ମଧ୍ୟରେ ଉଦ୍ଭାସିତ ହୋଇଉଠେ । ସେହି ଜଗତ ମଣିଷ ଜନ୍ମର ବହୁ ପୂର୍ବରୁ ହିଁ ଗଢ଼ିଉଠି ଆସିଅଛି । ସାଧାରଣତଃ କବି ଓ ସାହିତ୍ୟିକଙ୍କର ଏହି ଅନ୍ତର୍ଦୃଷ୍ଟି ଥାଏ । ଅନ୍ତର୍ଦୃଷ୍ଟି ସମ୍ପନ୍ନ କବିମାନେ ପ୍ରାୟ ଐତିହାସିକ ଓ ପୌରାଣିକ ଉପାଦାନ ମାଧ୍ୟମରେ ଆଦିମ ଅଭିଜ୍ଞତାକୁ ସମୁଚିତ ରୂପଦାନ କରିଥାନ୍ତି । ମନସ୍ତତ୍ତ୍ୱ କହେ, କବି ଏ ଯେଉଁ ପୌରାଣିକ ଉପାଦାନ ସାହାଯ୍ୟରେ ଅଭିଜ୍ଞତାକୁ ଯଥାର୍ଥ ଅଭିବ୍ୟକ୍ତ ଦେଇଥାନ୍ତି ସେଗୁଡ଼ିକୁ ପୂର୍ବର ଅନ୍ୟ ବ୍ୟବହୃତ ଉପାଦାନ ବୋଲି ମନେ କରିବା ସମୀଚୀନ ହେବନାହିଁ । ଆଦିମ ମୌଳ ଅଭିଜ୍ଞତା କବିଙ୍କ ସୃଷ୍ଟି କ୍ଷମତାର ମୂଳ ଉତ୍ସ । ତାହାର ଗଭୀରତା ଅଗାଧ, ଅନନ୍ତ, ଅପରିସୀମ । ଏହା ରୂପ ଦେବାକୁ ପୌରାଣିକ ଚିତ୍ରକଳ୍ପର ସହାୟତା ଆବଶ୍ୟକ କରିଥାଏ । ସ୍ୱୟଂ ଅଭିବ୍ୟକ୍ତ ହେବାକୁ ତା'ର ନିଜର ଭାଷା ନ ଥାଏ କି ପ୍ରତ୍ୟକ୍ଷ ଚିତ୍ରକଳ୍ପ ନ ଥାଏ । ତାହା ଏକ ଅନ୍ତର୍ଦୃଷ୍ଟି ମାତ୍ର ଏବଂ ତାହାକୁ ପ୍ରକାଶୋନ୍ମୁଖ ଏକ ଗଭୀର ପୂର୍ବ ସଂସ୍କାର ବା ପୂର୍ବ କଳ୍ପନା କୁହାଯାଏ । ୟୁଙ୍ଗ୍ କହନ୍ତି, ଠିକ୍ ଏକ ଘୂର୍ଣ୍ଣିବାତ୍ୟା ପରି ତାହା ଗୁରିପାଖେ ଯାହାକିଛି ପାଏ ସବୁ ଧରି ଊର୍ଦ୍ଧ୍ୱକୁ ଉଠିଆସେ ଓ ପ୍ରତ୍ୟକ୍ଷୀଭୂତ ରୂପ ପାଏ । ସେହି ଅନ୍ତର୍ଦୃଷ୍ଟିର ଅନନ୍ତ ସମ୍ଭାବନାକୁ କୌଣସି ନିର୍ଦ୍ଦିଷ୍ଟ ଅଭିବ୍ୟକ୍ତି କେବେ ନିଃଶେଷ କରିପାରେ ନାହିଁ । ବରଂ ସବୁ ତାହାପାଇଁ ଚିରକାଳ ଅପର୍ଯ୍ୟାପ୍ତ ମନେହୁଏ । ତନ୍ମଧ୍ୟରୁ ସାମାନ୍ୟ କେତୋଟି ସଙ୍କେତ ନିବେଦନ କରିବାକୁ ଗୁହୁଁଥିଲେ କବିଙ୍କୁ ପାଖରେ ବିପୁଳ ଉପାଦାନ ସଂଗ୍ରହ କରିବାକୁ ହୁଏ । ଅଧିକନ୍ତୁ ସେହି ଅନ୍ତର୍ଦୃଷ୍ଟିର ସବୁ ଅପାର୍ଥିବ ଅସତ୍ୟାଭାସକୁ ଅଭିବ୍ୟକ୍ତ ଦେବାକୁ ହେଲେ ତାଙ୍କୁ ଚିତ୍ରକଳ୍ପ ରଚନାର ଆଶ୍ରୟ ନେବାକୁ ହୁଏ—ତାଙ୍କର ସେସବୁ ଚିତ୍ରକଳ୍ପ ପ୍ରାୟ ହୋଇଥାନ୍ତି ଦୁର୍ବୋଧ ଓ ବିସଦୃଶ । ସେଥିପାଇଁ ଦାନ୍ତେଙ୍କର ପୂର୍ବ ସଂସ୍କାର ରୂପ ପାଇଛି ସ୍ୱର୍ଗ ଓ ନର୍କର ସ୍ତରଗ୍ରାମରେ । ଗେଟେଙ୍କର ଗ୍ରୀକ୍ ପୁରାଣର ନରକାଞ୍ଚଳରେ । ୱାଗନର୍‌ର ଏଥିଲାଗି ସମସ୍ତ ନୋର୍ଡ଼ିକ (Nordic) ମିଥ୍‌ର ପ୍ରୟୋଜନ ଦେଖିଛନ୍ତି ।

## (ଙ) ଆର୍କିଟାଇପସ୍—

ସିଗ୍‌ମଣ୍ଡ ଫ୍ରଏଡ୍ ମଣିଷର ମନୋଜଗତର ତିନୋଟି ସ୍ତର ଲକ୍ଷ୍ୟ କରିଥିଲେ ଯଥା—ସଚେତନ (Conscious), ପ୍ରାକ୍‌ଚେତନ (Pre conscious)

ଓ ଅବଚେତନ (unconscious) । ଫ୍ରଏଡ଼ଙ୍କ ଅବଚେତନ କାମୁକ ଓ ହିଂସ୍ର ଅବଦମିତ ପ୍ରବୃତ୍ତିର ରହସ୍ୟାଗାର । ଏହି ଅବଚେତନ ମନ ସମ୍ପର୍କରେ ୟୁଙ୍ଗ୍‌ଙ୍କ ଦର୍ଶନ ସମ୍ପୂର୍ଣ୍ଣ ଅଭିନବ । ତାଙ୍କ ମତରେ ମଣିଷ ମନର ଅବଚେତନର ସ୍ତର ଦ୍ୱିଧା ବିଭକ୍ତ—ବ୍ୟକ୍ତିଗତ ଅବଚେତନ (Personal conscious) ଓ ସାମୂହିକ ଅବଚେତନ (Collective-unconscious) । ମନର ଚେତନ ସ୍ତରକୁ ସଂଯୁକ୍ତ ହୋଇ ବ୍ୟକ୍ତିଗତ ଅବଚେତନ ରହିଥାଏ । ଫଳେ ଯାହା ଜୀବନରେ ଚେତନ ଥିଲା ତାହା ଅବଦମିତ ହୋଇ ବ୍ୟକ୍ତିଗତ ଅବଚେତନ ରୂପରେ ପ୍ରକାଶ ପାଏ । ଏହି ବ୍ୟକ୍ତିଗତ ଅବଚେତନ ତଳେ ରହିଛି ଅଗାଧ ଏକ ଗଭୀର ସ୍ତର ଯାହାକି ବ୍ୟାପ୍ତ ଏବଂ ବିଶାଳ । ଅନାଦି ଓ ଅନନ୍ତ ତାହାର ସ୍ଥିତି ଓ ଆସ୍ପୃହନ, ମଣିଷର ସୌନ୍ଦର୍ଯ୍ୟପ୍ରିୟତା, ନୀତିମତ୍ତା ଓ କଲ୍ୟାଣ ବୃଦ୍ଧିର ମୂଳ ଉତ୍ସ । ସେହି ସ୍ତରର ନାନା ସାମୂହିକ ଅବଚେତନ । ତାହା ଆଦୌ ବ୍ୟକ୍ତିଗତ ନୁହେଁ, ସମ୍ପୂର୍ଣ୍ଣ ସାର୍ବଜନୀନ, ପୃଥିବୀର ମଣିଷ ମାତ୍ରେ ସାମୂହିକ ଅବଚେତନ ସ୍ତରର ପ୍ରକୃତି ଓ ସ୍ୱରୂପ ସମାନ । ବ୍ୟକ୍ତିଗତ ଅବଚେତନର ଆଧେୟ feeling-toned complexes ଏହା ମଣିଷର ମାନସିକ ଜୀବନର ଏକାନ୍ତ ବ୍ୟକ୍ତିଗତ ଓ ପ୍ରାଇଭେଟ ଦିଗଟି ଗଠନ କରିଥାଏ । ସାମୂହିକ ଅବଚେତନର ଆଧେୟ ହେଉଛି ଆର୍କିଟାଇପସ୍ (archetypes) । ମଣିଷର ଏହି ସାମୂହିକ ଅବଚେତନକୁ ଚରିତ୍ରୀଭୂତ କରି କୁହାଯାଏ ତେବେ ତାକୁ କହିହେବ ଏକ ସାମୂହିକ ମଣିଷ ବା Collective humanbeing । ଯେପରି ଆନିମା ଓ ଆନିମସ୍ ମିଥୁନ ମୂର୍ତ୍ତି ଜନ୍ମ ମୃତ୍ୟୁ ଯୌବନ ଜରାର ସମସ୍ତ ଭେଦରେଖା ଅତିକ୍ରମ କରି ଯୁଗ ଯୁଗର ସବୁ ମାନବିକ ଅଭିଜ୍ଞତା ନେଇ ଋଦ୍ଧ ହୋଇ ରହିଛି । ଅଜ, ନିତ୍ୟ, ଶାଶ୍ୱତ ଓ ପୁରାଣ ସେହି ନାରୀ-ପୁରୁଷର ଯୁଗନ୍ଧ ମୂର୍ତ୍ତି ସାମୟିକ ସବୁ ପରିବର୍ତ୍ତନର ଊର୍ଦ୍ଧ୍ୱରେ ବିରାଜିତ । ତାଙ୍କ ପାଇଁ ବର୍ତ୍ତମାନ ହେଉଛି ହଜାର ହଜାର ବର୍ଷ ପୂର୍ବର କେଉଁ ଏକ ଅଜ୍ଞାତ ଶତାବ୍ଦୀ, ଅଗାଧ ଅଭିଜ୍ଞତା ଦୃଷ୍ଟିରୁ ସେ ପୁଣି ଅର୍ବାଚୀନ ପ୍ରେଜେଣ୍ଟ । ବ୍ୟକ୍ତି, ଜାତି ଓ ଗୋଷ୍ଠୀ ଭିତରେ ସେ ବଞ୍ଚିଛନ୍ତି । ବୃଦ୍ଧି, ବିକାଶ ଓ ଅବକ୍ଷୟର ସମ୍ମିଳିତ ଏକ ଜୀବନ୍ତ ଛନ୍ଦ ସୁଷମା ସେ ଚିରକାଳ ଲାଭ କରିଛନ୍ତି । ତାହା ଆଦିମ ମୌଳ ମାନବିକ ଅଭିଜ୍ଞତାର ମୂର୍ତ୍ତି ବିଗ୍ରହ । ସେହି ମାନସିକ ସ୍ଥିତିର ଆଧେୟ ହେଉଛି—

## (ତ) ଆର୍କିଟାଇପସ୍—

'Psychic residua of numbertess experience' । ଏହି ଆର୍କିଟାଇପ୍‌ର ଅଭିବ୍ୟକ୍ତି ଘଟିଥାଏ ମିଥ୍, ପରୀ କଥା ଓ ଆର୍କିଟାଇପାଲ

ଚରକଳ୍ପ ମାଧ୍ୟମରେ । ଏହିସବୁ ଚରକଳ୍ପର ସ୍ୱରୂପ ଓ ଅଭିପ୍ରାୟ ସବୁ ଦେଶର ସାହିତ୍ୟରେ ପ୍ରାୟ ସମାନ ।

## ଆର୍କିଟାଇପାଲ ଥୀମସ୍—

ଆର୍କଟାଇପର ସ୍ୱରୂପ ନିର୍ଣ୍ଣୟ ସର୍ବଥା ଦୁଃସାଧ୍ୟ । ପ୍ରାଣୀମାନଙ୍କ ଟିପିକାଲ୍ ବ୍ୟବହାର ପାର୍ଟନରୁ ଓ ମଣିଷର ଅଭିଜ୍ଞତା ସମ୍ପର୍କ ସୂତ୍ରରୁ ତାହାର ସ୍ୱରୂପ ବୁଝିବାକୁ ହେବ । ଆର୍କିଟାଇପାଲ୍ ଚରକଳ୍ପାବଳୀ ପ୍ରାୟ ଅର୍ଦ୍ଧ ପୌରାଣିକ । ଅଳ୍ପ କେତୋଟି ମାତ୍ର ପରିଚିତ ଥୀମ୍ ଏଠାରେ ବର୍ଣ୍ଣିତ କରାଯାଇପାରେ ।

### (୧) ଜ୍ଞାନୀବୃଦ୍ଧ—

ସ୍ୱପ୍ନ, ପୁରାଣ, ଲୋକସାହିତ୍ୟ, ଧର୍ମ, ଗୁହ୍ୟ-ସାଧନା, ଇତିହାସ ଓ ମଣିଷର ବ୍ୟକ୍ତିଗତ ଅଭିଜ୍ଞତାରେ ଯେଉଁ ପୁରୁଷ ମୂର୍ତ୍ତିଟି ପ୍ରାୟ ସବୁବେଳେ ଆବିର୍ଭୂତ ହୋଇଥାନ୍ତି ତାଙ୍କୁ ଜ୍ଞାନୀବୃଦ୍ଧ (The wiseddman) ଆର୍କିଟାଇପ୍ ନାମରେ ଅଭିହିତ କରିହେବ । ଏହି ଆର୍କିଟାଇପର ଅନେକ ଭୂମିକା—ଈଶ୍ୱର, ଦେବଦୂତ, ଋଷି, ବିଧି, ବିଧାନକର୍ତ୍ତା, ନୃପତି, ମନ୍ତ୍ରୀ, ଦାର୍ଶନିକ, ଧର୍ମଯାଜକ, ଅଧ୍ୟାପକ, ବିଶ୍ୱରପତି, ହେଡ୍‌ମାଷ୍ଟର, ଡକ୍ଟର, ଆଲ୍‌କେମିଷ୍ଟ, ଯାଦୁକର, ମନ୍ତ୍ରବିତ୍, ଐନ୍ଦ୍ରଜାଲିକ, ପିଶାଚସିଦ୍ଧ ଇତ୍ୟାଦି । ଏ ସମସ୍ତେ ଯୁଗ ଯୁଗର ସଞ୍ଚିତ ମାନବିକ ପ୍ରଜ୍ଞା ଓ ଅଭିଜ୍ଞତାର ମୂର୍ତ୍ତି ପ୍ରତୀକ । ମଣିଷ ମନରେ ଏହି ଜ୍ଞାନୀବୃଦ୍ଧର ପ୍ରଭାବ ଅପରିସୀମ । ଐତିହାସିକ ଦୃଷ୍ଟିରୁ ତାହାର ରୂପ ପ୍ରକ୍ଷେପଣ ମଣିଷର ଚିନ୍ତାଚେତନା ଗଠନ ଦିଗରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । କନଫୁସିଅସ୍, ବୁଦ୍ଧ, ଆରିଷ୍ଟଟଲ, କାର୍ଲମାର୍କସ, ମହାତ୍ମାଗାନ୍ଧୀ ସେହି ରୂପ ପ୍ରକ୍ଷେପଣର ଏକ ଏକ ଐତିହାସିକ ବ୍ୟକ୍ତି । ଜ୍ଞାନୀବୃଦ୍ଧ ଆର୍କିଟାଇପ୍‌ର ରୂପ ପ୍ରକ୍ଷେପଣ ଅନେକତ ମଣିଷର କଲ୍ୟାଣ କରିଥାଏ । ଜ୍ଞାନୀବୃଦ୍ଧ ଆର୍କିଟାଇପ୍‌ର ଟିପିକାଲ୍ ଥୀମ୍ ହେଉଛି—ମହତ୍ ସୃଷ୍ଟି ଓ ଲୁପ୍ତ ଜ୍ଞାନରତ୍ନ ସମୁଦ୍ଧାର । ମଣିଷର ସବୁ ଉଦ୍ଭାବନ ଓ ଗବେଷଣା ତଥା ସମସ୍ତ ଦାର୍ଶନିକ ବୈଜ୍ଞାନିକ ଅନୁସନ୍ଧାନ ମୂଳରେ ଏହି ଆର୍କିଟାଇପ୍ କ୍ରିୟାଶୀଳ ।

### (୨) ଆଦ୍ୟଜନନୀ—

ଆଦ୍ୟଜନନୀ ଆର୍କିଟାଇପ୍ (The Magna Mater) ସବୁଠାରୁ ବେଶୀ ରହସ୍ୟମୟ ଏବଂ ଅଧିକ ପ୍ରଭାବଶାଳୀ ମଧ୍ୟ । ମଣିଷର ବୁଦ୍ଧି ତାକୁ ସ୍ପଷ୍ଟ ବୁଝିପାରେ ନାହିଁ ଅଥଚ ତା'ର ଦୁର୍ଜ୍ଞେୟ ପ୍ରଭାବରେ ଚିରକାଳ ଅଭିଭୂତ

ହୋଇଥାଏ । ଧର୍ମ, ସାହିତ୍ୟ, ପୁରାଣ, ଲୋକକଥା ଓ ବ୍ୟକ୍ତିଗତ ଜୀବନରେ ଏହି ଆର୍କିଟାଇପ୍‌ର ଭୂମିକା ସବୁ ଦେଶ ଓ ସବୁ କାଳରେ ଗୁରୁତ୍ୱପୂର୍ଣ୍ଣ । ଇତିହାସରେ ତାହା ବିଭିନ୍ନ ନାମ ଏବଂ ଭୂମିକାରେ ଆବିର୍ଭୂତ ହୋଇଥାଏ ଯଥା—ଆସିରିଆ ଓ ବେବିଲୋନ୍‌ର ଇସ୍ତର (Ishter), ଫିଜିଅର ରାଆ (Rhea), ଫୋନେସିଆର ଆସ୍ତାର୍ତ୍ତେ (Astarte), ମିଶରର ଇସିସ୍ ଓ ଡ଼ିମେଟର । ଏଫିସମ୍‌ର ଡାଏନା, ଆନାଟୋଲିଆର ସିବିଲ ଓ ଭାରତବର୍ଷର ଅଦିତି, ଅଦିତି ଓ ଦେବକୀ କେବେ ସେ କୁମାରୀ ତ କେବେ ପୁଣି ଜନନୀ । କେବେ ମଧ୍ୟ ସେ ଧରଣୀ ମାତା, ପାତାଳର ରାଣୀ, ପ୍ରକୃତି ଦେବୀ, ରତି ପ୍ରତିମା, ଯୁଦ୍ଧର ଦେବତା ଓ ଶିକାରର ଦେବତା ରୂପରେ ପ୍ରକଟିତ ହୋଇଥାଏ । ଏହି ଆଦିଜନନୀ ଆର୍କିଟାଇପ୍ ଗୋଟିଏ ମୂର୍ତ୍ତିରେ ଆତ୍ମପ୍ରକାଶ କରି ବିଭିନ୍ନ ଭୂମିକା ପ୍ରଦର୍ଶନ କରିଥାଏ । କବି ସୀତାକାନ୍ତ ମହାପାତ୍ର ଅତ୍ୟନ୍ତ ଦକ୍ଷତାର ସହିତ ତାଙ୍କର 'ମାଟି ଓ ମଣିଷ' କବିତାରେ ଆଦିଜନନୀ ଆର୍କିଟାଇପ୍ ବ୍ୟବହାର କରିଛନ୍ତି । କବିତାଟିର ଥୀମ୍ ହେଉଛି ମୃତ୍ୟୁ ଓ ପୁନର୍ଜନ୍ମ । ଜୀବନକୁ ମୃତ୍ୟୁ ଓ ମୃତ୍ୟୁର ପରିବେଶରୁ ଉଦ୍ଧାର କରି ସତ୍ୟସୌନ୍ଦର୍ଯ୍ୟ ପଥରେ ଅଗ୍ରସର କରାଇ ଦେବାକୁ କବି ଯେଉଁ କାବ୍ୟ ଚେତନା ପୋଷଣ କରିଛନ୍ତି ତାକୁ ସାର୍ଥକ କରି ଆତ୍ମପ୍ରକାଶ କରିଛି ଆଦିଜନନୀ ଆର୍କିଟାଇପ୍ । ଜୀବନରେ ମୃତ୍ୟୁ ଆବେଗ ମିଥ୍ୟା ନୁହେଁ, ଏପରିକି ନୂତନ ଜୀବନର ସମ୍ଭାବନା ମଧ୍ୟ ଅପ୍ରତ୍ୟାଶିତ ନୁହେଁ । ଦେବକୀ ବସୁଦେବଙ୍କ ସହ କଂସ କାରାଗାରରେ ବନ୍ଦୀ—ଆଦିଜନନୀ ତା'ର ସହଚର ସହ ବର୍ତ୍ତମାନ, ଏଠାରେ କବି ଦେବକୀଙ୍କୁ ଆଦିଜନନୀ ଆର୍କିଟାଇପ୍‌ର ଥୀମ୍ କରାଇ ଏକ ଦୃଷ୍ଟିରୁ ମାଟି ପ୍ରକୃତିର ଦୁଇଟି ବିଭିନ୍ନ ରୂପ ଦର୍ଶାଇବାକୁ ଚାହିଁଛନ୍ତି । ବସୁଦେବ କହୁଛନ୍ତି—"ହେ ପୃଥିବୀ, ହେ ଦେବକୀ, ମଧୁମତୀ / ମଧୁକ୍ଷରା ହେ ଆଦିଜନନୀ / ସମସ୍ତ କଅଁଳା ପିଲା ଆମେ ସବୁ ଡାକମାରୁ / ଆଦିମାତା, ହେ ସିବିଲ, ରାଆ ଓ ଇସ୍ତର / ଅହେ ଶାକମ୍ଭରୀ ଦେବୀ, 'ଲବୋସୁମ୍‌କଣ୍ଢୁର ପ୍ରଥମ କଆଁରୀ ।"

(ମାଟି ଓ ମଣିଷ—ଅଷ୍ଟପଦୀ ପୃ : ୩୦)

ମାଟି ପ୍ରକୃତିର ଦୁଇଟି ବିଭିନ୍ନ ରୂପ ସହିତ ଆଦିଜନନୀ ଆର୍କିଟାଇପ୍‌ର ଦୁଇଟି ବିଭିନ୍ନ ରୂପ ସ୍ପଷ୍ଟ ହେଲା ଯେ ଗୋଟିଏ ପକ୍ଷରେ ତାହା କାନ୍ତକୋମଳ ଓ ଶସ୍ୟଭରା ହେଲେ ଅନ୍ୟ ପକ୍ଷରେ ଅନୁର୍ବର, ରୁଦ୍ର ଓ ରକ୍ତଲୋଲୁପା । ଏଥିପାଇଁ ପ୍ରକୃତିର ଏହି ସାମୟିକ ନିଷ୍ଠୁରତା ମଣିଷକୁ ଭୟ ଓ ଆତଙ୍କରେ ଶିହରିତ କରି ଦେଇଛି । ତେଣୁ ସେ ବିକଳ ହୋଇ ସେହି ଅପଦେବତାମାନଙ୍କୁ ଅଜ୍ଞାତରେ

ହେଲେ ମଧ୍ଯ ସ୍ୱୀକାର କରିଛି । ଏହା ହିଁ ମଣିଷର ବ୍ୟକ୍ତିଗତ ଅବଚେତନର ଦୁର୍ଦ୍ଦାନ୍ତ ରହସ୍ୟ । ତା'ର ମୃତ୍ୟୁ ଅଛି । ଶତ୍ରୁଠାରେ ମଣିଷ ନିଜର ଗ୍ରସ୍ତ ଇଗୋ ଦେଖେ ଓ ତାକୁ ହତ୍ୟାକରେ । ତେଣୁ ମଣିଷର ଇତିହାସ ଯୁଦ୍ଧ ଓ ରକ୍ତପାତର ଇତିହାସ । ତେବେ ମଣିଷର ସାନ୍ତ୍ୱନା ଯେ ଯେଉଁଠି ମୃତ୍ୟୁ ସେଠାରେ ପୁନର୍ଜନ୍ମର ସମ୍ଭାବନା ରହିଛି । ରହସ୍ୟମୟୀ ଆଦିଜନନୀର ଆର୍କିଟାଇପାଲ୍ ଥୀମ୍ 'ମାଟି ଓ ମଣିଷ' କବିତାଟିର ସ୍ଥାପତ୍ୟ ସଙ୍ଗଠନକୁ ଗଭୀର ଜୀବନ ଚେତନାର ସମ୍ଭାବନାରେ ସମୁଜ୍ଜ୍ୱଳ କରିବା ସଙ୍ଗେ ସଙ୍ଗେ କାବ୍ୟୋଚିତ ଶୃଙ୍ଖଳା ଓ ସଂହତିବାନ କରିଛି ।

## (୩) ଅଲୌକିକ ଶିଶୁ—

ଅଲୌକିକ ଶିଶୁ ଆର୍କିଟାଇପ୍ ମୂଳତଃ ଏକ ପ୍ରତୀକ ଯାହାକି ଅପୂର୍ବ ସୃଜନ ସମ୍ଭାବନାର ପ୍ରତିଭୂ । ଜ୍ଞାନୀବୃଦ୍ଧ ଓ ଆଦିଜନନୀ ପରି ବ୍ୟକ୍ତିତ୍ୱ ଯେଉଁ ଆତ୍ମପ୍ରକାଶ କରୁ କିମ୍ବା ପ୍ରତୀକ ରୂପେ ଆବିର୍ଭୂତ ହେଉ, ଏହି ଶିଶୁ ଆର୍କିଟାଇପ୍ ସବୁବେଳେ ଅଦ୍ଭୁତ ଓ ଅଲୌକିକ । ନୂତନ ସମ୍ଭାବନାର ସ୍ୱପ୍ନ ଜଗାଇ ଓ ନୂତନ ଉଦ୍ୟମର ବାର୍ତ୍ତା ପ୍ରଚାର କରି ଏହି ଶିଶୁ ନବଜୀବନର ଆନନ୍ଦ ଖବରେ ଆସନ୍ତି, ଯେମିତି ଆସିଥିଲେ କୃଷ୍ଣ । ତାଙ୍କର ଶୁଭାଗମନରେ ପୁନର୍ଜୀବନର ଶୁଭ ସମ୍ବାଦ ହୁଏ ଓ ମୃତ୍ୟୁଭୟ ଦୂର ହୁଏ ।

## (୪) ବୀରତ୍ରାତା—

ବୀରତ୍ରାତା (The Hero-Saviour) ଆର୍କିଟାଇପ୍ ଅଲୌକିକ ଶିଶୁ ଓ ଆଦିଜନନୀ ସହିତ ନିବିଡ଼ ସୂତ୍ରରେ ବନ୍ଧିତ । ବୀରତ୍ରାତାଙ୍କ ଜନ୍ମ ବଡ଼ ରହସ୍ୟମୟ; ତାଙ୍କ ଜନ୍ମକାଳରେ ଭୂମି ଏବଂ ଆକାଶରେ ସବୁ ଶୁଭଲକ୍ଷଣ ପ୍ରକଟିତ ହୁଏ । ସେ ଶିଶୁ ଅବସ୍ଥାରେ ମଧ୍ଯ ଅଦ୍ଭୁତ କର୍ମ ସମ୍ପାଦନ କରିଥାନ୍ତି । ହରକ୍ୟୁଲେସ୍ ସର୍ପ ସହିତ ଲଢ଼ି ପାରନ୍ତି । କୃଷ୍ଣ ପୂତନା, ବକା, ଶକଟାଦିଙ୍କୁ ନିଧନ କରିପାରନ୍ତି । ଆଦିଜନନୀ ଆର୍କିଟାଇପ୍ ହୋଇଥାଏ ତାଙ୍କ ପତ୍ନୀ କି ଜନନୀ । ଅନେକଙ୍କ ଏହି ବୀରତ୍ରାତା ଜ୍ଞାନୀବୃଦ୍ଧ ଆର୍କିଟାଇପ୍ ସହିତ ଅଭିନ୍ନ ବୋଲି ମନେ ହୋଇଥାଏ । ରାଜା ଆର୍ଥର, ରୁର୍ଲମେନ୍, ରାମଚନ୍ଦ୍ର ଓ କୃଷ୍ଣ ପ୍ରଭୃତି ବ୍ୟକ୍ତିତ୍ୱ ଉଭୟ ବୀରତ୍ରାତା ଓ ଜ୍ଞାନୀବୃଦ୍ଧ ଆର୍କିଟାଇପ୍‌ରେ ଗଠିତ । ଏହି ଥୀମ୍‌ର ଅନ୍ୱେଷଣ ହେଉଛି ଏକ ସାହସିକ କାର୍ଯ୍ୟକ୍ରମ ଓ ମହତ୍ତ୍ୱ ସାଧନା । ଭାଗବତ ଓ ମହାଭାରତର କୃଷ୍ଣ ଏହି ଆର୍କିଟାଇପ୍‌ର ଆଦର୍ଶ ଉଦାହରଣ ।

ସୀତାକାନ୍ତ ମହାପାତ୍ରଙ୍କ 'କୁବୁଜା ପାଇଁ ଗୋଟିଏ ସଙ୍ଗୀତ' କବିତାରେ ଅଲୌକିକ ଶିଶୁ ଓ ଷାରବାତାର ଆର୍କିଟାଇପ୍ ପ୍ରୟୋଗ କରିଛନ୍ତି । ଜୀବନ ଅପେକ୍ଷା କରିଛି ଷାରବାତାଙ୍କ ଶୁଭାଗମନ । ତାଙ୍କର ସ୍ପର୍ଶରେ ଜୀବନ ଓ ଆଶା ପୁନର୍ଜୀବିତ ହେବ । ବିଂଶ ଶତାବ୍ଦୀର ଜୀବନ କ୍ରମଶଃ ସ୍ପଷ୍ଟ ହୋଇ ଉଠୁଛି । କବିତା, ମିଥ୍ ଓ ଜୀବନକୁ ଗୋଟିଏ ସ୍ୱରରେ ଛନ୍ଦଦେଇ କବି ମଣିଷର ଆଶା ଉଜ୍ଜ୍ୱଳ ଭବିଷ୍ୟତ ପ୍ରତି ଦୃଷ୍ଟି ନିକ୍ଷେପ କରିଛନ୍ତି । ସୀମିତ ଅପୂର୍ଣ୍ଣ ରୁଗ୍‌ଣ କୁବ୍‌ଜ ପ୍ରାଣ ଅଚିରେ ଅପୂର୍ବ ରୂପବତୀ ହୋଇ ଝଲସିବ । ସମଗ୍ର କବିତାଟି ଏକ ଭାବମୟ ଜଟିଳ ଚିତ୍ରକଳ୍ପ ସଚେତନ କରି ଦେଉଛି ଯେ ବର୍ଷା ନିଶ୍ଚୟ ଆସିବ । ନବଜନ୍ମ ଆସନ୍ନ । ଅର୍ଦ୍ଧ ପୌରାଣିକ ଏହିସବୁ ଆର୍କିଟାଇପାଲ୍ ଥୀମ୍ ପ୍ରସଙ୍ଗରେ ମିଥ୍ ଓ ଚିତ୍ରକଳ୍ପର ସାମ୍ୟ ବୈଷମ୍ୟକୁ ହୃଦ୍‌ବୋଧ କରିବା ସୁଗମ ହେବ । ଅତୀତକୁ ବର୍ତ୍ତମାନ ସହିତ ଯୁକ୍ତ କରିବାକୁ ପୁରାଣର କୃତିତ୍ୱ ଅନସ୍ୱୀକାର୍ଯ୍ୟ । ପୁରାଣ ଆଖ୍ୟାନ ଉପାଖ୍ୟାନ ମାତ୍ର ନୁହେଁ; ତାହା ଆଜିର କବିତାରେ ହୋଇଛି **thematic shift** ବା ବିଷୟବସ୍ତୁର ଗତିଧାରା ପରିବର୍ତ୍ତନର ସୂତ୍ର ।

## (ଛ) ମୃତ୍ୟୁ ଚେତନା—

ବିଂଶ ଶତାବ୍ଦୀର ଶ୍ରେଷ୍ଠ ଇଂରାଜୀ କବିତା 'The waste land'ର ଥୀମ୍ ଆଧ୍ୟାତ୍ମିକ ମୃତ୍ୟୁ ଓ ପୁନର୍ଜନ୍ମକୁ ନେଇ ରଚିତ ହୋଇ ତାହା ଆଧୁନିକ ଓଡ଼ିଆ କବିତାରେ ମୃତ୍ୟୁ ଚେତନାକୁ ପରିପୁଷ୍ଟ କରିଛି । ସର୍ବପ୍ରଥମେ ଶ୍ରୀ ଗୁରୁପ୍ରସାଦ ମହାନ୍ତି 'କାଳପୁରୁଷ' କବିତାରେ ଉଭୟ ଧ୍ୱଂସୋନ୍ମୁଖୀ ସଭ୍ୟତାର ପୋଡ଼ାଭୂଇଁ ଏବଂ ଆମ ଦେଶର ଆଧୁନିକ ସଭ୍ୟତାକୁ ଗ୍ରହଣ କରିଛନ୍ତି । ଉଭୟିତ୍ର ସେହି ଜୀବୋନ୍ମୃତ (death in life) ଓ ପୁନର୍ଜୀବନ (life in death)ର ଦ୍ୱନ୍ଦ୍ୱ ଓ ବିରୋଧ । ଆଜିର ମଣିଷ ପାଇଁ ଅର୍ଥହୀନ ଜୀବନ ହିଁ ମୃତ୍ୟୁ । ଆଜି ତେଣୁ ମୃତ୍ୟୁଭୟ ଅପେକ୍ଷା ମଣିଷର ଜୀବନଭୟ (life in death) ଅତି ପ୍ରବଳ ହୋଇ ଉଠିଛି । ନିଶ୍ଚେଷ୍ଟ, ଆଶାହୀନ, ଅର୍ଥହୀନ ଉତ୍ସାହ ଉତ୍ତେଜନାହୀନ ଜୀବନ ଯେଉଁଠି ପ୍ରୀତିକର ସେଠାରେ ଜୀବନର ପ୍ରାଣ ଶୃଙ୍ଖଳା କିଛି କମ୍ ଯନ୍ତ୍ରଣା ଦାୟକ ନୁହେଁ । ଖତକୁଡ଼ରେ ରଙ୍ଗଣିଫୁଲ ଫୁଟିବ—ଜୀବନର ଏ ନିର୍ମମ ନିଷ୍ଠୁରତା କି ସହି ହୁଏ ? ବହୁରୂପ ଜୀବନ୍ତ ମରଣ କୋଳରୁ ଜୀବନକୁ ଆର୍ଦ୍ର ଶିହରଣ ଯେଜ ବର୍ଷା ଚଞ୍ଚଳ କରି ଦେଉଥିବାରୁ ଆଜି ତା'ର ବେଦନାର ଅନ୍ତ ନାହିଁ । ଜୀବନର ଶୁଭ୍ର ସ୍ପନ୍ଦନ ମୃତ୍ୟୁର ସବୁ ଶାନ୍ତ ସନ୍ତୋଷରେ ଅଶୋଭନ ଶୃଙ୍ଖଳାକୁ ଯେପରି ସହସା ବିପର୍ଯ୍ୟସ୍ତ କରିଦେବାକୁ ବସିଛି ସେଥିରେ ଜୀବନର

ଅପରାଧ ଦେଖିବା ଛଡ଼ା କାବ୍ୟ ପୁରୁଷର ଗତ୍ୟନ୍ତର କାହିଁ ? କାଳପୁରୁଷ ମୃତ୍ୟୁର ଉଷ୍ମ ସ୍ପର୍ଶ ଅତିକ୍ରମ କରି ଯେଉଁ ଅମୃତ ଆକାଙ୍‌କ୍ଷା ପୋଷଣ କରିଛନ୍ତି ତାକୁ ମୃତ୍ୟୁ ମାୟା ବାରମ୍ବାର ବିଡ଼ମ୍ବିତ କରୁଛି । କାଳପୁରୁଷ ମୃତ୍ୟୁ ଦୂତ, କାଳର ମୂର୍ତ୍ତିମନ୍ତ ବିଗ୍ରହ ମଧ୍ୟ । କାଳପୁରୁଷ ହାତରୁ ଜୀବନକୁ ଉଦ୍ଧାର କରି ସତ୍ୟର ଅମୃତାଲୋକକୁ ଉତ୍ତୀର୍ଣ୍ଣ କରିଦେବାକୁ କବିତାର ଆମୂଳାନ୍ତ ଅସୀମ ଏକ ବ୍ୟାକୁଳତା ଖୋଜୁଛି ।

## ରମାକାନ୍ତ ରଥ—

ଅନ୍ୟତମ ସାର୍ଥକ କବି ରମାକାନ୍ତ ରଥଙ୍କ କବିତାରେ କାବ୍ୟ ଭାବନା ମୁଖ୍ୟତଃ ସମୟ, ମୃତ୍ୟୁ ଓ ଦେହାନ୍ତର ଚେତନାକୁ ନେଇ ଗତିଶୀଳ । ସବୁଠାରେ କାବ୍ୟ ନାୟକ କେବଳ ମୃତ୍ୟୁ ଓ ମୃତ୍ୟୁର ହିମଶୀତଳ ସ୍ପର୍ଶ ହିଁ ଅନୁଭବ କରୁଛି ।—"ତମର ଚୌଦିଗେ ମୃତ୍ୟୁ / ଏବଂ ତା'ର ଅଣ୍ଡା ଅଣ୍ଡା ହାତ / ଚିପିବାକୁ ଆସେ ତମ ବେକ ।" (୧୮) (ଅନନ୍ତଶୟନ)

'ଅନେକ କୋଠରି' କାବ୍ୟ ଚୟନରେ ଦେହ ଓ ଏହାକୁ କେନ୍ଦ୍ରକରି ଯେତେ ପ୍ରେମ, ପ୍ରଣୟ, ବ୍ୟର୍ଥତା, ଅବସାଦ, ଆସକ୍ତି, ଅନାସକ୍ତି ଶୂନ୍ୟତା ଓ ନୈରାଶ୍ୟବୋଧ କାବ୍ୟ ନାୟକକୁ ଆଚ୍ଛନ୍ନ କରିଥିବାବେଳେ 'ଅନେକ କୋଠରି'ରେ ମୃତ୍ୟୁ ଓ ଦେହାନ୍ତରକୁ ଯଥା ଶ୍ରୀ ରଥଙ୍କ କାବ୍ୟ ଭାବନାରେ ଏକ ଉଚ୍ଚସ୍ତରରେ ସ୍ପଷ୍ଟ ପ୍ରତିଶ୍ରୁତି ରଖେ ।

## ସୀତାକାନ୍ତ ମହାପାତ୍ର—

ସୀତାକାନ୍ତ ମହାପାତ୍ର 'ଅଷ୍ଟପଦୀ'ରେ ଏହି ଉଦ୍ଭଟ ମୃତ୍ୟୁ ସଚେତନତା ବିଶେଷ ସ୍ଥାନ ଲାଭ କରିଛି । 'ଅଷ୍ଟପଦୀ'ର ପ୍ରଥମ କବିତା 'ମୃତ୍ୟୁନାଚ'ରେ ନରକର ଚିତ୍ର ସ୍ପଷ୍ଟ ହୋଇ ଉଠିଛି । ଏହି ନରକର ବିପୁଳ ଭୟଙ୍କର ଅଗ୍ନିରେ ମାନବ ଓ ମାନବର ସଂସାର ଦଗ୍ଧ ଓ ଭସ୍ମୀଭୂତ । ବୋଧହୁଏ କେବଳ ପରମ୍ପରାଗତ ଦାନ ଦ୍ୱାରା ଏହି ରୌରବରୁ ଉଦ୍ଧାର ଉପାୟ ଥାଇପାରେ ।—"ହେ ବ୍ରାହ୍ମଣ ଏଇ ନିଅ, ଦାନ ନିଅ / ନିଅ ନିଅ ଆମ ଦଶଦାନ / ଆଗେ ଜଳେ ଲେଲିହାନ ଅଗ୍ନିଶିଖା / ତପ୍ତ ବୈତରଣୀ / ମୁକ୍ତମାଗେ, ଶକ୍ତିମାଗେ, ଭ୍ରୁଷ୍ଟାମାଗେ, ସ୍ୱପ୍ନମାଗେ / ଅଭିଶପ୍ତ ସବୁ ଯଦୁ, ଅଭିଶପ୍ତ ମାନୀ ଦୁର୍ଯ୍ୟୋଧନ ।" (୧୯) କିନ୍ତୁ ଏପରି ଆଶା କରିବା ହିଁ ବୃଥା । ନିଷ୍କରୁଣ ଅଗ୍ନିର ମୃତ୍ୟୁନାଚରୁ ଅଭିଶପ୍ତ ମାନବ

ଆତ୍ମାର ଉଦ୍ଧାର ନାହିଁ । ଏହି ମହାକାଳର ଅଗ୍ନି ଓ ଏହି ଅଗ୍ନିରେ ସମସ୍ତେ ଦଗ୍ଧ ।

## (ଜ) ଆଧୁନିକ ଓଡ଼ିଆ କବିତାରେ ଆଧ୍ୟାତ୍ମିକ ଉତ୍ତରଣ ଏବଂ ଆତ୍ମମଗ୍ନତା ଏକ ବିରୋଧାଭାସ—

ସାଂପ୍ରତିକ ଓଡ଼ିଆ କବିତାର ଏକ ବିଶେଷ ଦିଗ ହେଲା ମୃତ୍ୟୁ ସଚେତନ ମଣିଷର ଅସୀମ ସ୍ରଷ୍ଟାଙ୍କୁ ଲାଭ କରିବାର ଆଧ୍ୟାତ୍ମିକ ଜିଜ୍ଞାସା ହିଁ ଏକ ସ୍ୱାତନ୍ତ୍ର୍ୟ ସୃଷ୍ଟି କରିଛି । କେଉଁ ଆବହମାନ କାଳରୁ ମଣିଷର ଅମୃତ ଝୁହାକୁ କେହି ପ୍ରତିରୋଧ କରିପାରି ନାହାନ୍ତି । ମଣିଷ ଏହି ବ୍ୟାକୁଳତାକୁ କବି ଗୁରୁପ୍ରସାଦ ମହାନ୍ତି ଅକ୍ରୂର ଓ ଉଦ୍ଧବଙ୍କ ମିଥ୍ ପ୍ରୟୋଗରେ ତଥା 'ଜହ୍ନ, ଝରଣା ଓ ଅରୁନ୍ଧତୀ ତାରା'ର ଚିତ୍ରକଳ୍ପ ସଂଯୋଜନାରେ ଯଥାର୍ଥ ବିଷୟାଶ୍ରୟୀ କରି ପାରିଛନ୍ତି ।

—"ହେ ଅକ୍ରୂର ! ହେ ଉଦ୍ଧବ ସଖା ମୋର ପ୍ରାଣର ଦୋସର ! / ବୁହ ବୁହ ଛଡ଼ାରୁହ ପିଠିରେ ମୋ ତୁମପରି ବୋଝ / ମୁଁ ଯିବି ତୁମରି ପରି ତାରା ଖୋଜି, ଜହ୍ନ ଖୋଜି / ଖୋଜି ଖୋଜି ଝରଣାର ସୁଅ / ମୁଁ ଯିବି ତୁମରି ପରି ଖୋଜି ମୋର / ପିତା ମାତା ନିର୍ମୂଳ ନକ୍ଷତ୍ରେ ଖୋଜି / ଅରୁନ୍ଧତୀ ତାହାର ଆଲୁଅ ।" (୨୦) ଅକ୍ରୂର ଓ ଉଦ୍ଧବ ଦୁହେଁ କୃଷ୍ଣଭକ୍ତ ଓ ଦୂତ । ଜଣେ କୃଷ୍ଣଙ୍କୁ ଆଣି କଂସ ମରାଇଛି, ଆଉ ଜଣେ କୃଷ୍ଣଙ୍କ ସମ୍ବାଦ ନେଇ ଗୋପକୁ ଯାଇଛି ଓ କୃଷ୍ଣଙ୍କ ପରେ ଈଶ୍ୱରବାର୍ତ୍ତା ପ୍ରଚାର କରିବାକୁ ବଞ୍ଚି ରହିଛି । ମଣିଷର ଦାୟିତ୍ୱ ହେଉଛି ଜୀବନ ହାତରେ ମୃତ୍ୟୁକୁ ମରାଇବ ଓ ଜୀବନର ସମ୍ବାଦ ସର୍ବତ୍ର ପ୍ରଚାର କରିବ । ମାନବାତ୍ମା ବିକଳ ହୋଇ ବାରମ୍ବାର ଅକ୍ରୂର ଓ ଉଦ୍ଧବଙ୍କ ସ୍ମୃତି ଉଦ୍‌ବୋଧନ କରିଛି ଏବଂ ତାଙ୍କଠାରୁ ପ୍ରେରଣା ଓ ଉତ୍ସାହ ଖୋଜିଛି ତାଙ୍କରି ପରି ତାଙ୍କରି ପିଠିରେ ତା'ର ବୋଝ—ଧ୍ୱଂସ ହେଉ ଅଶ୍ରୁଭରା ଓ ଧୂସରର । ସେ ଯିବ ତାଙ୍କରି ପରି ତାରା ଖୋଜି, ଜହ୍ନ ଖୋଜି, ଖୋଜି ଖୋଜି ଝରଣାର ସୁଅ । ଜହ୍ନରେ ଜୀବନର ଶାନ୍ତ ଆହ୍ଲାଦତା ଓ ଝରଣାର ଗତି ସ୍ରୋତରେ ଜୀବନର ସନ୍ତାପହାରୀ ସ୍ୱଚ୍ଛ ପ୍ରବାହ ମାନବାତ୍ମା ଖୋଜୁଛି ନିର୍ମୂଳ ଲକ୍ଷ୍ୟର ମୂଳ । ଆଧ୍ୟାତ୍ମିକ ଜୀବନଧାରାରୁ ବିଚ୍ଛିନ୍ନ ହୋଇ ପଡ଼ିଛି ଛିନ୍ନମୂଳ ମଣିଷ । ନିଜର ଆଇଡେଣ୍ଟିଟି ସେ ହରାଇଛି—ବିକଳ ହୋଇ ତେଣୁ ସେ ପିତୃ ମାତୃ ପରିଚୟ

ଖୋଜୁଛି । ଅରୁନ୍ଧତୀ ତାରା ଖୋଜା ଓ ଅରୁନ୍ଧତୀ ମିଥ୍ ପ୍ରୟୋଗ ଏଠାରେ ଜୀବନ ପ୍ରତି ମଣିଷର ଅସୀମ ମମତ୍ୱବୋଧ ସୂଚଉଛି । ଏପରିକି ଅରୁନ୍ଧତୀଙ୍କ ନାମୋଲ୍ଲେଖ କବିତାକୁ ମଧ୍ୟ ଉଚିତ୍ତା ଯୋଗାଇଛି । ଅରୁନ୍ଧତୀ ବଶିଷ୍ଠ ଋଷିଙ୍କ ପତ୍ନୀ, ସର୍ବଶ୍ରେଷ୍ଠ ସତୀ ନାରୀ । ଉତ୍ତରାକାଶର ସପ୍ତର୍ଷି ମଣ୍ଡଳ ଲଞ୍ଜରେ ଥିବା ଷଷ୍ଠ ତାରା (ବଶିଷ୍ଠ) ପାଖରେ ଓ ସେ ଏବେ କ୍ଷୁଦ୍ର ତାରାଟିଏ ହୋଇ ରହିଛନ୍ତି । ସୁଶ୍ରୁତରେ ଲେଖାଅଛି ଯାହାର ମୃତ୍ୟୁ ଆସନ୍ନ ତାକୁ ଏହି ତାରା ଦିଶେନାହିଁ । ମାନବାତ୍ମା ଆଜି ତାକୁ ହିଁ ଖୋଜୁଛି । ଆମ ଦେଶରେ ବିବାହବେଳେ ବର-କନ୍ୟାଙ୍କୁ ଏହି ତାରା ଦେଖାଇବାର ବିଧି ଅଛି । ଆଜି ଆମର ଜୀବନରେ ପ୍ରେମ ନାହିଁ କି ନିଷ୍ଠା ନାହିଁ । ତେଣୁ ଏହି ବିଧ୍ୱସ୍ତ ମାନବାତ୍ମା ଅନ୍ତତଃ ମୃତ୍ୟୁଭୟ କାଟି ଜୀବନକୁ ଭେଟିବ ଏବଂ ପ୍ରେମରେ ଧ୍ରୁବନିଷ୍ଠା ଦେଖିବ ବୋଲି କବି ଚରମ ବିଶ୍ୱାସ ପୋଷଣ କରିଛନ୍ତି ।

ଉତ୍ତର ପର୍ଯ୍ୟାୟର ଆଧୁନିକ ଓଡ଼ିଆ କବିତାରେ ବିଷାଦବାଦୀ ଦୃଷ୍ଟିଭଙ୍ଗୀ ସହିତ କାବ୍ୟ ମାନସର ଆତ୍ମମଗ୍ନତା ସ୍ପଷ୍ଟ ଭାବରେ ଆତ୍ମପ୍ରକାଶ କରିଛି । ଯେପରିକି ଶ୍ରୀ ରମାକାନ୍ତ ରଥ ତାଙ୍କ ଅନୁଭୂତିସିକ୍ତ ହୃଦୟରୁ ସମସ୍ତ ରୋମାଣ୍ଟିକ କଳ୍ପନା ପ୍ରବଣତା ଓ ସ୍ୱପ୍ନକୁ ହଟେଇ ଦେଇ ଆତ୍ମାର ମଗ୍ନ କାରୁଣ୍ୟକୁ ଭୁଲିପାରି ନାହାନ୍ତି । ଅର୍ଥାତ୍ ସେ ଆଉ ସ୍ୱପ୍ନରେ ବିଶ୍ୱାସ କରନ୍ତି ନାହିଁ ବରଂ ପରିଣତି ପ୍ରତି ଅଧିକ ସଚେତନ ହୋଇଛନ୍ତି—"ପରିଶେଷେ ଦେଖିବାକୁ ସେ ଆଶାର ନିର୍ଦ୍ଦୟ ମରଣ / ହୁଏତ ସେଥିପାଇଁ ମୁଁ କରୁନି ଆକାଶରୁ କୁସୁମ ଚୟନ ।" (୨୧)

ଏଇ ଏକାନ୍ତ ଆତ୍ମମଗ୍ନ ହତାଶା ଓ ଆତ୍ମସମୀକ୍ଷା ତାଙ୍କର 'ଚନ୍ଦ୍ରମାର ଚୂଡ଼ି' ଓ 'ନବଗୁଞ୍ଜର' କବିତାରେ ତୀବ୍ରତର ହୋଇଛି । ଏଠାରେ ବ୍ୟକ୍ତିଗତ ପ୍ରେମ ନୈରାଶ୍ୟ ଓ ବ୍ୟାକୁଳତାରୁ ମୁକ୍ତ ଏକ ନୂତନ ପୃଷ୍ଠଭୂମି ସୃଷ୍ଟି କରେ । ଏ ଦୁଇଟି କବିତା ସମାଜର ଯେଉଁ ଦୁଇ ନାରୀଙ୍କ ପ୍ରତିନିଧିତ୍ୱ କରେ ସେମାନଙ୍କ ମଧ୍ୟରେ ଯୁଦ୍ଧ ପରବର୍ତ୍ତୀ ସମୟ ଓ ସମାଜର ଏକାନ୍ତ ବିପର୍ଯ୍ୟସ୍ତ କାରୁଣ୍ଣ ରୂପଟିକୁ ଦେଖିହୁଏ । ଏ ଦୁଇଟିଯାକ କବିତା ବିୟୋଗାନ୍ତ ନାଟକର ଦୁଇଟି ଶେଷ ଦୃଶ୍ୟ । ବାସ୍ତବରେ ଏ ଦୁଇଟି କାହାଣୀ ହିଁ ଶ୍ରୀ ରମାକାନ୍ତ ରଥଙ୍କ କାବ୍ୟ ମାନସରେ ମାର୍ମିକ ଆଲୋଡ଼ନ ସୃଷ୍ଟି କରିବାରେ ସମର୍ଥ ହୋଇଥିଲା ।

## (ଙ) ଶବ୍ଦ ଓ ଶୈଳୀ—

ଏହି ସମସ୍ତ କାବ୍ୟଧର୍ମ ବ୍ୟତୀତ କବିତାର ବୈଶିଷ୍ଟ୍ୟ ତାହାର ଶକ୍ତିଶାଳୀ କାବ୍ୟଶୈଳୀ ଦ୍ୱାରା ପ୍ରକାଶିତ ହୋଇଥାଏ । ଯେ କୌଣସି ଯୁଗରେ ଉତ୍କୃଷ୍ଟ

କବିତାର ଗୁଣ ସ୍ବରୂପରେ ଶବ୍ଦ ନିର୍ବାଚନରେ ଅନୁରୂପ ଓ ଆନୁପାତିକ ଭାଷା ପ୍ରୟୋଗ ଏବଂ ସଂଯମ ଏହାକୁ ଉତ୍କର୍ଷ ପ୍ରଦାନ କରିଥାଏ । ଓଡ଼ିଆ କବିତାର ଏହି ଉତ୍ତରଣ କାଳରେ କେତେକ କବି ଓଡ଼ିଆ ଗ୍ରାମ୍ୟ ଶବ୍ଦାବଳୀର ଶକ୍ତିଶାଳୀତାରେ ଗଭୀର ପ୍ରତ୍ୟୟ ସ୍ଥାପନ କରି କବିତାକୁ ନୂତନ ଆଙ୍ଗିକ ବୃଦ୍ଧି ଦେଇ ପାରିଛନ୍ତି । ଏହି ଦିଗରେ କବି ସୀତାକାନ୍ତ ମହାପାତ୍ର ଅଗ୍ରଗଣ୍ୟ ଶିଳ୍ପୀ । ତାଙ୍କ କବିତାରେ ଆମ ପ୍ରାଚୀନ ସାହିତ୍ୟର ତଥା ଗାଁ ଗହଳର ଅନେକ ପ୍ରଚଳିତ ଶବ୍ଦ ଆମ ଗାଁ, ନଈ, ପୋଖରୀ, ବଲବାଡି, ଗଛବୃଛ, କେଜେମା', କେଜେବାପା ତ୍ରୁଟିତ ସଂଲଗ୍ନ ହୋଇ ଯାଇଛନ୍ତି । ଉପନ୍ୟାସରେ ଗ୍ରାମ୍ୟ ଭାଷା ପ୍ରୟୋଗରେ ଫକୀର ମୋହନ ଓ ଗୋପୀନାଥ ଯେଉଁ ସାଫଲ୍ୟର ଅଧିକାରୀ, ସୀତାକାନ୍ତ ମହାପାତ୍ର ସେମାନଙ୍କର ଉତ୍ତରାଧିକାରୀ କହିଲେ ଅତ୍ୟୁକ୍ତି ହେବନାହିଁ । ଅନ୍ୟାନ୍ୟ ନୂତନ କବିମାନେ କାବ୍ୟ ଶୈଳୀରେ ଯେଉଁ ବୈଶିଷ୍ଟ୍ୟ ପ୍ରଦର୍ଶନ କରିଛନ୍ତି ଓ ସାଙ୍ଗଠନିକ ସ୍ୱଚ୍ଛତା ପ୍ରକାଶ କରିଛନ୍ତି ତାହା ନିମ୍ନଲିଖିତ ଉଦାହରଣରୁ ସ୍ପଷ୍ଟ ହେବ ।

—"ଆଜି ହିଁ ପ୍ରଥମଥର ସକାଳ ଆସିଲା / ମୋ ହାଲିଆ ଜଗତରେ / ଜଙ୍ଗଲ, ପାହାଡ଼ ଦୂର ଦିଗନ୍ତର ସୀମାରେଖା ଆଜି ହିଁ ସ୍ପଷ୍ଟ ଦିଶିଲା / ଆଜି ହିଁ ନିର୍ଦ୍ଦିଷ୍ଟ କରି ମନେ ପଡ଼ିଗଲା / ମୁଁ କାହିଁକି ଏକା ଏକା ଏତେକାଳ ରହିଥିଲି / ଏଡ଼େ ଉଚ୍ଚ ନିଛାଟିଆ ପାହାଡ଼ ଉପରେ ।" (୨୨) (ମମତା ଦାଶ)

କିମ୍ବା—"ରେ ନଈ ତୋ ରୁଠ ପଥରରେ ଗୋଡ଼ / ମୋର ବାଜିଗଲେ / ଅପୂର୍ବ ଅହଲ୍ୟାଟିଏ ହୋଇ ତୁ ବଳସି ଉଠୁ / ତୋ କୂଳର ସଳିତ ପତ୍ରଙ୍କୁ ସ୍ପର୍ଶିଦେଲେ / ତୁ ଚତୋଇ ଉଠି ଯୁଲେଇ ଯାଉ ।" (୨୩)

(ନଈ ତୁ'—ହୃଷିକେଶ ମଲ୍ଲିକ)

କିମ୍ବା—"ଆପଣା ଶେଯରେ ସଜ ହେଲା ଯେତେବେଳେ / ବାପାଙ୍କ ଅକାଳ କୋକେଇ / ମୁଁ ହେଲି ସେଦିନ ବୟସ୍କ ଓ ବିବାହଯୋଗ୍ୟ / (ସଭ୍ୟଜନେ) ମୋତେ ମାତ୍ର ଦଶବର୍ଷ ।" (୨୪) (ଗାର୍ହସ୍ଥ୍ୟ ଉତ୍ତରାଧିକାର—ଶତ୍ରୁଘ୍ନ ପାଣ୍ଡବ)

ବା—"ତୁ କେଉଁଠି / ମୁଁ କେଉଁଠି / କେଉଁ ଦୂର ରାଇଜର ଅପହଞ୍ଚ ସ୍ୱପ୍ନ ତୁ / କେଉଁ ଅସଫଳ ନାଟକର ଟ୍ରାଜିକ ନାୟକ / ମୁଁ କେମିତି ବା କହିଥାନ୍ତି ମନକଥା ? ଅପରଗାଁର ଝରୁଖା ନଈ ପରି ତୋ' ମନ ।" (୨୫)

(ଖାସ୍ ତୋରି ପାଇଁ) (ନିରଞ୍ଜନ ବେହୁରିଆ)

ଏହିସବୁ ପଂକ୍ତିଗୁଡ଼ିକ ବିଭିନ୍ନ ଆଧୁନିକ କବିତାର ପଢ଼ି ସାରିଲା ପରେ ମନେହୁଏ ଯେ ଏହି ନୂତନ କବିମାନଙ୍କ କାବ୍ୟଭାଷା ଓ ଶୈଳୀରେ ସ୍ୱକୀୟତା ଏବଂ ଅଭିନବତ୍ୱ ବଜାୟ ରହିଛି । ଏପରିକି କବିତାରେ ଅନୁଭୂତି ପ୍ରତି ଗଭୀର ଆନ୍ତରିକତା ମଧ୍ୟ ପ୍ରକାଶ ପାଉଛି । ତେଣୁ ଆଜିର କବିତା ଜୀବନଠାରୁ ଦୂରେଇ ନ ଯାଇ ଜୀବନର ସଙ୍ଗୀତ ଗାନ କରୁଛି । (୨୭) ପରବର୍ତ୍ତୀ ପରିଚ୍ଛେଦରେ ମିଥ୍ ଯେ କିପରି ସାଂପ୍ରତିକ ଜୀବନ ଚର୍ଯ୍ୟାକୁ ଗଭୀର ଭାବରେ ନିର୍ଯ୍ୟାସିତ କରୁଛି ତାହା ହିଁ ଆଜିର ସମାଲୋଚକର ଚର୍ଚ୍ଚାର ବିଷୟ ହୋଇଛି ।



# ମିଥ ଏକ ଅନୁଶୀଳନ

## (କ) ମିଥ୍‌ର ସଂଜ୍ଞା—

ମିଥ୍ ପାଇଁ ଗୋଟିଏ ପରିଚ୍ଛନ୍ନ, ଅଭ୍ରାନ୍ତ ଓ ସର୍ବଥା ଗ୍ରହଣୀୟ ସଂଜ୍ଞା ସ୍ଥିର କରିବା ଏକ ଆୟାସସାଧ୍ୟ ବ୍ୟାପାର । ଏହି କ୍ଷେତ୍ରରେ ପ୍ରଥମେ ଅନେକ ଗୁଡ଼ିଏ ସିଦ୍ଧାନ୍ତର ବିଗ୍ଭର କରିବା ନିହାତି ଆବଶ୍ୟକ । 'ମିଥ୍ ମୂଳତଃ ଏକ ଗ୍ରୀକ୍ ଅବଧାରଣା' (Robert Graves and Raphel Patai 1963. P. 3) (୨୭)

ଏହା ପ୍ରାଚୀନ ଗ୍ରୀକ୍ ଶବ୍ଦ ମିଥ୍‌ସ (Mythos)ର ଅପଭ୍ରଂଶ, ମିଥ୍ କେବଳ ପୁରାଣ ପରମ୍ପରାର ବାହକ ଅଥବା ପରିପୋଷକ ନୁହେଁ, ନୃତତ୍ତ୍ୱ ଓ ଲୋକ ପରମ୍ପରା ଠାରୁ ଆରମ୍ଭ କରି ଧର୍ମୀୟ କର୍ମାନୁଷ୍ଠାନ (Rituals) ସମେତ ମନସ୍ତାତ୍ତ୍ୱିକ ଚେତନା ପର୍ଯ୍ୟନ୍ତ ସଭ୍ୟତା ଓ ସଂସ୍କୃତିର ବହୁପାର୍ଶ୍ୱିକ (multi-dimension) ବିଭବ ସହିତ ସମ୍ପୃକ୍ତ ତଥା ମାନବ ସଭ୍ୟତା ଓ ସଂସ୍କୃତିର ବିକାଶ ଓ ବିବର୍ତ୍ତନ ସହିତ ଅନ୍ୱିତ ।

ବସ୍ତୁତଃ "ପ୍ରତ୍ୟେକ ସମାଜ ମିଥ୍ ଉପରେ ନିର୍ଭରଶୀଳ । ଏକ ନିର୍ଦ୍ଦିଷ୍ଟ ସମାଜର ସୁନିର୍ଦ୍ଦିଷ୍ଟ ଦୃଷ୍ଟିକୋଣକୁ ପ୍ରତିପାଦିତ କରିବାହେଲେ ତା'ର ମୌଳିକ ମିଥ୍ ଓ ସାଂପ୍ରତିକ କାଳ ଉପରେ ତା'ର ପ୍ରତିଫଳନକୁ ଲକ୍ଷ୍ୟ କରିବାକୁ ପଡ଼େ ।"

ମିଥ୍‌ର ସର୍ବପ୍ରାଚୀନ ଅର୍ଥ ଥିଲା ମଣିଷର ମୁଖୋଚ୍ଚାରିତ ଭାଷା । ଏହା ଏକ ଶବ୍ଦ, ଏକ ବକ୍ତବ୍ୟ ଅଥବା ଏକ କାହାଣୀ ହୋଇପାରେ । ମିଥ୍‌ସ ବା ମିଥ୍‌ର ଏହି ମୌଳିକ ଓ ପ୍ରାଚୀନତମ ଅର୍ଥ ପ୍ରକରଣ କ୍ଷେତ୍ରରେ କାଳକ୍ରମେ ପରିବର୍ତ୍ତନ ଘଟିଲା, ଅର୍ଥ କେତେକ ପରିମାଣରେ ହେଲା ସଙ୍କୁଚିତ । କ୍ରମଶଃ

ଏକ ବଶେଷ ଧରଣର କାହାଣୀକୁ ମିଥ୍ (ମିଥ୍ସ) କୁହାଗଲା । ଆଟିକ୍— ଗ୍ରୀକ୍ ଭାଷାର ପ୍ରାଗୈତିହାସିକ କାହାଣୀ ଓ କମ୍ବଦନ୍ତୀ ଅର୍ଥରେ ମିଥ୍ସ ବ୍ୟବହୃତ ହୋଇଥିବା ଜଣାଯାଏ ।

Encyclopaedia of Poetry & Poetics ମତରେ "ମିଥ୍କୁ ଏକ କାହାଣୀ ବା ଜଟିଳ କାହାଣୀ ଗୁଚ୍ଛର ମୌଳିକ ଉପାଦାନ ରୂପେ ସଙ୍କଳିତ କରାଯାଇପାରେ । ନିଃସନ୍ଦିଗ୍ଧ ଭାବରେ ମାନବ ମାନବୋତ୍ତର ତଥା ମାନବେତର ଜୀବନର ଗଭୀରତମ ସତ୍ତାକୁ ଏହା ପ୍ରତୀକାତ୍ମକ ଭାବକୁ ପ୍ରକାଶ କରେ । ଗ୍ରୀକ୍ ମିଥ୍ରେ ୟୁଲିସିସ୍ ଆଦି ବହୁ ମାନବ ତଥା ଏଥେନା, ଫ୍ଲୋରା ଆଦି ମାନବୋତ୍ତର ଦେବଦେବୀଙ୍କ ସ୍ୱାକ୍ଷର ଅଧିକ ଯଦିଓ ସେମାନେ ମାନବୀୟ ଭାବାବେଗ, ଦୋଷ ଦୁର୍ବଳତା ତଥା ସମ୍ବେଦନା ସହ ସମ୍ପୃକ୍ତ । (୨୮)

ଇ : ଡବଲ୍ୟୁ କାଉଣ୍ଟଙ୍କ ଭାଷାରେ—"ମିଥ୍ ସାହିତ୍ୟ ଚେତନାର ଏକ ସ୍ୱତନ୍ତ୍ର ଆଙ୍ଗିକ, ଯାହା ଦେବତା ଓ ଉପଦେବତା ସମ୍ପର୍କିତ ।" (୨୯)

ନରଥ୍ରୋପ୍ ଫ୍ରାଏ କହନ୍ତି—"ମିଥ୍ ଏକ କାହାଣୀ, ଯେଉଁଥିରେ କେତେକ ମୁଖ୍ୟ ଚରିତ ହେଉଛି ଦେବତା ।" (୩୦)

"ମିଥ୍ ବସ୍ତୁତଃ ଏକ ସାର୍ବଜନୀନ ସାଂସ୍କୃତିକ ପରିପ୍ରକାଶ, ଯାହା ଏକାଧିକ (Plural) ଅଭିପ୍ରାୟ (motive) ରୁ ଉଦ୍ଭୂତ ଓ ସମସ୍ତ ମାନସିକ ବିଭବ ସହ ସମ୍ପୃକ୍ତ ।"

"ମିଥ୍କୁ ଏକ ଜଟିଳ କାହାଣୀ ଗୁଚ୍ଛ (Complex of Stories) ରୂପେ ସଂଜ୍ଞାୟିତ କରାଯାଇପାରେ । ତନ୍ମଧ୍ୟରୁ କେତେକ ସତ୍ୟ (facts) ଓ କେତେକ କାଳ୍ପନିକତା (fantacy) ଉପରେ ଆଧାରିତ । ମାନବ ସଭ୍ୟତା ଏହାକୁ ମାନବ ଜୀବନ ଓ ବିଶ୍ୱର ଅନ୍ତର୍ନିହିତ ଅର୍ଥବୋଧର ପଥ ପ୍ରଦର୍ଶକ ରୂପେ ସମ୍ମାନ ପ୍ରଦର୍ଶନ କରେ ।" (୩୧)

ସମାଲୋଚକ ରିଚାର୍ଡ୍ ଚେଜ୍ ମଧ୍ୟ, "ମିଥ୍କୁ ମାନବୀୟ କଳ୍ପନାର ଏକ ସୌନ୍ଦର୍ଯ୍ୟସ୍ନାତ ଅଭିବ୍ୟକ୍ତି ରୂପେ ସ୍ୱୀକୃତି ଦେଇଛନ୍ତି ।" (୩୨)

କାଣ୍ଟଙ୍କ ମତରେ ପ୍ରଜ୍ଞାର ପ୍ରାଥମିକ ଆହରଣ ମିଥ୍ ଉପରେ ପର୍ଯ୍ୟବେସିତ, ସୁତରାଂ ମିଥ୍ ମାଧ୍ୟମରେ ମାନବର ପ୍ରାଥମିକ ଇତିହାସ ସଞ୍ଚିତ ହୋଇଥାଏ । "ସ୍ୱକୀୟ ଗଢ଼ଣ, କାର୍ଯ୍ୟ ଓ ଅଭିବ୍ୟକ୍ତି ସମ୍ପନ୍ନ ଏହି ମିଥ୍ ମାନବ

ଚେତନାର ଏକ ସ୍ୱୟଂସ୍ପୃତ ଆଙ୍ଗିକ ସନ୍ଧିରେ ଚିନ୍ତା, ଆବେଗ ଓ ଅନୁଭବର ଏକୀକରଣ ଘଟିଥାଏ ।" ମନସ୍ତତ୍ତ୍ୱ ଲୋକକଥା, ଧର୍ମ ନିସ୍ବ କର୍ମକାଣ୍ଡ ଓ କର୍ମାନୁଷ୍ଠାନ ଅଥବା ନୃତତ୍ତ୍ୱରୁ ଉପାଦାନ ଆହରଣ କରି ଏହା ସ୍ୱୟଂସମ୍ପୂର୍ଣ୍ଣ ସ୍ୱତନ୍ତ୍ର ରୂପ ଧାରଣ କରେ, ଯେଉଁଥିରେ ମାନବୀୟ ଚିନ୍ତା ଚେତନାର ସାମଗ୍ରିକ ପରିପ୍ରକାଶ ଘଟେ ।

## (ଖ) ମିଥ୍ ଓ କିମ୍ବଦନ୍ତୀ—

କେତେକ ମିଥ୍ ସହିତ ଐତିହାସିକ ଘଟଣା ଓ ବାସ୍ତବ ନରନାରୀଙ୍କ ସଂଯୋଗ ପରିଦୃଷ୍ଟ ହେବା ବିଚିତ୍ର ନୁହେଁ, କିନ୍ତୁ ମିଥ୍ ଯେ ଇତିହାସାତ୍ମକ ନୁହେଁ ଏହା ସ୍ୱୀକାର୍ଯ୍ୟ । ଐତିହାସିକ ବିବରଣୀ ପ୍ରଦାନ ମିଥ୍‌ର ଅଭିପ୍ରାୟ ନୁହେଁ ଏବଂ ଲୋକେ ବି ମିଥ୍‌କୁ ବାସ୍ତବ ନରନାରୀଙ୍କ ଇତିହାସ ରୂପେ ଗ୍ରହଣ କରି ନ ଥାନ୍ତି । ଉଦାହରଣ ସ୍ୱରୂପ ଗୌତମ ବୁଦ୍ଧଙ୍କ ଜନ୍ମ ସମ୍ପର୍କରେ ପ୍ରଚଳିତ କିମ୍ବ ମିଥ୍‌ଟିର ବିଚାର କରାଯାଇ-ପାରେ । କଥିତ ଅଛି—"ମାୟା ଦେବୀଙ୍କ ଗର୍ଭରୁ ଗୌତମ ବୁଦ୍ଧ ଜନ୍ମ ହେବା କ୍ଷଣି ନିର୍ମେଘ ଆକାଶରୁ ପଦ୍ମଫୁଲ ବର୍ଷିଲା ଏବଂ ଭୂମିଷ୍ଠ ହେବା ମାତ୍ରେ ଗୌତମ ସାଧାରଣ ନବଜାତ ସଦୃଶ ଶୋଇ ନ ରହି ଭୂମିରେ ସାତପାଦ ଚାଲିଥିଲେ । ଭୂମିରେ ତାଙ୍କ ପାଦ ଯେଉଁଠି ପଡ଼ିଥିଲା ସେଠାରେ ପଦ୍ମଫୁଲ ଫୁଟି ଉଠିଲା ।" (Genealogy of Morals—III.7) (ଟୀକା)

ଗୌତମ ବୁଦ୍ଧ ଇତିହାସର ବାସ୍ତବ ପୁରୁଷ, ଏଣୁ ଅଣବୌଦ୍ଧଙ୍କ ନିକଟରେ ଘଟଣାଟି ଏକ କିମ୍ବଦନ୍ତୀ ସଦୃଶ ପ୍ରତୀୟମାନ ହୋଇପାରେ । କିନ୍ତୁ ବୌଦ୍ଧ ସମାଜରେ ଏହା ଏକ ମିଥ୍ ରୂପେ ଗୃହୀତ । ହିନ୍ଦୁଙ୍କ ପକ୍ଷରେ ଶ୍ରୀକୃଷ୍ଣ ଜନ୍ମ ଯେଉଁ ମାନ୍ୟତା ଓ ଧାର୍ମିକ ବିଶ୍ୱସ୍ତତାର ସହିତ ଗୃହୀତ ହୋଇଥାଏ, ଏହା ସେହିଭଳି ଗୁରୁତ୍ୱର ସହିତ ଗୃହୀତ । ଏ ପ୍ରକାର ମିଥ୍ ଆଦୌ ଦୁଷ୍ପ୍ରାପ୍ୟ ନୁହେଁ । କେତେକ ଆଲୋଚକ ମିଥ୍‌କୁ ଇତିହାସର ଏକ ବିକୃତ ରୂପ ଭାବରେ ଗ୍ରହଣ କରିଛନ୍ତି । ପ୍ରାଚୀନ ଗ୍ରୀକ୍ ବିଦ୍ୱାନ 'ଇଉହେମରସ୍' (Euhemrus) ଗ୍ରୀସ୍‌ର ପ୍ରଧାନ ଦେବତା 'Zeus'ଙ୍କୁ ଜଣେ ପ୍ରାଚୀନ କ୍ରୀଟୀୟ ରାଜା ଭାବରେ ଗ୍ରହଣ କରିଥିଲେ । ଏବେ ବି କେହି କେହି ହିନ୍ଦୁ ଦେବତା କୃଷ୍ଣଙ୍କ ରାଜତ୍ୱ କାଳ ନିର୍ଣ୍ଣୟ ଦିଗରେ ଅନୁସନ୍ଧାନ କରିଥିବା ଜଣାଯାଏ । କିନ୍ତୁ କୃଷ୍ଣ, ବୁଦ୍ଧ, Zeus ଅଥବା ରାମଚନ୍ଦ୍ର ଇତିହାସର ବାସ୍ତବ ପୁରୁଷ ଥିବା ନ ଥିବା ସହିତ ମିଥ୍ ସମ୍ପୃକ୍ତ

ନୁହେଁ । ମିଥ୍ ପବିତ୍ର ଗଳ୍ପ ଧର୍ମ ଜଡ଼ିତ ସଂସ୍କାର ସାଧନାରେ ସହାୟକ ଏବଂ ଲୋକଙ୍କ ପକ୍ଷରେ 'ଜୈବ' ଅଥବା ଅଲୌକିକ ବାସ୍ତବତାର ବଳୃତି । ପ୍ରଶାନ୍ତରେ କିମ୍ବଦନ୍ତୀ କେବଳ ଐତିହାସିକ ପାତ୍ରପାତ୍ରୀଙ୍କ ବିବରଣୀ ତାହାର ବିଷୟ ବିନ୍ୟାସ ଓ ଚରିତ୍ର ଚିତ୍ରଣ ମିଥ୍‌ର ଅନୁରୂପ ହୋଇପାରେ, ଦେବତା ଓ ଅଲୌକିକ ପାତ୍ର ପାତ୍ରୀଙ୍କ ବର୍ଣ୍ଣନା ମଧ୍ୟ ସେଥିରେ ସ୍ଥାନ ପାଇପାରେ; କିନ୍ତୁ ସେଗୁଡ଼ିକର କୌଣସି ଧାର୍ମିକ ଆବେଦନ ନ ଥାଏ । ପୂଜାବିଧି କ୍ରିୟା-କାଣ୍ଡ ଇତ୍ୟାଦିର ପ୍ରବର୍ତ୍ତନ କିମ୍ବା ପରିବର୍ତ୍ତନରେ ସେଗୁଡ଼ିକ ସହାୟକ ହୁଏନାହିଁ ।

ଅନେକ କ୍ଷେତ୍ରରେ ମିଥ୍‌କୁ ଲୋକକଥାର ଏକ ଶାଖା ରୂପେ ଗ୍ରହଣ କରାଯାଇପାରେ । ଏହା ସାଂପ୍ରତିକ କାଳ ପୂର୍ବରୁ ପୃଥିବୀରେ ସଂଘଟିତ ହୋଇ-ଥିବା ପ୍ରାଚୀନ ଯୁଗ ଚେତନା ସହ ସଂଶ୍ଳିଷ୍ଟ । ସୃଷ୍ଟିର ଉଦ୍ଭବ ଓ ଆଦିସତ୍ତା ସମ୍ପର୍କରେ ଏହା ସୂଚନା ଦିଏ । ଗବେଷକ ତଥା ନୃତାତ୍ତ୍ୱିକମାନଙ୍କ ମତରେ ପ୍ରାଥମିକ ପର୍ଯ୍ୟାୟରେ ଲୋକ ସ୍ତରରେ ପ୍ରଚଳିତ କାହାଣୀ ଗୁଚ୍ଛ ପରବର୍ତ୍ତୀ କାଳରେ ବିବର୍ତ୍ତନ ପ୍ରକ୍ରିୟାରେ ମିଥ୍‌ରେ ରୂପାନ୍ତରିତ ହୋଇଥାଏ । ପ୍ରାଚ୍ୟ ଭାରତୀୟ ପରମ୍ପରାର 'ରାମାୟଣ' ଓ 'ମହାଭାରତ' ଏକାଧାରରେ ଇତିହାସ ଓ ମହାକାବ୍ୟ ରୂପେ ପରିଗଣିତ । ତହିଁରେ ଏଭଳି ବହୁ କାହାଣୀ ଗ୍ରନ୍ଥିତ ଯାହା ଲୋକ ସ୍ତରରେ ସ୍ମରଣ କବିମାନଙ୍କ ଦ୍ୱାରା ପ୍ରଚାରିତ ହୋଇଥିଲା । ଗ୍ରୀକ୍ ପରମ୍ପରାରେ ଅନୁରୂପ ଭାବରେ ଓଡ଼େଶୀ (Oddyssy) ଓ 'ଇଲିୟାଡ଼' (Illiad)ରେ କିମ୍ବଦନ୍ତୀ ତଥା ଲୋକକଥାର ସ୍ୱାକ୍ଷର ପ୍ରତିଫଳିତ । 'ଓଡ଼େଶୀ'ରେ ୟୁଲିସିସ୍‌ର ରୋମାଞ୍ଚକର ଅଭିଯାନ ମଧ୍ୟରେ ସଂଯୋଜିତ ହୋଇଥିବା ମିଥ୍ ବହୁ ଲୋକ ପରମ୍ପରା ସହ ଜଡ଼ିତ । ଲୋକ ପରମ୍ପରାରେ ପ୍ରଚଳିତ ମିଥ୍ ଭାରତୀୟ ପରମ୍ପରାରେ 'କାଳଶ୍ରୀ' ଓ 'ଜ୍ଞାନଦେଇ ମାଲୁଣୀ' ଠାରୁ ଆରମ୍ଭ କରି ପାଶ୍ଚାତ୍ୟ ପରମ୍ପରାର ଡ଼ାହାଣୀ (ulite) ଚରିତ୍ରର ସୂଚନା ଦେଇଛନ୍ତି, ଯାହା ଲୋକ ପରମ୍ପରା ସହ ଘନିଷ୍ଠ ଭାବରେ ସମ୍ପୃକ୍ତ । ବସ୍ତୁତଃ ଲୋକ ମିଥ୍‌ର ଏକ ବହୁ ପରିଚିତ କାବ୍ୟିକ ପ୍ରତୀକ ହେଉଛି 'ଫୁଲ' । ନୃତତ୍ତ୍ୱବିତ୍ ଶ୍ରୀ ଶରତ ଚନ୍ଦ୍ର ମିତ୍ର 'ରୟାଲ୍ ଏସିଆଟିକ୍ ସୋସାଇଟି' ଦ୍ୱାରା ପ୍ରକାଶିତ ଏକ ପ୍ରବନ୍ଧରେ ଦର୍ଶାଇ-ଛନ୍ତି ଯେ, ମୃତ ଶରୀର ଉପରେ ଫୁଲ ଫୁଟିବା ବା ଉଦ୍ଭିଦ ଜନ୍ମିବା ଏକ ସ୍ୱାଭାବିକ ସତ୍ୟ । ମଣିଷର ରକ୍ତରେ ଉଦ୍ଭିଦର ଅସ୍ମିତା ବିଦ୍ୟମାନ । ଓଡ଼ିଶାର 'କାଞ୍ଚନବତୀ ଉପାଖ୍ୟାନ'ରେ କାଞ୍ଚନବତୀର କଂଚନେଇ ଗଛରେ କାଂଚନ ଫୁଲ ହୋଇ ଫୁଟିବା, 'ଚମ୍ପାଚୁଲୀ ଝିଅ' ଗଳ୍ପରେ ରାଜା ଝିଅର କଇଁ ଫୁଲ

ହୋଇ ଫଟିବା, ପୁଣି ମା'ଙ୍କୁ ଦେଖି ସୁନାନାକା ଝିଅରେ ରୂପାନ୍ତରିତ ହେବାର ଦୃଷ୍ଟାନ୍ତ ରହିଛି । (Tales from the Western India)ରେ ଉଲ୍ଲେଖ କରାଯାଇଛି ଯେ ଏକ ନାୟିକାକୁ ହତ୍ୟା କରିବା ପରେ ସେ ସୂର୍ଯ୍ୟମୁଖୀ ଫୁଲ ହୋଇ ଫୁଟିଛି । ଆଧୁନିକ ଓଡ଼ିଆ କବିତାରେ ମଣିଷର ଫୁଲ ପାଲଟିବାର ଦୃଷ୍ଟାନ୍ତ ମଧ୍ୟ ଲକ୍ଷ୍ୟ କରାଯାଏ । ଗୁରୁପ୍ରସାଦଙ୍କ 'ଚମ୍ପାଫୁଲ' ସନେଟ୍‌ରେ ଏହି ନୃତାତ୍ତ୍ୱିକ ସତ୍ୟ ଅନ୍ତର୍ନିହିତ । ଯାଦୁକରର କୁହୁକ ନିର୍ଦ୍ଦେଶରେ ହାଡ଼ସବୁ ଯେଠାରେ ମୁକ୍ତା ଫୁଲ ଫୁଟେ । ମାଂସ ଫୁଲ ହୋଇ ଫୁଟିବାବେଳେ ମନ ରୋମାଞ୍ଚରେ ଶୋଇପଡ଼େ । ବସ୍ତୁତଃ ହାଡ଼ ମୁକ୍ତା ଫୁଲ ପାଲଟିବା ଓ ମାଂସ ଫୁଲ ହୋଇ ଫୁଟିବାଟା ଅବଦମିତ ଯୌନ କାମନାର ଉଦ୍‌ଗମନକୁ ପ୍ରମୂର୍ତ୍ତି କରେ । ସମଗ୍ର କବିତାରେ ଫୁଲ ରୋମାଣ୍ଟିକ୍ ଚେତନା ତଥା ଯୌନ ଚେତନାର ପ୍ରତୀକ । ଲୋକମିଥ୍‌ର ଅନ୍ୟତମ ବିଭାବ ହେଉଛି ମଣିଷର ପଥର ପାଲଟିବା । ବେଦର ଇନ୍ଦ୍ର-ଉଷା—ସରମା-ପାଣି ବୃତ୍ତାନ୍ତ ଲୋକ ପରମ୍ପରାରେ ଏକ ସମ୍ପୂର୍ଣ୍ଣ କାହାଣୀରେ ରୂପାନ୍ତରିତ । ଅଗ୍ନିଙ୍କର ତିନୋଟି ରୂପ ପରବର୍ତ୍ତୀ କାଳରେ ରାଜପୁତ୍ର ସମ୍ମୁଖୀନ ହୋଇଥିବା ତିନୋଟି ସଂକଟରେ ରୂପାନ୍ତରିତ । ମନ୍ତ୍ରୀପୁତ୍ର ରାଜପୁତ୍ରଙ୍କୁ ସମସ୍ତ ସଙ୍କଟରୁ ଉଦ୍ଧାର କରିବାପରେ ପଥର ପାଲଟି ଯାଇଛନ୍ତି । ଏହି ଗଳ୍ପ 'କଥାସରିତ୍ ସାଗର' (The story of the merchant's son who sared his life)ରେ ପରିଣତ ହୋଇ ସମଗ୍ର ବିଶ୍ୱରେ ପରିବ୍ୟାପ୍ତ ହୋଇଛି । ଜର୍ମାନୀର 'ଫେଥ୍‌ଫୁଲ ଜନ୍' (Faithful john) ଅନୁରୂପ ଗଳ୍ପାଂଶ ଓ ଚରିତ୍ରର ପ୍ରଲମ୍ବନ ଲକ୍ଷ୍ୟ କରାଯାଏ ।

## (ଗ) ମନସ୍ତାତ୍ତ୍ୱିକ ଅଧ୍ୟୟନ ଓ ମିଥ୍—(ପୁରାଣକଳ୍ପ)—

ସାହିତ୍ୟରେ ପ୍ରତୀକବାଦର ଅଭିବୃଦ୍ଧି ଚିତ୍ରକଳ୍ପ ଆନ୍ଦୋଳନ ପାଇଁ ଯେପରି ପଥ ପ୍ରଶସ୍ତ କରିଥିଲା, ସେହିପରି ଆଦି ମାନବର ପ୍ରତୀକବୋଧ ପ୍ରତି ଅପରିସୀମ ମର୍ଯ୍ୟାଦା ପ୍ରଦର୍ଶନ ଓ ପୁରାଣ ଅଧ୍ୟୟନ ପାଇଁ ମଧ୍ୟ ଏକ ନୂତନ ବାତାବରଣ ସୃଷ୍ଟି କଲା । ଏରିକ୍ ହିଲର୍‌ଙ୍କ ପରି ସମାଲୋଚକଙ୍କ ପ୍ରବଳ ପ୍ରତିବାଦ ଥିଲା ଯେ ଆମ ଯୁଗର ପ୍ରତୀକର ଯେଉଁ ସଙ୍କଟ ସୃଷ୍ଟି ହୋଇଛି ତାହା ବାସ୍ତବତା ଓ ପ୍ରତୀକର ଅଭିପ୍ରେତ ଅର୍ଥ ମଧ୍ୟରେ ବିଭେଦ ଯୋଗୁଁ । ଊନବିଂଶ ଶତାବ୍ଦୀର ବିଖ୍ୟାତ ଦାର୍ଶନିକ ଇମାନୁ୍ୟଲ କାଣ୍ଟ ମତ ଦେଇଥିଲେ ଯେ ପୁରାଣର ଗମ୍ଭୀର ଅଧ୍ୟୟନ ଏବଂ ବିଶ୍ୱାସଜନିତ ପ୍ରତ୍ୟୟଟି କେବଳ ଉଦ୍ଭଟତା ବା

ଅଜ୍ଞତା ନୁହେଁ । ପୌରାଣିକ ମାଧ୍ୟମ ଦ୍ୱାରା ମନୁଷ୍ୟ ମନର ଅବଚେତନ ଅଧ୍ୟୟନ ସମ୍ଭବ ବୋଲି ମତ ଦେଲେ ମନସ୍ତତ୍ତ୍ୱବିଦ୍ ଫ୍ରଏଡ୍ ଓ ସି:ଜି: ୟୁଙ୍ଗ୍ । ଏହା କିନ୍ତୁ ସର୍ବାଧିକ ଭାବରେ ସାହିତ୍ୟରେ ବିଭିନ୍ନ ବିଭାବକୁ ଆଲୋଡ଼ିତ କରିଥିଲା । ତାହା ହିଁ ଚଳିତ ଶତାବ୍ଦୀର ଏକ ନୂତନ ମାଧ୍ୟମ ମିଥ୍ ବା ପୁରାଣକଳ୍ପ । ବିଂଶ ଶତାବ୍ଦୀର ପ୍ରଥମ ବର୍ଷ ଫ୍ରଏଡ୍ ପ୍ରାତ୍ୟହିକ ଜୀବନରେ ମନସ୍ତାତ୍ତ୍ୱିକ ଚିକିତ୍ସା ପ୍ରସଙ୍ଗରେ ଘୋଷଣା କଲେ ଯେ ପୁରାକଳ୍ପ, ଅନ୍ଧ ବିଶ୍ୱାସ ପରି । ସଚେତନ ଅଜ୍ଞତା ଓ ଅଚେତନ ଜ୍ଞାନ ପ୍ରକାଶ କରୁଥିବାରୁ ମନସ୍ତାତ୍ତ୍ୱିକ ଅଧ୍ୟୟନ ପାଇଁ ଏକ ମୂଲ୍ୟବାନ ଉପକରଣ ସଦୃଶ । ତାଙ୍କର ବିଶ୍ୱାସ ଥିଲା ପୃଥିବୀର ପୌରାଣିକ ଦୃଷ୍ଟିଭଙ୍ଗୀର ବହୁଳାଂଶ ବହିର୍ବିଶ୍ୱରେ ପ୍ରତିଫଳିତ ମନୋବିଜ୍ଞାନ ଭିନ୍ନ ଅନ୍ୟ କିଛି ନୁହେଁ ଏବଂ ବିଶେଷତଃ ଏହି ପୌରାଣିକତା ଅବଚେତନ ମନର ବିଜ୍ଞାନ ।

ଫ୍ରଏଡ୍ ଏହି ତତ୍ତ୍ୱର ଉଦାହରଣ ରୂପେ ସଫୋକ୍ଲିସ୍‌ଙ୍କ 'ଅଡ଼ିପସ୍-ଟାଇରାନ୍‌ସ' ପୁରାଣକଳ୍ପ ବ୍ୟବହାର କଲେ । ବାଲ୍ୟକାଳର ଅବଦମିତ ଇଚ୍ଛା ଅବଚେତନର ପ୍ରତିକ୍ରିୟା ସୃଷ୍ଟି କରେ, ତାହାର ଚରମ ଭାବରେ ଏହାକୁ ଉପସ୍ଥାପିତ କରି ଏହି ନିର୍ଦ୍ଦିଷ୍ଟ ମାନସିକ ଜଟିଳତାର ନାମ ଦେଲେ 'ଅଡ଼ିପସ୍ କମ୍ପ୍ଲେକ୍ସ' ଓ 'ଇଲେକ୍ଟ୍ରା କମ୍ପଲେକ୍ସ' । ଯଥାକ୍ରମେ ମାତାପୁତ୍ର ଓ ପିତା-କନ୍ୟା ମଧ୍ୟରେ ନିଗୂହିତ ଯୌନ ଚେତନା ଏହାଦ୍ୱାରା ଅବଚେତନର ଅନ୍ଧକାର ମଧ୍ୟରୁ ଆବିଷ୍କୃତ ହେଲା । ଫ୍ରଏଡ୍ ପୁରାଣକଳ୍ପ ସମ୍ବନ୍ଧରେ ଧାରାବାହିକ ଅଧ୍ୟୟନ କରି ନ ଥିଲେ ମଧ୍ୟ ଏହାର ବୈଜ୍ଞାନିକ ଅଧ୍ୟୟନ ପାଇଁ ବାଟ ଫିଟାଇ ଦେଇଥିଲେ । ଜି:ସି. ୟୁଙ୍ଗ୍ ଏ ଦିଗରେ ଅଧିକ ଅଗ୍ରସର ହୋଇଥିବା ଦେଖାଯାଏ । ଜି·ସି· ୟୁଙ୍ଗ୍ ସାମୂହିକ ଅବଚେତନର ଆଦିରୂପ' ରୂପେ ପୁରାଣ କଳ୍ପକୁ ପ୍ରତିଷ୍ଠା ଦେଇଛନ୍ତି । (Archetypes of collective unconsious) କାବ୍ୟକଳା ସହ ବିଶ୍ଲେଷଣାତ୍ମକ ମନୋବିଜ୍ଞାନର ସମ୍ପର୍କ ଉପରେ ରଚିତ ଏକ ସନ୍ଦର୍ଭରେ 'ଆଦିରୂପ'ର ପରିଚୟ ସେ ଦେଇଛନ୍ତି ଯେ ଏହା ଅସଂଖ୍ୟ ସମପ୍ରକାର ଅନୁଭୂତିର ମନସ୍ତାତ୍ତ୍ୱିକ ଅବଶେଷ (Psychic-nesidua of numberless experiences of the same type) । ମନୁଷ୍ୟ ପିତୃ ପୁରୁଷର ବଂଶାନୁକ୍ରମରେ ଏହା ମସ୍ତିଷ୍କରେ ଧାରଣ କରିଥାଏ । ତାଙ୍କ ମତରେ ଆଦିରୂପ ପ୍ରତ୍ୟେକଙ୍କଠାରେ ରହିଥିବା ଏକ ମାନସିକ ଅଙ୍ଗ ସ୍ୱରୂପ । ୟୁଙ୍ଗ୍ ବିଶ୍ଲେଷଣ କରିଥିବା ପ୍ରଧାନ ଆଦିରୂପମାନଙ୍କ

ମଧ୍ୟରେ ଛାୟା (The Shadow), ଜ୍ଞାନୀବୃଦ୍ଧ (The Wise old man), ଆଦିମାତା (The Mother) ଇତ୍ୟାଦି ଉଲ୍ଲେଖନୀୟ । ପ୍ରଫେସର ଗିଲବର୍ଟ ମୁରେ 'The Classical Tradition in Poetry' ଗ୍ରନ୍ଥରେ 'ହାମଲେଟ୍' ଏବଂ 'ଓରେଷ୍ଟସ୍' ନାମକ ପ୍ରବନ୍ଧରେ ଠିକ୍ ଏହି କଥାକୁ ଅଧିକ ପ୍ରାଞ୍ଜଳ ଭାବରେ ବୁଝାଇ କହିଛନ୍ତି ଯେ ପୁରାଣକଳ୍ପ ବା ଆଦିରୂପ ସମ୍ବଳିତ କଥା ଏବଂ ପରିସ୍ଥିତି ବଂଶାନୁକ୍ରମରେ ଆବଦ୍ଧ ହୋଇ ରହିଥାଏ । ଶରୀରର ଏକ ମାନସିକ ଅଙ୍ଗ ରୂପେ ଏହା ରହିଥାଏ । ନୃତତ୍ତ୍ୱବିତ୍‌ମାନଙ୍କ ଭାଷାରେ ଏହା ହେଉଛି 'ସାଂସ୍କୃତିକ ପ୍ୟାଟର୍ଣ୍ଣ' । ଗୋଲଡ଼େନ୍ ଓ୍ୱାଇଜ୍‌ର ଏହି ସାଂସ୍କୃତିକ ପ୍ୟାଟର୍ଣ୍ଣ ସହିତ କଳା ସାହିତ୍ୟର ସ୍ୱରୂପ ଓ ପଦ୍ଧତି ସମ୍ପୃକ୍ତ ବୋଲି ଦର୍ଶାଇ-ଛନ୍ତି । ମଦ୍‌ବୋଡ୍‌କିନ୍ ୟୁଙ୍ଗ୍‌ଙ୍କ ଆଦିରୂପ ସହିତ ନୃତତ୍ତ୍ୱବିଦ୍‌ମାନଙ୍କ ସାଂସ୍କୃତିକ ପ୍ୟାଟର୍ଣ୍ଣ ସମ୍ମିଳିତ କରି (Archetypal Pattorn) ନାମରେ ନିବଦ୍ଧିତ କରିଛନ୍ତି ଏବଂ ମତ ଦେଇଛନ୍ତି ଯେ ବଂଶଗତ ଅନୁଭୂତି ଦୁଇ ପ୍ରକାର ଭେଦରେ ଅନୁକ୍ରମିତ ହୋଇଥାଏ । ଯଥା—ଶାରୀରିକ (Biological Inheritance) ଏବଂ ସାମାଜିକ (Social inheritance) । ପୁରାଣକଳ୍ପ ବା ମିଥ୍‌କୁ ବିଦେଶୀ ଐତିହାସିକମାନେ ପ୍ରାଚୀନ କାଳରେ ବିଭିନ୍ନ ଦୃଷ୍ଟିଭଙ୍ଗୀରେ ବିଗ୍ଭର କରିଥିଲେ । ହେରୋଡୋଟସ୍ ଗ୍ରୀକ୍, ପାର୍ଶୀ ଓ ମିଶରୀୟ ପୁରାଣକଳ୍ପଗୁଡ଼ିକୁ କେବଳ ଲିପିବଦ୍ଧ ଯେ କରିଥିଲେ ତାହା ନୁହେଁ ଏହି ବିଶ୍ୱାସ ସହିତ ସଂଯୁକ୍ତ କୃତାଙ୍ଗ (Rituals)ର ମଧ୍ୟ ଯଥାରୀତି ବର୍ଣ୍ଣନା କରିଥିଲେ, କିନ୍ତୁ ଏଥିରେ ନିହିତ ରହସ୍ୟଗୁଡ଼ିକୁ ସେ ଉହ୍ୟ ରଖିଥିଲେ । ଥୁସିଡ଼ାଇଡ୍ସ୍ ସଗର୍ବରେ ପୁରାଣକଳ୍ପ ଓ ସତ୍ୟ ମଧ୍ୟରେ ପାର୍ଥକ୍ୟ ଲକ୍ଷ୍ୟ କରିଥିଲେ ମଧ୍ୟ ଏଗୁଡ଼ିକର ସଠିକ୍ ଅର୍ଥନ୍ୟାସ ପାଇଁ ଉପଦେଶ ଦେଇ ଯାଇଥିଲେ । ଲିଭି (livy) ଇତିହାସର ପରିବେଶ ନିର୍ମାଣର ସହାୟକ ରୂପେ ପୁରାଣକଳ୍ପକୁ ଗ୍ରହଣ କରିଛନ୍ତି । ଇତିହାସବିଦ୍‌ମାନଙ୍କ ମଧ୍ୟରେ ଜ୍ୟାମ୍ବାଟିସ୍ତା ଭିକ୍‌କୋ ହେଉଛନ୍ତି ପ୍ରଥମ ବ୍ୟକ୍ତି ଯେ ପୁରାଣକଳ୍ପକୁ ନୃତାତ୍ତ୍ୱିକ ଅଧ୍ୟୟନ ଓ ଇତିହାସର ମନୋବୈଜ୍ଞାନିକ ଅଧ୍ୟୟନ ପାଇଁ ଏକାନ୍ତ ଉପଯୋଗୀ ମନେ କରିଥିଲେ । ଏପରିକି ପୁରାଣକଳ୍ପକୁ ଭାଷା ଉଦ୍ଭବର ଏକ ବିକାଶ ରୂପେ ମଧ୍ୟ ସେ ବିଶ୍ଲେଷଣ କରିଥିଲେ ।

## (ଘ) ପୁରାଣକଳ୍ପ (ମିଥ୍), ପ୍ରତୀକ, ଚିତ୍ରକଳ୍ପ—

ରୁଷ ଦେଶର ପ୍ରସିଦ୍ଧ ପ୍ରତୀକବାଦୀ ସମାଲୋଚକ ଭ୍ୟାଚେସ୍ଲାଭ ଇଭା-ନୋଭ୍ ପ୍ରତୀକ ଓ ପୁରାଣକଳ୍ପ ମଧ୍ୟରେ ରହିଥିବା ଅନ୍ତରଙ୍ଗ ସମ୍ପର୍କ ନିର୍ଦ୍ଧାରଣ କରି କହନ୍ତି—ପୁରାଣ (ମିଥ୍) ହେଉଛି ପ୍ରତୀକର ଗତିଶୀଳ ଦିଗ ଏବଂ ପ୍ରତୀକକୁ

ଗତ ବା ଗତର କାରଣ, କ୍ରିୟା ବା କ୍ରିୟାଶୀଳ ଶକ୍ତି ରୂପେ ଚିନ୍ତା କରାଯାଇପାରେ । ପ୍ରତୀକବାଦ ଦୁଇ ପ୍ରକାରର ଭାଷା ଆଲିଙ୍ଗନ କରି ରଖିଥାଏ । ଗୋଟିଏ ବିଶ୍ଳେଷଣାତ୍ମକ ଯୁକ୍ତିଯୁକ୍ତ ଏବଂ ସାଂସାରିକ ସମ୍ବନ୍ଧ ସହ ଜଡ଼ିତ । ଅନ୍ୟଟି ଧାର୍ମିକ, ନୈତିକ ଓ ଭଗବତ ଚିନ୍ତା ସହିତ ଜଡ଼ିତ । ଏହି ଦ୍ୱିତୀୟ ପ୍ରକାର ଭାଷାର ମୌଳିକ ରୂପ ହେଉଛି ପୁରାଣକଳ୍ପ । ଆଧୁନିକ ଯୁଗର ବିଶିଷ୍ଟ ସମାଲୋଚକ ଦାର୍ଶନିକ ଅର୍ନଷ୍ଟ କ୍ୟାସିରର୍ କହନ୍ତି ଯେ ମନୁଷ୍ୟଙ୍କୁ ବିବେକ ବୁଦ୍ଧି ସମ୍ପନ୍ନ ପ୍ରାଣୀ କହିବା ଉଚିତ ହେବ । ଜେ. ଜିହର୍ଡ଼ର ଯେପରି ପୁରାଣକଳ୍ପରୁ ଭାଷାର ଉଦ୍ଭବ ହୋଇଥାଇପାରେ ବୋଲି ନିର୍ଦ୍ଧାରଣ କରିଥିଲେ ତାହା ଖଣ୍ଡନ କରି କ୍ୟାସିରର୍ ଯୁକ୍ତି କରନ୍ତି ଯେ ବରଂ ଭାଷା ଓ ପୁରାଣକଳ୍ପ ଉଭୟଙ୍କୁ ଆଦିମ ମନୁଷ୍ୟର ପ୍ରତୀକ ସୃଷ୍ଟି ଇଚ୍ଛାର ଦୁଇଟି ଶାଖା କୁହାଯାଇ ପାରେ । କ୍ୟାସିରର୍ଙ୍କ ପରି ମିସେସ୍ ସୁଜାନ୍ ଓ କୋଲିଙ୍ଗର୍ ମଧ୍ୟ ପୁରାଣକଳ୍ପକୁ ପ୍ରତୀକାୟନର ପ୍ରଧାନ ନିୟମ ରୂପେ ଗ୍ରହଣ କରିଛନ୍ତି । ୟିଟସ୍, ପାଉଣ୍ଡ୍ ଏବଂ ଏଲିୟଟ୍ ଏହି ତିନିଜଣ ବିଶ୍ୱପ୍ରସିଦ୍ଧ କବି ଥିଲେ ଫ୍ରଏଡ୍ ଏବଂ ୟୁଙ୍ଗ୍ଙ୍କ ସମସାମୟିକ । ୟେଟସ୍ ଫ୍ରଏଡ୍ଙ୍କଠାରୁ ମାତ୍ର ୯ ବର୍ଷ ସାନ ଥିଲେ କିନ୍ତୁ ଏକାବର୍ଷ ମୃତ୍ୟୁବରଣ କରିଥିଲେ । ୟେଟସ୍ କବି ହିସାବରେ ପ୍ରତିଷ୍ଠିତ ହେବା ପୂର୍ବରୁ ଫ୍ରଏଡ୍ ଓ ୟୁଙ୍ଗ୍ଙ୍କ ପୁରାଣକଳ୍ପ ସମ୍ବନ୍ଧୀୟ ମନସ୍ତାତ୍ତ୍ୱିକ ବ୍ୟାଖ୍ୟା ଓ ବିଶ୍ଳେଷଣ ଅନେକାଂଶରେ ପ୍ରକାଶିତ ହୋଇ ସାରିଥିଲା । ପାଉଣ୍ଡ୍ ଓ ଇଲିୟଟ୍ ଉଭୟ ମନସ୍ତତ୍ତ୍ୱବିଦ୍ଙ୍କ ଲେଖାସବୁ ଯଥାସମ୍ଭବ ଅଧ୍ୟୟନ କରିଥିଲେ । ଏହି ତିନି ପ୍ରସିଦ୍ଧ କବି ଫ୍ରଏଡ୍, ୟୁଙ୍ଗ୍ ଏବଂ ସାର୍ ଜେମସ୍ ଫ୍ରେଜର୍ଙ୍କ ଦ୍ୱାରା ମୁଖ୍ୟତଃ ପ୍ରଭାବିତ ହୋଇ ଊନବିଂଶ ଶତକରେ ପ୍ରାଧାନ୍ୟ ଲାଭ କରିଥିବା ପୁରାଣକଳ୍ପର ଇନ୍ଦ୍ରିୟ-ପ୍ରବଣ ପ୍ରତୀକ ବା ଅନ୍ୟୋକ୍ତିରୂପକ ସ୍ଥୂଳ ଦୃଷ୍ଟିଭଙ୍ଗୀ ପରିତ୍ୟାଗ କରି ପୁରାଣକଳ୍ପକୁ ଅବଚେତନ ସ୍ତରର ପ୍ରତୀକାତ୍ମକ ରୂପ ଭାବରେ କବିତାରେ ପ୍ରୟୋଗ କରିଥିଲେ । ୧୯୨୫ ଖ୍ରୀ:ରେ ୟେଟସ୍ଙ୍କ ପ୍ରକାଶିତ 'Avision' ଗ୍ରନ୍ଥ ଉପରେ ଫ୍ରଏଡ୍ ଓ ୟୁଙ୍ଗ୍ଙ୍କ ରଚନାବଳୀ ଅଧ୍ୟୟନ ପ୍ରଭାବ ପଡ଼ିଥିବା ଅନୁଭୂତ ହୁଏ । 'Anima Mundi'ରେ ୟେଟସ୍ 'The Great Memory' ନାମକ ଯେଉଁ ତତ୍ତ୍ୱର ଅବତାରଣା କରିଛନ୍ତି ତାହା ୟୁଙ୍ଗ୍ଙ୍କ ଅଗାଧ ଅବଚେତନର ଭିନ୍ନ ରୂପ ମାତ୍ର । 'Avision ଓ Mythology' ଗ୍ରନ୍ଥ ପରି ପୁରାଣକଳ୍ପର ବିଧିବଦ୍ଧ ତତ୍ତ୍ୱଗ୍ରନ୍ଥ ବ୍ୟତୀତ ୟେଟସ୍ ନିଜ କବିତାରେ ମିଥ୍ର ବହୁଳ ତଥା ଚମତ୍କାର ପ୍ରୟୋଗ କରିଛନ୍ତି । ତନ୍ମଧ୍ୟରୁ ଭାରତୀୟ ପୁରାଣ-କଳ୍ପର ଅସ୍ତିତ୍ୱ ଧାରଣ କରିଥିବା କବିତା ମଧ୍ୟ ଦେଖିବାକୁ ମିଳିଥାଏ । 'The

double vision of Michael Robartes' କବିତାଟି ଏଠାରେ ସ୍ମରଣୀୟ । ଏ କବିତାରେ ଏକ ପାର୍ଶ୍ୱରେ ଗୋଟିଏ ମିଶରୀୟ ସ୍ଫିଙ୍କସ୍ ଓ ଅନ୍ୟ ପାର୍ଶ୍ୱରେ ବୁଦ୍ଧଦେବଙ୍କ ଚିତ୍ରକଳ୍ପ ମଧ୍ୟରେ ଏକ ନୃତ୍ୟରତା ବାଳିକା, ପାଶ୍ଚାତ୍ୟ ପୁରାଣ ପ୍ରସିଦ୍ଧା ହେଲେନ୍, ସ୍ଫିଙ୍କସ୍ ଉଚ୍ଚତ ଜ୍ଞାନର ପ୍ରତୀକ, ବୁଦ୍ଧ ନିରାସକ୍ତ ବା ନିବୃତ୍ତି ମାର୍ଗର ପ୍ରତୀକ ମଧ୍ୟରେ ସୌନ୍ଦର୍ଯ୍ୟ ଓ ପ୍ରେମର ଅଫୁରନ୍ତ ମୂର୍ତ୍ତିମତୀ ହେଲେନ୍ । ୟେଟ୍ସଙ୍କ ପୁରାଣକଳ୍ପ ନଗରୀ 'Byzantium' ଅନେକ କବିତାର ପୃଷ୍ଠଭୂମି ହୋଇଛି । ଏଜରା ପାଉଣ୍ଡ୍ ଚିତ୍ରକଳ୍ପର ଅବତାରଣା ପ୍ରସଙ୍ଗରେ କବିତାର ଯେପରି ସଂଜ୍ଞା ଦେଇଥିଲେ ଯେ ଏହା ଏକ ପ୍ରେରଣାନ୍ୱିତ ଗଣିତ ଯାହା ମାନବିକ ଆବେଗର ଏକ ସମୀକରଣ ଉପସ୍ଥାପିତ କରେ, ସେଥିରେ ପୁରାଣକଳ୍ପ ହିଁ ସେ ପ୍ରକାର ସମୀକରଣକୁ ରୂପଦାନ କରିପାରେ । ସେହିପରି ଟି. ଏସ୍. ଇଲିୟଟ୍ ୧୯୨୧ ଖ୍ରୀ:ରେ ଅର୍ଥାତ୍ 'The Waste land' ରଚନା କରୁଥିବା ସମୟରେ ଜେମସ୍ ଜୟେସଙ୍କ 'ୟୁଲିସିଜ' ଉପରେ ଯେଉଁ ମନ୍ତବ୍ୟ ଦେଇଛନ୍ତି ପୁରାଣକଳ୍ପ ପ୍ରତି ତାଙ୍କର ଅକୁଣ୍ଠ ସମର୍ଥନ ରହିଥିବା ତହିଁରୁ ଲକ୍ଷ୍ୟ କରିହୁଏ । ବିଶ୍ୱବିଶ୍ରୁତ ଏହି କବିମାନଙ୍କ ବକ୍ତବ୍ୟଗୁଡ଼ିକରୁ ବିଶ୍ୱଜନୀନ ସାହିତ୍ୟର ଗତିଧାରାରେ ପୁରାଣକଳ୍ପର ଆଧୁନିକ ପ୍ରୟୋଗ ପ୍ରମତ୍ତତା କେବଳ ଅବଧାରିତ ହୁଏନାହିଁ, ବରଂ ଏହାକୁ ଅତ୍ୟାଧୁନିକ ଯୁଗରେ ମନୋବୈଜ୍ଞାନିକ ଉପାଦାନ ଭାବରେ ଯେପରି ପ୍ରାଧାନ୍ୟ ଦିଆଯାଇଛି ତହିଁରୁ ପ୍ରାଚୀନ ପୁରାଣର ଉପଯୋଗିତା ଜାଣିହୁଏ । ଚିତ୍ରକଳ୍ପ ହେଉ ବା ପୁରାଣକଳ୍ପ ହେଉ ସତର୍କତାର ସହିତ କୁହାଯାଇ ପାରେ ଯେ ପ୍ରତୀକବୋଧରୁ ଏ ସମସ୍ତ ବିବର୍ତ୍ତିତ ହୋଇଛି । ସାମଗ୍ରିକ ଭାବରେ ଏହି ତିନିଗୋଟି ଚେତନା ହିଁ ଆଧୁନିକ କବିତାରେ ଏକ ଅପରିହାର୍ଯ୍ୟ ସମ୍ପର୍କରେ ବନ୍ଧା ହୋଇଛି ସବୁଦିନ । କିନ୍ତୁ ଏକଥା ମଧ୍ୟ ସ୍ୱୀକାର୍ଯ୍ୟ ଯେ ଭାରତୀୟ ସନାତନ ଚିନ୍ତାଧାରାରେ ପ୍ରତୀକ ଚିତ୍ରକଳ୍ପାଦିଠାରୁ ପୁରାଣକଳ୍ପର ବିକାଶ ଅଧିକ ନିଷ୍ଠା ଓ ସିଦ୍ଧିଯୁକ୍ତ ହୋଇ ପାରିଥିଲା । ପୁରାଣକଳ୍ପକୁ ଅବଚେତନ ମନର ଅନିର୍ବାପିତ ଅବଶେଷ ରୂପେ ବୈଜ୍ଞାନିକ ଦୃଷ୍ଟିକୋଣରୁ ପ୍ରଥମେ ଫ୍ରଏଡ୍ ଓ ୟୁଙ୍ଗ୍ ଯେପରି ପ୍ରାଧାନ୍ୟ ଦେଲେ ତାହା ଫ୍ରଏଡ୍ଙ୍କ ବହୁ ପ୍ରସିଦ୍ଧ 'ଅଡ଼ିପସ୍ କମ୍ପ୍ଲେକ୍ସ' ଓ ଏହି ଶ୍ରେଣୀୟ ବହୁ ଉପସ୍ଥିତିର ବିକାରର ମାନସ ଚିତ୍ର ପ୍ରାଚୀନତମ କବି କଳ୍ପନାରେ ସଂଶ୍ଳିଷ୍ଟ ସତ୍ୟ । ଏହିସବୁ ପ୍ରମାଣ ଦ୍ୱାରା ଯଦି ମନୋଜଗତର ଗଭୀରତମ ରୂପ ଆବିଷ୍କୃତ ହୋଇ ପାରିଛି ବୋଲି କୁହାଯାଏ ତା'ହେଲେ ଭାରତୀୟ ପୁରାଣକଳ୍ପରେ ତଥା ବେଦକାଳୀନ ଭାରତବର୍ଷରେ ଫ୍ରଏଡ଼ୀୟ ଆବିଷ୍କାର ପରି ବା ଅଡ଼ିପସ୍ କମ୍ପ୍ଲେକ୍ସ ଶ୍ରେଣୀୟ ପୁରାଣକଳ୍ପ

ସମ୍ପୃକ୍ତ ଜବଡାର ଅଭାବ ନ ଥିଲା । ଅଥଚ ଅତ୍ୟନ୍ତ ବସ୍ତୁନିଷ୍ଠ ଓ ପଶ୍ଚାତ୍ତାପର ବିଷୟ ଏହି ଯେ ବୈଦିକ ପୁରାଣକଳ୍ପ ଭାରତୀୟମାନଙ୍କ ନିକଟରେ ଆଜି ବୈଦିକ ପରିଚିତ ନୁହେଁ 'ଅଡ଼ିପସ୍ କମ୍ପଲେକ୍ସ' ଯେତିକି ପରିଚିତ । ସଫୋକ୍ଲିସ୍‌ଙ୍କ ଦ୍ୱାରା କଥିତ ଓ ଫ୍ରଏଡ୍‌ଙ୍କ ଦ୍ୱାରା ଅର୍ଥାନ୍ୱିତ ଏହି ପୁରାଣକଳ୍ପ ନିମ୍ନରେ ପ୍ରଦତ୍ତ ବୈଦିକ ପୁରାଣକଳ୍ପ ଦ୍ୱାରା ପ୍ରଭାବିତ ହୋଇଥିବାର ଜଣାଯାଏ ।

ଉଦାହରଣ—"ଯାଆଁଳା ଭଉଣୀ ଯମୀ ଯମକୁ କହୁଛି ବିସ୍ତୀର୍ଣ୍ଣ ସମୁଦ୍ର ମଧ୍ୟବର୍ତ୍ତୀ ଏ ଦ୍ୱୀପକୁ ଆସି ଏ ନିର୍ଜନ ପ୍ରଦେଶରେ ତୁମ ସହ ସହବାସ ପାଇଁ ଅଭିଳାଷିଣୀ, କାରଣ ଗର୍ଭାବସ୍ଥାରୁ ତୁମେ ମୋର ସହଚର । ବିଧାତା ମନରେ ଚିନ୍ତା କରିଥିଲେ ଯେ ତୁମ ଔରସରେ ମୋ ଗର୍ଭରେ ଆମ ପିତାଙ୍କର ଏକ ସୁନ୍ଦର ନାତି ଜନ୍ମିବ ।" ଯମ ଉତ୍ତର ଦେଉଛି—"ତୁମ ଗର୍ଭ ସହଚର ତୁମ ସହ ଏ ପ୍ରକାର ସମ୍ପର୍କ କାମନା କରେନାହିଁ; ଯେହେତୁ ତୁମେ ମୋ ସହୋଦରା ଭଗ୍ନୀ ତେଣୁ ଅଗମ୍ୟା, ପରନ୍ତୁ ଏ ସ୍ଥାନ ନିର୍ଜନ ନୁହେଁ । ଯେହେତୁ ସେ ବଳଶାଳୀ ଅସୁରର ସ୍ୱର୍ଗବିଜେତା ବୀର ପୁତ୍ରଗଣ ପୃଥିବୀର ସବୁଆଡ଼ ଦେଖୁଛନ୍ତି ।" (ଯମୀ) —"ଯଦ୍ୟପି କେବଳ ମନୁଷ୍ୟ ପାଇଁ ଏ ସଂସର୍ଗ ନିଷିଦ୍ଧ ତଥାପି ଦେବତାମାନେ ଏହା ଇଚ୍ଛାପୂର୍ବକ କରିଥାନ୍ତି । ମୋର ଯେପରି ଇଚ୍ଛା ହେଉଛି ତୁମେ ମଧ୍ୟ ସେପରି ଇଚ୍ଛା ପୋଷଣ କର । ତୁମେ ପୁତ୍ର ଜନ୍ମଦାତା ପତି ପରି ମୋର ଶରୀରରେ ପ୍ରବେଶ କର ।" ଯମ—"ଏ କାର୍ଯ୍ୟ ମୁଁ ପୂର୍ବରୁ କେବେ କରିନାହିଁ । ମୁଁ ସତ୍ୟବାଦୀ, ମିଥ୍ୟା କେବେ କହେନାହିଁ । ଗନ୍ଧର୍ବ ଆମର ପିତା ଏବଂ ଆପ୍ୟାଯୋଷା ଆମ ଉଭୟଙ୍କର ଜନନୀ । ସୁତରାଂ ଆମେ ଉଭୟେ ଏକାନ୍ତ ନିକଟ ସମ୍ପର୍କୀୟ । ଇତ୍ୟାଦି ଇତ୍ୟାଦି ।" (୩୪) (Philosophy of upanishads Paul Deassen Page 40)

ବୈଦିକ ନିରୁକ୍ତ ଗ୍ରନ୍ଥରେ (୩୧୯) କୁହାଯାଇଛି, ପୁରାଣ ଯେହେତୁ ଆଦ୍ୟ ତେଣୁ ଏହା ନିତ୍ୟ ନୂତନ । ପୁରାଣ ସମ୍ପର୍କରେ ଏ ପ୍ରକାର ଶାଶ୍ୱତ ମୂଲ୍ୟବୋଧ ହିଁ ପାଶ୍ଚାତ୍ୟ ପୁରାଣକଳ୍ପର ପ୍ରଧାନ ଉପାଦାନ । ଶାସ୍ତ୍ରକାରମାନେ ଭାରତୀୟ ପୁରାଣର ଯେଉଁ ସଂଜ୍ଞା ଦେଇଛନ୍ତି ତହିଁରେ ଫ୍ରଏଡ୍ ବା ୟୁଙ୍ଗ୍‌ଙ୍କର ବଂଶାନୁକ୍ରମିକ ସଂକ୍ରମଣତା ତତ୍ତ୍ୱ ମଧ୍ୟ ନିହିତ ଅଛି । ସ୍ୱର୍ଗ ନରକର ଅଲୌକିକ ପୃଷ୍ଠଭୂମି ଉପରେ ଭାରତୀୟ ପୁରାଣକଳ୍ପ ଅଙ୍କିତ ହୋଇଥିଲେହେଁ ଏହା ଥିଲା ଯୁକ୍ତିଯୁକ୍ତ ଓ ବୈଜ୍ଞାନିକ ମଧ୍ୟ । "ମନସାହ୍ୟେବ ପଶ୍ୟତି / ମନସା ଶୃଣୋତି / କାମଃ

ସଙ୍କଳ୍ପୋ ବିଚିକିତ୍ସା ଶ୍ରଦ୍ଧାଽଶ୍ରଦ୍ଧା/ଧୃତି ଧୃତିହ୍ରୀର୍ଧୀ ଭିରିତ୍ୟେ ତତ୍ ସର୍ବଂମନ ।"
ଅର୍ଥାତ୍ ମନଦ୍ୱାରା ମନୁଷ୍ୟ ଦେଖେ, ଶୁଣେ । କାମନା ସଂକଳ୍ପ, ବିଚିକିତ୍ସା, ଶ୍ରଦ୍ଧା, ଅଶ୍ରଦ୍ଧା, ଧୃତି-ଅଧୃତି, ଧୀ ଆଦି ସମସ୍ତ ଜଗତ୍ ମନ ମୂଳରେ ଉଦ୍ଭିନ୍ନ ରହିଛି । ଏହିପରି ମନୋଜଗତ୍ ପ୍ରତି ଜିଜ୍ଞାସା ନେଇ ସାହିତ୍ୟର ମୂଲ୍ୟାୟନ ଓ ତତ୍ତ୍ୱ ନିବନ୍ଧନ ଭାରତୀୟ ଶାସ୍ତ୍ରରେ ଅପରିଚିତ ନ ଥିଲା । ଆଦି ଚିତ୍ତର ସ୍ୱରୂପ ୟୁଙ୍ଗ୍ 'ଆର୍କିଟାଇପ୍' ବା ଆଦିରୂପ ମାଧ୍ୟମରେ ଆବିଷ୍କାର କରିଛନ୍ତି । ଭାରତୀୟ ପୁରାଣକଳ୍ପ ମଧ୍ୟ ସେତିକି ଗଭୀର ପର୍ଯ୍ୟନ୍ତ ତର୍କଣା କରିଥିଲା । 'ଶତପଥ ବ୍ରାହ୍ମଣ'ରୁ ଏହିପରି ଏକ ଆଦି ରୂପର ଉଦାହରଣ ଦିଆଯାଇ ପାରେ ।

"ପୁରାକାଳରେ ମନୁ ନାମରେ ଜଣେ ଋଷି ତପସ୍ୟା ଓ ପ୍ରାର୍ଥନା ଦ୍ୱାରା ସ୍ୱର୍ଗର ଦେବତାମାନଙ୍କୁ ସନ୍ତୁଷ୍ଟ କରି ପାରିଥିଲେ । ଦିନେ ସେମାନେ ଆଚମନ ପାଇଁ ଜଳ ନେଇ ତାଙ୍କ ନିକଟକୁ ଆଗମନ କଲେ । ଋଷି ସେଥିରେ ହସ୍ତ ପ୍ରକ୍ଷାଳନ କରୁ କରୁ ଗୋଟିଏ କ୍ଷୁଦ୍ର ମାଛ ହାତକୁ ଗୁଳିଆସି କହିଲା—"ଆପଣ ମତେ ରକ୍ଷା କରନ୍ତୁ, ମୁଁ ଆପଣଙ୍କର ରକ୍ଷକ ହେବି ।" ମନୁ ପ୍ରଶ୍ନ କଲେ— "ତୁମେ ମୋତେ କେଉଁ ବିପଦରୁ ରକ୍ଷା କରିବ କହୁଛ" ? ମାଛ ଉତ୍ତର ଦେଲା— "ଏକ ମହାପ୍ରଳୟରେ ଏ ଜୀବଜଗତ ଭାସିଯିବ । ସେତେବେଳେ ମୁଁ ତୁମକୁ ରକ୍ଷା କରିବି ।" ଋଷି ପଚାରିଲେ—"କିନ୍ତୁ ମୁଁ କିପରି ତୁମକୁ ରକ୍ଷା କରିବି" ? ମାଛ ଉତ୍ତର ଦେଲା—"ଛୋଟ ଥିଲାବେଳେ ବଡ଼ ମାଛମାନେ ଆମକୁ ଭକ୍ଷଣ କରିଥାନ୍ତି । ସର୍ବଦା ଆମ ପ୍ରତି ବିପଦ ଘେରି ରହିଥାଏ । ତେଣୁ ମୋତେ ଏକ ନିରାପଦ ଜଳପାତ୍ରରେ ନେଇ ରଖ । ଯେତେବେଳେ ଜଳପାତ୍ରଠାରୁ ମୁଁ ବଡ଼ ହୋଇଯିବି, ଗୋଟିଏ ତଡ଼ାଗ ଖୋଳି ମୋତେ ରଖିବ । ଯେତେବେଳେ ତଡ଼ାଗ ଅପେକ୍ଷା ମୁଁ ବଡ଼ ହୋଇଯିବି ମୋତେ ସମୁଦ୍ରକୁ ନେଇଯିବ ।" ଏତିକି କହିବା ସଙ୍ଗେ ସଙ୍ଗେ ମାଛଟିର କାୟା ବୃଦ୍ଧି ହେବାକୁ ଲାଗିଲା । ମାଛଟି ପୁଣି ସତର୍କ କରାଇଦେଲା—"ନିର୍ଦ୍ଦିଷ୍ଟ ଏହି ବର୍ଷ ପ୍ରଳୟ ପ୍ଲାବନ ଘୋଟି ଆସିବ । ତେଣୁ ଗୋଟିଏ ନୌକା ନିର୍ମାଣ କର ଏବଂ ମୋତେ ପ୍ରାର୍ଥନା କର । ଯେତେବେଳେ ବନ୍ୟାଜଳ ମାଡ଼ି ଆସିବ ସେତେବେଳେ ନୌକା ମଧ୍ୟରେ ପ୍ରବେଶ କର ମୁଁ ତୁମକୁ ରକ୍ଷା କରିବି ।"

'ଶତପଥ ବ୍ରାହ୍ମଣ'ର ଏହି ମତ୍ସ୍ୟ ମହାଭାରତ, ଭାଗବତ ପୁରାଣ, ମତ୍ସ୍ୟ ପୁରାଣ ପ୍ରଭୃତିରେ ସାମାନ୍ୟ ପୃଥକ୍ ଭାବରେ କ୍ରମବର୍ଦ୍ଧିଷ୍ଣୁ ଚିତ୍ରକଳ୍ପ ମାଧ୍ୟମରେ ବର୍ଣ୍ଣିତ ହୋଇଛି । ବାଇବେଲ୍‌ର 'Thearch of Noah' ଏହି 'ମନୁ

ନୌକା କଥା'ର ଖ୍ରୀଷ୍ଟୀୟ ସଂସ୍କରଣ ମାତ୍ର । ମତ୍ସ୍ୟ ପ୍ରତୀକଯୁକ୍ତ ଏହି ପୁରାଣ-କଳ୍ପଟି ଜୀବାତ୍ମାର ଚକ୍ରକଳ୍ପ ମଧ୍ୟରେ ବିବୃତ ହୋଇଛି, ଶୁକ୍ର ଶ୍ମଶ୍ରୁ ସହିତ ମତ୍ସ୍ୟର ସାମଞ୍ଜସ୍ୟ ସୁବିଦିତ । ଜୀବ ଏହିପରି ଏକ କ୍ଷୁଦ୍ରତମ ଅବସ୍ଥାରୁ ଜୀବାତ୍ମାର ସଂରକ୍ଷଣ ଆବଶ୍ୟକତା କରେ, କାରଣ ଚତୁର୍ଦ୍ଦିଗରେ ମୃତ୍ୟୁର ମହାପ୍ଲାବନ ସଂସାର ବିନଷ୍ଟ କରୁଛି । ବିନାଶରୁ ଏହି ମୌଳିକ ଆଦି ଜୀବସତ୍ତାକୁ ଉଦ୍ଧାର କରିବା ପାଇଁ ଓ ଏଥିରୁ ପୁନର୍ବାର ସଂସାର ସର୍ଜନା ପାଇଁ ମନୁ ଦୈବବାଣୀ ଦ୍ୱାରା ନୌକା ନିର୍ମାଣ କରିବାକୁ ଆଦିଷ୍ଟ ହୋଇଥିଲେ । "ମତ୍ସ୍ୟ ପୁରାଣରେ ପ୍ରଦତ୍ତ 'ଦିବ୍ୟଶିଶୁ' ଏକ ଚମତ୍କାର ପୁରାଣକଳ୍ପ । ମାର୍କଣ୍ଡେୟ ଅନେକ କାଳ ଧରି ବିଷ୍ଣୁଙ୍କ ଶରୀରସ୍ଥ ବ୍ରହ୍ମାଣ୍ଡରେ ବିଚରଣ କଲାପରେ ବିଷ୍ଣୁଙ୍କ ନିଦ୍ରିତାବସ୍ଥାରେ ଅର୍ଦ୍ଧ ଉନ୍ମୁକ୍ତ ମୁଖବାଟେ ବାହାରି ଆସିଲେ; କିନ୍ତୁ ସୀମାହୀନ ସାଗର ମଧ୍ୟରେ ପଡ଼ିଲେ । ଭୟଙ୍କର ଅନନ୍ତ ଅନ୍ଧାର ଓ ଜଳୀୟ ନିର୍ଜନତା ମଧ୍ୟରେ ଏକ ଦିବ୍ୟ ଉଜ୍ଜ୍ୱଳ ଶିଶୁ ବଟଦ୍ରୁମ ତଳେ ନିଶ୍ଚିନ୍ତରେ ନିଦ୍ରିତ ହୋଇଥିବାର ଦେଖି ସେ ହଠାତ୍ ତଟସ୍ଥ ହୋଇ ପଡ଼ିଲେ । ବିଷ୍ଣୁଙ୍କ ମାୟା ବଳରେ ମାର୍କଣ୍ଡେୟ ଦେଖିଲେ ସେହି ଶିଶୁ ଆନନ୍ଦରେ ଖେଳିବାକୁ ଆରମ୍ଭ କଲା ନିଃସୀମ ସମୁଦ୍ର ମଧ୍ୟରେ ନିର୍ଭୟରେ । ଋଷି ମନେ ପକାଇଲେ—ଅନେକ ବର୍ଷ ପୂର୍ବେ ସେ ଏପରି କିଛି ଦେଖିବାକୁ ପାଇଥିଲେ ବୋଧହୁଏ । ସହସା ଋଷିଙ୍କ ମନରେ କୂଳକିନାରା ବିହୀନ ସମୁଦ୍ରର ଗଭୀରତା ଭୀତି ସଞ୍ଚାର କଲା । ଭୀତିତ୍ରସ୍ତ ଋଷିଙ୍କୁ ସମ୍ବୋଧନ କରି ଶିଶୁଟି ଡାକିଲା—"ଆସ ମାର୍କଣ୍ଡେୟ ଆସ, ଭୟ କରନାହିଁ ବାଳକ ! ଏଠାକୁ ଆସ ।" ଗମ୍ଭୀର କାଳୋତ୍ତୀର୍ଣ୍ଣ ସେ କଣ୍ଠରୁ 'ବାଳକ' ସମ୍ବୋଧନ ଶୁଣି ସହସ୍ର ବର୍ଷର ସେ ଋଷି ଅପମାନିତ ବୋଧକଲେ, କିନ୍ତୁ ଶିଶୁଟି କହିବାକୁ ଆରମ୍ଭ କଲା—"ବାଳକ ! ମୁଁ ତମର ପିତା, ମାତା, ଜ୍ୟେଷ୍ଠ, ମୁଁ ଆଦିସତ୍ତା, ଆଦି କାରଣ, ନାରାୟଣ ।"

ଏହି ଦିବ୍ୟ ଶିଶୁ ଆଦି ରୂପଟି ଭାରତୀୟ ପୁରାଣ ଓ ଧର୍ମ ଶାସ୍ତ୍ରରେ ବିଭିନ୍ନ ରୂପରେ ପ୍ରାଧାନ୍ୟ ଲାଭ କରିଥିବା ଦେଖାଯାଏ । ଶିଶୁ ବିଷ୍ଣୁ ବଟପତ୍ର ଉପରେ ପ୍ରଳୟ ପୟୋଧି ଜଳରେ ଭାସିବାଠାରୁ ଆରମ୍ଭ କରି ଶିଶୁ କୃଷ୍ଣଙ୍କ ମୁଖ ଗହ୍ୱର ମଧ୍ୟରେ ମାଟି ଢେଲାର ପ୍ରତୀକରେ ଯଶୋଦା ବିଶ୍ୱ ବ୍ରହ୍ମାଣ୍ଡ ଅବଲୋକନ କରିବା ପର୍ଯ୍ୟନ୍ତ ଏହି ପୁରାଣକଳ୍ପର ବ୍ୟାପ୍ତି ଓ ପ୍ରସାର ଅଭୂତପୂର୍ବ ।

## କୃତ୍ୟଙ୍ଗ (Rituals) :—

ସାର୍ ଜେମସ୍ ଫ୍ରେଜର୍ 'The Golden Bough' (୧୯୨୨) ନାମକ ଗ୍ରନ୍ଥରେ ପୁରାଣକଳ୍ପର ନୃତାତ୍ତ୍ୱିକ ସମ୍ବନ୍ଧ ନିରୂପଣ କରିବାର ଚେଷ୍ଟା

କରିଥିଲେ । ପୁରାଣକଳ୍ପ ସହ କୃତ୍ୟଙ୍କ ବା ଆନୁଷ୍ଠାନିକତା ଅବିଚ୍ଛେଦ୍ୟ ଭାବରେ ସଂପୃକ୍ତ । ଏହି ବିଶ୍ୱାସରେ ଫ୍ରେଜର୍ କୃତ୍ୟଙ୍କୁ କାଳକ୍ରମେ ପୁରାଣକଳ୍ପ ପରି ଜଟିଳ କଳାତ୍ମକ ଚିନ୍ତା ପ୍ରକାଶ ପାଇଥିବା ସମ୍ଭାବନା ଉପରେ ଗୁରୁତ୍ୱ ଦେଇ କୃତ୍ୟଙ୍କୁ ପୁରାଣକଳ୍ପର ଉତ୍ସ ରୂପେ ଗ୍ରହଣ କରିଛନ୍ତି । ସାମାଜିକ କ୍ରିୟା ଓ କର୍ମକାଣ୍ଡ ବିଭିନ୍ନ ପ୍ରକାର ବିଶ୍ୱାସ ଓ ଚିନ୍ତାଧାରାର ଗଠନ (Pattern) ବା ପ୍ରଥା ସୁନିର୍ଦ୍ଦିଷ୍ଟ କରି ଆଧିଭୌତିକ ଚିନ୍ତା ଉଦ୍ଦୀପନରେ କବିତାକୁ କିପରି ଯାଦୁକରୀ ଶକ୍ତି ପ୍ରଦାନ କରିପାରେ, ଫ୍ରେଜର୍ ତାହା ଦର୍ଶାଇଛନ୍ତି । ସିରିଆ, ସାଇପ୍ରସ୍ ଇତ୍ୟାଦି ଦେଶରେ ଆଡୋନିସ୍ (ଜଙ୍ଗଲର ରାଜା)ର ସମ୍ମାନାର୍ଥେ ଯେଉଁ ଶେଷକୃତ୍ୟ ଉତ୍ସବ ପାଳନ କରାଯାଏ ସେଥିରେ କ୍ରନ୍ଦନରତା ନାରୀଗଣ କେଶ ଓ ଉଲଙ୍ଗ ବକ୍ଷ ହୋଇ ମୃତ ଆଡୋନିସ୍‌ର ପ୍ରତିମୂର୍ତ୍ତି ସମୁଦ୍ର କୂଳକୁ ବହନ କରି ନିଅନ୍ତି ଓ ତେଉମାନଙ୍କୁ ଏହା ବିସର୍ଜନ କରିଥାନ୍ତି । ଦୁଃଖିତ ହେଲେ ମଧ୍ୟ ସେମାନେ ନିରାଶ ହୋଇ ନ ଥାନ୍ତି, କାରଣ ସେମାନେ ଶୋକଗୀତରେ କହୁଥାନ୍ତି ଯାହାକୁ ହରାଇ ବସିଛନ୍ତି ସେ ପୁଣି ବାହୁଡ଼ି ଆସିବ । ଏହିପରି ଆଗ୍ରର ନିର୍ଦ୍ଦିଷ୍ଟ କୃତ୍ୟଙ୍କରେ ପୁରାଣକଳ୍ପିତ ବିଶ୍ୱାସର ବୀଜ ନିହିତ ରହିଛି ବୋଲି ଫ୍ରେଜର୍ ମତ ଦେଇଛନ୍ତି । ଏଗୁଡ଼ିକ ସ୍ୱଭାବତଃ ହୋଇଥାଏ ପ୍ରତୀକାତ୍ମକ । 'The Golden Bough' ଗ୍ରନ୍ଥରେ ଫ୍ରେଜର୍ ଭାରତୀୟ କୃତ୍ୟଙ୍କଗୁଡ଼ିକର ସବିଶେଷ ଆଲୋଚନା ମଧ୍ୟ କରିଛନ୍ତି । ପୁନର୍ଜନ୍ମ, ଆତ୍ମାର ପରକାୟା ପ୍ରବେଶ, ଶିବପାର୍ବତୀଙ୍କ ବିବାହୋତ୍ସବ, ନରବଳି, ପଶୁବଳି, ପୁଷ୍ପବତୀ କନ୍ୟାର ନିଭୃତ ନିବାସ, ଗୃଣୀ ଦ୍ୱାରା ବୀର ପ୍ରେରଣ, ଶବସଂସ୍କାର, ରାଜାଭିଷେକ, ଜଳରେ ପ୍ରତିବିମ୍ବ ଦେଖିବାକୁ ବାରଣ, ବୃକ୍ଷପୂଜା, ଖାଲ୍‌ଜାତିର ମୟୂର ପୂଜା, ମନ୍ତ୍ରଦ୍ୱାରା ରୋଗ ଉପଶମ, ଫସଲ ଅମଳକୁ କେନ୍ଦ୍ର କରି ପାର୍ବଣ, ପବିତ୍ର ଶ୍ରୀଫଳ, ବସନ୍ତ ରୋଗ ପାଇଁ ପୂଜା ଇତ୍ୟାଦିର ବିଷୟ ଅବତାରଣା ସହିତ ଆଡୋନିସ୍ ପୁରାଣକଳ୍ପ ସଦୃଶ ଚିନ୍ତାଧାରା ଭାରତୀୟ ସଂସ୍କୃତିରେ କିପରି ରହିଛି ତାହା ମଧ୍ୟ ଦର୍ଶାଇଛନ୍ତି ।

## (ଙ) ମିଥ୍ ତତ୍ତ୍ୱର ବିଚାର ପଦ୍ଧତି : ଲୋକ ମିଥ୍‌ର ଅଧ୍ୟୟନ ପଦ୍ଧତି—

ମିଥ୍‌ତତ୍ତ୍ୱ ବହୁ ବିଶେଷଜ୍ଞଙ୍କର ଦୃଷ୍ଟି ଆକର୍ଷଣ କରିଛି । ବିଗତ ଶହେବର୍ଷ କିମ୍ବା ତତୋଽଧିକ ବର୍ଷ ଭିତରେ ମିଥ୍ ତତ୍ତ୍ୱ ସମ୍ବନ୍ଧୀୟ ବିଚାର ବିମର୍ଷ ସମ୍ବଳିତ ଅନେକ ଉପାଦେୟ ଗ୍ରନ୍ଥ ପ୍ରଣୀତ ହୋଇଛି । ସାହିତ୍ୟିକ, ମନୋବୈଜ୍ଞାନିକ, ଭାଷାତାତ୍ତ୍ୱିକ, ଧାର୍ମିକ, ସମାଜତାତ୍ତ୍ୱିକ ଓ ନୃ-ତାତ୍ତ୍ୱିକ ଆଦି ବିଭିନ୍ନ ଦୃଷ୍ଟି-

କୋଣରୁ ଅନୁଶୀଳନ ପୂର୍ବକ ମିଥ୍ ତତ୍ତ୍ୱର ମୂଲ୍ୟ ନିର୍ଦ୍ଧାରଣ ଦିଗରେ ପ୍ରୟାସ କରିଛନ୍ତି । ମାନବିକ ଜୀବନଧାରା, ଚିନ୍ତା, ଦର୍ଶନ, ସାମାଜିକତା ଓ ଐତିହ୍ୟର ଅନୁଶୀଳନ କ୍ଷେତ୍ରରେ ଏକ ନୂତନ ଏବଂ ଆଶ୍ଚର୍ଯ୍ୟଜନକ ଭାବରେ କାର୍ଯ୍ୟକାରୀ ଯନ୍ତ୍ରକାଠି ରୂପେ ମିଥ୍ ପରିଗଣିତ । ପ୍ରାଚୀନ ଗ୍ରୀକ୍ ଆଲୋଚକ ଇଉହେମେରସ୍ ମିଥ୍‌କୁ ମାନବୀୟ ଘଟଣାର ମାହାତ୍ମ୍ୟ ଭାବରେ ଗ୍ରହଣ କରିଥିଲେ । କେତେକ ମିଥ୍ ବର୍ଣ୍ଣିତ କଥାକୁ ସେ ଐତିହାସିକ ତଥ୍ୟ ରୂପେ ମାନି ନେଇଥିଲେ । ପ୍ରସିଦ୍ଧ ଜର୍ମାନ ଭାଷାତତ୍ତ୍ୱବିତ୍ ମ୍ୟାକସ୍‌ମୁଲରଙ୍କ ପ୍ରବନ୍ଧ ବିବରଣୀରୁ ଜଣାଯାଏ ଯେ ମିଥ୍ ଓ ଧର୍ମକୁ ଗ୍ରୀକମାନେ ସମାନ ଭାବରେ ବିଚାର କରୁଥିଲେ । ଉଭୟ ଧର୍ମ ଓ ମିଥ୍‌ର ମାନ୍ୟତା ଥିଲା ସମାନ । ଖ୍ରୀଷ୍ଟଧର୍ମାବଲମ୍ବୀମାନେ 'ନିଉଟେଷ୍ଟମେଣ୍ଟ' ଇହୁଦିମାନେ 'ଓଲଡ୍ ଟେଷ୍ଟମେଣ୍ଟ' ଉପରେ ଯେଭଳି ଆସ୍ଥା ସ୍ଥାପନ କରିଥାନ୍ତି ଏବଂ ଯେଉଁ ଆନ୍ତରିକତାର ସହିତ ବିଶ୍ୱାସ କରିଥାନ୍ତି ଗ୍ରୀକ୍‌ମାନେ ଏକଦା ମିଥ୍‌ଗୁଡ଼ିକୁ ସେହି ଭାବରେ ଗ୍ରହଣ କରୁଥିଲେ ।

## (୧) ଭାଷାତାତ୍ତ୍ୱିକ ପଦ୍ଧତି—

ଊନବିଂଶ ଶତାବ୍ଦୀରେ ପ୍ରଥମ ଶତକରେ ଜର୍ମାନ୍ ଭାଷାବିତ୍ ଫ୍ରିଡ଼ିକ୍ ମ୍ୟାକସ୍‌ମୁଲରଙ୍କ ମିଥ୍ ତତ୍ତ୍ୱ ସମ୍ବନ୍ଧୀୟ ଗବେଷଣା ପୁସ୍ତକ 'Comparative Mythology' ଖ୍ରୀ: ୧୮୫୬ରେ ପ୍ରକାଶ ପାଇଥିଲା । ତାଙ୍କର ଅଧ୍ୟୟନର ଭିତ୍ତି ଥିଲା ଭାଷା । ସେଥିପାଇଁ ଏକ ବିଶେଷ ସମ୍ପ୍ରଦାୟ ପ୍ରସ୍ତୁତ କରିଥିଲେ । ତାଙ୍କ ମତରେ ମିଥ୍‌ଗୁଡ଼ିକର ଯୁକ୍ତିସଙ୍ଗତ ବ୍ୟାଖ୍ୟା କେବଳ ଭାଷା ବିଜ୍ଞାନ ବା ବର୍ଣ୍ଣ ବିଜ୍ଞାନର ସହାୟତାରେ ସମ୍ଭବ । ତାଙ୍କ ଦ୍ୱାରା ସମ୍ପାଦ୍ୟ 'ଭାଷାର ରୋଗ' (Disease of language) ମାଧ୍ୟମରେ ଗ୍ରୀକ୍ ମିଥ୍ ଅନ୍ତର୍ଗତ ପାତ୍ର ପାତ୍ରୀଙ୍କ ନାମଗୁଡ଼ିକର ଅନୁଶୀଳନ କରି ସେ ମିଥ୍‌ଗୁଡ଼ିକର ମୂଳରୂପ ଓ ସୃଷ୍ଟି କାରଣ ନିର୍ଣ୍ଣୟ କରିବାକୁ ପ୍ରଚେଷ୍ଟା କରିଥିଲେ । ତାଙ୍କର ଅନୁଶୀଳନ ପଦ୍ଧତି ଭାରତୀୟ ବୈଦିକ ସଂସ୍କୃତ, ଗ୍ରୀକ୍, ଜର୍ମାନୀ ସ୍ଲାଭୋନୀୟ ପ୍ରଭୃତି ଭାଷାରେ ମିଳୁଥିବା ମିଥ୍ ସକଳର ତୁଳନାତ୍ମକ ଅଧ୍ୟୟନ ଉପରେ ପ୍ରତିଷ୍ଠିତ ଥିଲା । ମ୍ୟାକସ୍‌ମୁଲର ଓ ତାଙ୍କର ସମପନ୍ଥୀ କୁହ୍ନ, ବ୍ରେଆଲ ଆଦି ସମକାଳୀନ ଭାଷାବିତ୍ମାନଙ୍କ ମତାନୁସାରେ ଲୋକେ ମୂଳତଃ କେତେକ ସମାନ ଧ୍ୱନି ବିଶିଷ୍ଟ ଭିନ୍ନାର୍ଥକ ଶବ୍ଦ ପ୍ରୟୋଗ କରିବାରେ ଅଭ୍ୟସ୍ତ । କିନ୍ତୁ ପରବର୍ତ୍ତୀ ବଂଶଧରଗଣ ଶବ୍ଦଗୁଡ଼ିକରେ ମୂଳଅର୍ଥ ଭୁଲିଯିବାରୁ ପରିଣତି ସ୍ୱରୂପ ମୂଳକଥା ଗୁଡ଼ିକର ଅର୍ଥଗତ ଆବେଦନ ଭିନ୍ନ ହେବାକୁ ବାଧ୍ୟ ହେଲା । ସେମାନଙ୍କ ମତରେ ମିଥ୍‌ଗୁଡ଼ିକ ଏଭଳି ଅବାସ୍ତବ,

ଅସଙ୍ଗତ ଓ ଅଯୌକ୍ତିକ ଘଟଣା ରାଶିରେ ପୂର୍ଣ୍ଣ ହେବାର କାରଣ କେବଳ ସେହି ମୂଳ ଶବ୍ଦର ଭ୍ରମାତ୍ମକ ଅର୍ଥନ୍ୟାସ । ମ୍ୟାକସ୍‌ମୁଲରଙ୍କ ଅନୁଯାୟୀ ଶାମୁକାର ଏକ ବିଶେଷ ରୋଗରୁ ମୁକ୍ତାର ଉତ୍ପତ୍ତି ହେବାଭଳି ଭାଷାର ଏକ କମନିଷ୍ପତ୍ତି ରୋଗରୁ ମିଥ୍‌ଗୁଡ଼ିକର ଜନ୍ମ ଘଟିଛି । ତେଣୁ ଭାଷାବିତ୍‌ଗଣ ବିଭିନ୍ନ ଆର୍ଯ୍ୟଭାଷାର ତୁଳନାତ୍ମକ ଅଧ୍ୟୟନ ପୂର୍ବକ ମିଥ୍ ବିଚାର କରିବାରେ ଯତ୍ନଶୀଳ ଥିଲେ ।

## (୨) ମନୋବୈଜ୍ଞାନିକ ପଦ୍ଧତି—

ସମସାମୟିକ କାଳରେ ମିଥ୍ ତତ୍ତ୍ୱ ଓ ଲୋକତତ୍ତ୍ୱର ଉଦ୍ଭବ ଯେଉଁ ଯେତେପ୍ରକାର ସମାଧାନ ପ୍ରସ୍ତୁତ ହୋଇଛି ସେ ସମସ୍ତଙ୍କ ମଧ୍ୟରେ ମନୋବିଜ୍ଞାନୀଙ୍କ ପ୍ରତିପାଦ୍ୟ ବିଷୟଟି ସବୁଠାରୁ ଅଧିକ ବିବାଦୀୟ ଭାବରେ ଦଣ୍ଡାୟମାନ । ଅନେକ ବିଶିଷ୍ଟ ଲୋକତତ୍ତ୍ୱଜ୍ଞ ମନୋବୈଜ୍ଞାନିକ ମିଥ୍ ବିଚାର ପଦ୍ଧତିଟି ପ୍ରତି ସମ୍ପୂର୍ଣ୍ଣ ଉଦାସୀନ ରହିବା ମଧ୍ୟ ପରିଦୃଷ୍ଟ ହୁଏ । କିନ୍ତୁ ମନୋବିଜ୍ଞାନ ମିଥ୍‌ତତ୍ତ୍ୱ ଓ ଲୋକତତ୍ତ୍ୱର ଅଧ୍ୟୟନ ଓ ବିଶ୍ଳେଷଣ କ୍ଷେତ୍ରରେ ଯେ ଏକ ନୂତନ ଧରଣ ଭୂମି ପ୍ରତିଷ୍ଠା କରିଛି ଏହା ବିନା ଦ୍ୱିଧାରେ ପ୍ରକାଶ କରାଯାଇ ପାରେ । ମର୍‌ସିଆ ଇଲିଆଡ୍ ତାଙ୍କର 'Myth and Reality' ଶୀର୍ଷକ ପୁସ୍ତକରେ କହିଛନ୍ତି— 'ମନସ୍ତାତ୍ତ୍ୱିକ ଅନୁଶୀଳନଚାର ପଦ୍ଧତିଗତ କ୍ଷମତା ଦ୍ୱାରା ଆମର ବ୍ୟକ୍ତିଗତ ଐତିହ୍ୟର 'ପ୍ରାଥମିକ ରୂପ' (beginings) ବୁଝିବାକୁ ସମର୍ଥ ହୋଇ ପାରିଛୁ । ଏହି ପଦ୍ଧତିରେ କେତେକ ସମ୍ଭାବନା ପ୍ରତି ଦୃଷ୍ଟି ରଖି Alan Dudes କହନ୍ତି ଯେ—ଲୋକତତ୍ତ୍ୱ ଲୋକକର୍ତ୍ତୃକ ଓ ଲୋକଙ୍କ ଦ୍ୱାରା ବ୍ୟବହୃତ ହେଉଥିବାରୁ ଗୋଷ୍ଠୀ ଅନ୍ତର୍ଗତ ବ୍ୟକ୍ତି ମନସ୍ତତ୍ତ୍ୱର ଅଧ୍ୟୟନ ସ୍ଥଳ ବିଶେଷରେ ଆଦୌ ଅବାନ୍ତର ହେବନାହିଁ । ବିଖ୍ୟାତ ଜର୍ମାନ ଡାକ୍ତର ସିଗ୍‌ମଣ୍ଡ ଫ୍ରଏଡ୍ ମିଥ୍ ତତ୍ତ୍ୱର ଗମ୍ଭୀର-ତର ଅଧ୍ୟୟନ ଦିଗରେ ମନୋନିବେଶ କରିଥିଲେ । ଫ୍ରେଜର୍‌ଙ୍କ ପ୍ରଣୀତ ଗ୍ରନ୍ଥ 'The Golden Bugh' ଏ ଦିଗରେ ତାଙ୍କୁ ଅପର୍ଯ୍ୟାପ୍ତ ପ୍ରେରଣା ଯୋଗାଇ-ଥିଲା । କେବଳ ଅତିପ୍ରାକୃତ କିମ୍ବା କାଳ୍ପନିକ କାହାଣୀ ମାନ ନ ନେଇ ଫ୍ରଏଡ୍ ମାନବର ଅନ୍ତରାତ୍ମା ସହିତ ମିଥ୍‌ର ଯୋଗାଯୋଗ ସ୍ଥିର କରିବାକୁ ଚେଷ୍ଟା କରିଥିଲେ । ସେ ଉପଲବ୍ଧି କଲେ ମିଥ୍ ଓ ସ୍ୱପ୍ନ ମଧ୍ୟରେ ଆଶ୍ଚର୍ଯ୍ୟଜନକ ସାମଞ୍ଜସ୍ୟ ରହିଛି । ମିଥ୍ ସଦୃଶ ସ୍ୱପ୍ନରେ ନାନା ପ୍ରକାର ଅଦ୍ଭୁତ ଦୃଶ୍ୟ ଓ ଅତିପ୍ରାକୃତ ଘଟଣା ଘଟି ପାରୁଛି । ଉଭୟରେ ସମୟ ଓ ଭୂମିର ସୀମା ବା ବନ୍ଧନ ନାହିଁ । ଅଧ୍ୟୟନ ପାଇଁ ଅତ୍ୟଧିକ ଉତ୍ସାହିତ କରିଥିଲା । ଫ୍ରଏଡ୍ ଲକ୍ଷ୍ୟ କଲେ ମିଥ୍‌ର ନାୟକ ଅସାଧ୍ୟ ସାଧନ କରେ, ମରି ପୁଣି ଜୀବନ ପାଏ ।

ଅନାୟାସରେ ଏକ ଶରୀର ତ୍ୟାଗ କରି ଅନ୍ୟ ଶରୀର ଗ୍ରହଣ କରିପାରେ ଓ କ୍ଷୁଦ୍ରକାୟ ହୋଇ ଅତିକାୟକୁ ହତ୍ୟା କରିପାରେ । ଏଭଳି ଘଟଣା ସ୍ୱପ୍ନରେ ମଧ୍ୟ ଦୁଷ୍ପ୍ରାପ୍ୟ ନୁହେଁ । ତେଣୁ ସେ କହୁଥିଲେ ମିଥ୍ ହେଉଛି ଆଦିମ ମଣିଷର ଅସମ୍ପୃକ୍ତ, ଅସଂଲଗ୍ନ ଓ ଭୟଙ୍କର ସ୍ୱଭାବରେ ପ୍ରବଳ ସ୍ୱପ୍ନମାଳାକୁ ଜାଗରଣ ଅବସ୍ଥାରେ ସଂଯୁକ୍ତ, ସଂଯୁକ୍ତ ଓ ସଂବଦ୍ଧ କରିବା ପାଇଁ ଏକ ପ୍ରଚେଷ୍ଟା । ମିଥ୍‌ରେ ଆଦିମ ମାନବର ଅବଦମିତ ବାସନାର ସ୍ୱାଧୀନ ସଞ୍ଚରଣ ଘଟିଛି । ପାପ ଅଭିଳାଷର ଆଭରଣଯୁକ୍ତ ପ୍ରକାଶ ଉଭୟ ମିଥ୍ ଓ ସ୍ୱପ୍ନରେ ଘଟିଥାଏ । ଏଣୁ ମିଥ୍‌ଗୁଡ଼ିକୁ ସ୍ୱପ୍ନ ସଦୃଶ ଅଧ୍ୟୟନ ଓ ବିଗ୍ରହ କରିବା ଆବଶ୍ୟକ । ଫ୍ରଏଡଙ୍କ ମତରେ ସ୍ୱପ୍ନ ତତ୍ତ୍ୱ ଓ ମିଥ୍ ତତ୍ତ୍ୱ ମଧ୍ୟରେ ସେପରି କିଛି ପାର୍ଥକ୍ୟ ନାହିଁ । ଫ୍ରଏଡଙ୍କ ମତରେ ମିଥ୍ ହେଉଛି ନୈର୍ବ୍ୟକ୍ତିକ ସ୍ୱପ୍ନ, ସ୍ୱପ୍ନ ହେଉଛି ବ୍ୟକ୍ତିକୈନ୍ଦ୍ରିକ ମିଥ୍ । ମନୋବିଜ୍ଞାନୀଙ୍କ ମତରେ ମିଥ୍‌ରେ ପ୍ରତୀକ ଅଛି ଏବଂ ମିଥ୍‌ତତ୍ତ୍ୱର ପ୍ରତୀକଗୁଡ଼ିକୁ ଶୃଙ୍ଖଳାବଦ୍ଧ କରାଯାଇ ପାରେନା କିମ୍ବା ସେଗୁଡ଼ିକର ପୁନଃସୃଷ୍ଟି କରାଯାଇ-ପାରେନା ଅଥବା ଚିରକାଳ ପାଇଁ ସେ ସବୁର ଅବଦମନ ମଧ୍ୟ ସମ୍ଭବ ନୁହେଁ । ସେଗୁଡ଼ିକ ମନର ସ୍ୱତଃସ୍ଫୂର୍ତ୍ତି ପ୍ରକାଶ ।

## (୩) ନୃ-ତାତ୍ତ୍ୱିକ ଅନୁଶୀଳନ—

ନୃତତ୍ତ୍ୱବିଦ୍‌ମାନେ ମିଥ୍‌ତତ୍ତ୍ୱର ଆଲୋଚନା କ୍ଷେତ୍ରରେ ଏକ ଭିନ୍ନ ଦୃଷ୍ଟିକୋଣ ପୋଷଣ କରନ୍ତି । ମିଥ୍ ବିଧିବିଧାନ ଓ ଧର୍ମ ଇତ୍ୟାଦି ପ୍ରତି ଧ୍ୟାନ ଦେଇ ସେମାନେ ପ୍ରଧାନତଃ ନଗ୍ନ ଆଦିମ ସ୍ତରରୁ ଆରମ୍ଭ କରି ସଭ୍ୟସ୍ତର ପର୍ଯ୍ୟନ୍ତ ଘଟିଥିବା ଘଟଣା ବା ଚିନ୍ତାର ବିବର୍ତ୍ତନ ସମ୍ପର୍କରେ ଅଧ୍ୟୟନ କରିଛନ୍ତି । ଏକଦା ଆଣ୍ଡ୍ରୁଲାଙ୍ଗ ତାଙ୍କର 'Myth, Rituals and Religion' (ମିଥ୍, ରିଚୁଆଲ୍ ଆଣ୍ଡ ରିଲିଜିଅନ୍) ଶୀର୍ଷକ ପୁସ୍ତକରେ ଉଲ୍ଲେଖ କରିଥିଲେ ଯେ ସଭ୍ୟ ମାନବର ମାନସିକ ଅବସ୍ଥାଠାରୁ ଭିନ୍ନ ଏକ ଅବସ୍ଥା ମଧ୍ୟ ଦେଇ ମଣିଷର ମନ ଗଢିକରି ଆସୁଛି । ଆଜି ଯାହା ଅଲୌକିକ ଓ ଅପ୍ରାକୃତିକ ବୋଧ ହେଉଛି ଏକଦା ମଣିଷ ପକ୍ଷରେ ସେ ସମସ୍ତ ଥିଲା ପ୍ରାକୃତିକ ଓ ଯୁକ୍ତିସଙ୍ଗତ । ତେଣୁ ସେ କାଳରେ ରଚିତ ମିଥ୍‌ଗୁଡ଼ିକ ମଧ୍ୟରୁ ଯେଉଁ କେତେକ କାଳଗର୍ଭରେ ଅବଲୁପ୍ତ ହୋଇ ସଭ୍ୟକାଳ ପର୍ଯ୍ୟନ୍ତ ବଞ୍ଚି ରହିଛି ତାହା ସଭ୍ୟ ମଣିଷକୁ ଜଟିଳ ମନେ ହୋଇଥାଏ । ମୁଖ୍ୟତଃ ସେହି ମାନସିକ ଅବସ୍ଥାର ସ୍ୱରୂପ ସନ୍ଧାନ ନୃତତ୍ତ୍ୱବିଦ୍‌ଙ୍କ ମିଥ୍ ତତ୍ତ୍ୱ ଆଲୋଚନାର ଲକ୍ଷ୍ୟ ବୋଲି ଅନୁମାନ କରାଯାଏ, ଏମାନେ ବିଭିନ୍ନ ଜାତିର ପ୍ରଥା, ବିଧି, ଚଳଣୀ ଓ ମିଥ୍‌ର ତୁଳନାତ୍ମକ ଅଧ୍ୟୟନ କରି ବହୁ ନୂତନ

ତଥ୍ୟର ସନ୍ଧାନ ଦେଇଛନ୍ତି । ମାନବ ସଭ୍ୟତାର କ୍ରମବିକାଶ ଉପରେ ତାହା ଯଥେଷ୍ଟ ଆଲୋକ ସଂପାତ କରିଛି ।

## ଲୋକ ମିଥ୍ ଅଧ୍ୟୟନର ପଦ୍ଧତି—

ଲୋକ-ମିଥ୍ ଲୋକତତ୍ତ୍ୱର ଅନ୍ତର୍ଗତ; ଏବଂ ଲୋକତତ୍ତ୍ୱ ଏ ଦିଗରେ କଳା, ସାହିତ୍ୟ, ଇତିହାସ, ଦର୍ଶନ ସହିତ ଓ ଅନ୍ୟ ଦିଗରେ ସମାଜ ବିଜ୍ଞାନ ଓ ସାଂସ୍କୃତିକ ନୃ-ବିଜ୍ଞାନ (Cultural Anthropology) ସହିତ ସଂପୃକ୍ତ । ପୂର୍ବ ଭାରତର ହିନ୍ଦୁ ଲୋକ ମିଥ୍ ତତ୍ତ୍ୱର ଅନୁସନ୍ଧାନ ଓ ବିଶ୍ଳେଷଣ କ୍ଷେତ୍ରରେ ବ୍ରୋନିସ୍ଲାଓ ମାଲିନୋସ୍କିଙ୍କ 'ମିଥ୍ ଇନ୍ ପ୍ରିମିଟିଭ ସାଇକୋଲୋଜି' (Myth in Primitive Psychology) ପ୍ରବାଦକୁ ଏକ ମଡ଼େଲ ବା ଆଦର୍ଶ ରୂପେ ଗ୍ରହଣ କରିଯାଇ ପାରେ । ସେ ଦୃଷ୍ଟିରୁ ବର୍ତ୍ତମାନ ପ୍ରଚଳିତ ଜୀବନ୍ତ ଲୋକ ମିଥ୍‌ଗୁଡ଼ିକ ଏହାର ଆଲୋଚନା ପରିସରଭୁକ୍ତ ।

## ହିନ୍ଦୁ ମିଥ୍ ତତ୍ତ୍ୱ—

ତଥ୍ୟ ସଂଗ୍ରହର ପନ୍ଥାକୁ ସହଜତର କରିବା ପାଇଁ ପ୍ରଥମେ ହିନ୍ଦୁ ମିଥ୍ ଓ ହିନ୍ଦୁ ଲୋକମିଥ୍ ମଧ୍ୟରେ ପାର୍ଥକ୍ୟ ସୂଚିତ ହେବା ବାଞ୍ଛନୀୟ । ହିନ୍ଦୁ ମିଥ୍ ତତ୍ତ୍ୱକୁ ମୁଖ୍ୟତଃ ତିନି ପ୍ରଧାନ ଭାଗରେ ବିଭକ୍ତ କରିଯାଇ ପାରେ । ଯଥା— (୧) ବୈଦିକ ମିଥ୍ ତତ୍ତ୍ୱ, (୨) ପୌରାଣିକ ମିଥ୍ ତତ୍ତ୍ୱ ଏବଂ (୩) ଲୋକ ମିଥ୍ ତତ୍ତ୍ୱ ।

## (୧) ବୈଦିକ ମିଥ୍ ତତ୍ତ୍ୱ ବା ବୈଦିକ ପୁରାଣକଳ୍ପ—

ପ୍ରାଚୀନ ଭାରତୀୟ ଆର୍ଯ୍ୟ ବୈଦିକ ଋଷି ବ୍ରାହ୍ମଣାଦିଗଣ ଯେଉଁ ମିଥ୍ ସକଳ ଓ ପରମ୍ପରର ବିଶ୍ୱାସୀ ଥିଲେ, ସ୍ଥୂଳତଃ ତାହା ହିଁ ବୈଦିକ ମିଥ୍ । ବେଦ-ଉପନିଷଦ-ବ୍ରାହ୍ମଣାଦି ବୈଦିକ ଗ୍ରନ୍ଥରେ ସେ ସବୁର ପରିଚୟ ନିହିତ ଅଛି । 'ଋକ୍‌ବେଦ' ହେଉଛି ସର୍ବପ୍ରାଚୀନ ଆର୍ଯ୍ୟ ରଚନା । ଏଣୁ ତାହା ପ୍ରାଚୀନତମ ବୈଦିକ ପୁରାଣକଳ୍ପର ଆଧାର । ବିଭିନ୍ନ ସ୍ତୋତ୍ର ଓ ସୂକ୍ତରେ ବୈଦିକ ଦେବ-ଗଣଙ୍କର କ୍ରିୟାକଳାପ ଓ କୀର୍ତ୍ତି ବର୍ଣ୍ଣନା ମଧ୍ୟ ଦେଇ ଯେଉଁସବୁ ଆଖ୍ୟାୟିକାର ଉଲ୍ଲେଖ କରାଯାଇଛି ସେସବୁ ବୈଦିକ ମିଥ୍ ତତ୍ତ୍ୱର ଅନ୍ତର୍ଗତ । ବୈଦିକ ରଚନାରେ ଶ୍ରେଷ୍ଠସ୍ଥାନ ଅଧିକାର ଏପରି କେତେକ ବହୁ କୀର୍ତ୍ତିତ ଦେବତା ଅଛନ୍ତି; ସେମାନଙ୍କର ମାନ୍ୟତା ହିନ୍ଦୁ ଧାର୍ମିକ ଅନୁଷ୍ଠାନରେ ଏବଂ ଆଶାତୀତ ଭାବରେ ଗୌଣ ହୋଇ ପଡ଼ିଛି । ଯଥା—ଇନ୍ଦ୍ର ଓ ବରୁଣ, ଏବେ ହିନ୍ଦୁମାନେ ଇନ୍ଦ୍ରପୂଜା ଓ ବରୁଣ ପୂଜା କରିବାର ଦୃଷ୍ଟାନ୍ତ ବିରଳ । ଯଜ୍ଞକର୍ମ ବ୍ୟତୀତ ଏମାନଙ୍କ ନାମ ଅନ୍ୟତ୍ର କ୍ୱଚିତ୍ ଉଚ୍ଚାରିତ ହୋଇଥାଏ ।

ଅନେକ ବୈଦିକ ଦେବତା ସମ୍ପୂର୍ଣ୍ଣ ବିସ୍ମୃତି ଗର୍ଭରେ ଲୀନ ହୋଇ-ଯାଇଛନ୍ତି । ହିନ୍ଦୁମାନେ ସେମାନଙ୍କର ଶାସ୍ତ୍ରୀୟ ବିବରଣୀ ଜାଣିବା ଦିଗରେ ବର୍ତ୍ତମାନ ଉଦାସୀନ ରହୁଛନ୍ତି । କାରଣ ସେମାନେ ଏବେ ଆଉ ଆତ୍ମର-ବିଶ୍ୱର, ଧର୍ମ, ପାପ ପୁଣ୍ୟ, କ୍ରିୟାନୁଷ୍ଠାନ ଓ ମାନବ ଭାଗ୍ୟ ସହିତ ଜଡ଼ିତ ନୁହନ୍ତି । ସେମାନଙ୍କ ନିକଟରେ ଆତ୍ମ ସମର୍ପଣ କରିବାର ଆବଶ୍ୟକତା କୌଣସି ହିନ୍ଦୁ ଉପଲବ୍ଧି କରେନାହିଁ । ଏହାର ଶ୍ରେଷ୍ଠତମ ଉଦାହରଣ ଭାବରେ ବୈଦିକ ଦେବତା 'ଦ୍ୟୋସ୍ପିତା' (ଆକାଶ ପିତା)ଙ୍କୁ ଗ୍ରହଣ କରାଯାଇ-ପାରେ । ଋକ୍‌ବେଦରେ 'ପୃଥିବୀମାତା' ସଙ୍ଗେ 'ଦ୍ୟୋସ୍ପିତା'ଙ୍କର ସ୍ତବ ଥିବା ପରିଲକ୍ଷିତ ହୁଏ ।

ବର୍ତ୍ତମାନ କାଳରେ ତାଙ୍କର କୌଣସି ଦେବରୂପ ବିଷୟରେ ଲୋକେ ସଚେତନ ନୁହନ୍ତି । କିନ୍ତୁ ବେଦ ବର୍ଣ୍ଣିତ ମିଥ୍‌ଗୁଡିକ ଯେ ଏକଦା ବେଦପନ୍ଥୀ ସମାଜ ବ୍ୟବସ୍ଥାର ପ୍ରାଣକେନ୍ଦ୍ରରେ ଅବସ୍ଥିତ ଥିଲା ଓ ସେଗୁଡିକର କାର୍ଯ୍ୟକାରିତା ଯେ ଆଦୌ କମ୍ ନ ଥିଲା ଏହା ଅନୁମାନ କରାଯାଇ ପାରେ । କାଳକ୍ରମେ ଆର୍ଯ୍ୟ ଓ ଅନାର୍ଯ୍ୟ ସମ୍ପ୍ରଦାୟଙ୍କ ମଧ୍ୟରେ ସାଂସ୍କୃତିକ ଆଦାନପ୍ରଦାନ ଘଟିଥିବା ଯୋଗୁଁ ବୈଦିକ ସମାଜ ବ୍ୟବସ୍ଥାରେ କେତେକ ପରିବର୍ତ୍ତନ ସାଧିତ ହେଲା । ଉକ୍ତ ପରିବର୍ତ୍ତିତ ନୂତନ ପୃଷ୍ଠଭୂମି ଉପରେ ଯେଉଁ ନୂତନ ମିଥ୍ ସକଳ ମାଧ୍ୟମରେ ଯେଉଁ ନୂତନ ଦେବଗଣ ପର୍ଯ୍ୟାପ୍ତ ରୂପେ ଦେଖାଦେଲେ, କ୍ରମେ କ୍ରମେ ସେହିସବୁ ମିଥ୍ ଓ ଦେବତାଙ୍କ ଦ୍ୱାରା ବୈଦିକ ମିଥ୍ ଓ ବୈଦିକ ଦେବତା ହେଲେ ସମାଜଚ୍ୟୁତ । ଏହି ନବୀନ ମିଥ୍‌ମାଳା ଓ ନବୀନ ଦେବଗଣଙ୍କୁ ଉପଜୀବ୍ୟ କରି ଯେଉଁ ଗ୍ରନ୍ଥ ସକଳ ରଚିତ ହେଲା ତାହା 'ପୁରାଣ' ନାମରେ ଆଖ୍ୟାତ ।

## (୨) ପୌରାଣିକ ମିଥ୍ ତତ୍ତ୍ୱ—

ପୌରାଣିକ ମିଥ୍ ତତ୍ତ୍ୱ କହିଲେ ବେଦ ପରବର୍ତ୍ତୀ ଯୁଗରେ ପୁରାଣ ଓ ମହାକାବ୍ୟାଦି ରଚନା ସବୁଥିରେ ବର୍ଣ୍ଣିତ ମିଥ୍ ସମୂହକୁ ବୁଝାଏ । ଆର୍ଯ୍ୟ ଓ ଅନାର୍ଯ୍ୟ ସଂସ୍କୃତିର ଏକ ସମ୍ମିଶ୍ରଣର ଫଳରୂପେ ପୌରାଣିକ ମିଥ୍‌ମାଳାକୁ ଗ୍ରହଣ କରାଯାଇ ପାରେ । ପୁରାଣକୁ କିନ୍ତୁ ବୈଦିକ ଧାରାଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ କରାଯାଇ ନ ଥିଲା । ପୁରାଣ ସୂତ୍ରରେ ଯେଉଁ ମିଥ୍ ଓ ଦେବତାଙ୍କର ପ୍ରକାଶ ଘଟିଲା, ସେମାନଙ୍କ ମଧ୍ୟରୁ କେତେକଙ୍କୁ ବୈଦିକ ଧାରା ସହିତ ଓ ଅନ୍ୟ କେତେକଙ୍କୁ ସୃଷ୍ଟିର ଆଦ୍ୟକାଳ ସହିତ ଚତୁରତା ସହକାରେ ସଂଯୁକ୍ତ କରାଯାଇଥିଲା । ପୁରାଣପୁରୀୟ ରଚନାମାନଙ୍କ ମଧ୍ୟରେ ରାମାୟଣ ଓ ମହାଭାରତ ସହିତ

ମହାକାବ୍ୟ, ଅଷ୍ଟାଦଶ ପୁରାଣ ଯଥା—(ବ୍ରହ୍ମ, ପଦ୍ମ, ବିଷ୍ଣୁ, ଶିବ, ଭାଗବତ, ନାରଦ, ମାର୍କଣ୍ଡ, ଅଗ୍ନି, ଭବିଷ୍ୟ, ବ୍ରହ୍ମ ବୈବର୍ତ୍ତ, ଲିଙ୍ଗ, ବରାହ, ସ୍କନ୍ଦ, ବାମନ, କୂର୍ମ, ମତ୍ସ୍ୟ, ଗରୁଡ଼, ବ୍ରହ୍ମାଣ୍ଡ) ଓ ଅନେକ ଉପପୁରାଣ, ଛତିଶ ସ୍ମୃତି (ମନୁ, ଅଙ୍ଗିରା, ବ୍ୟାସ ପ୍ରଭୃତି ଛତିଶ ଋଷିଙ୍କ ଧର୍ମଶାସ୍ତ୍ର) ଓ ଗୀତା (ବ୍ରହ୍ମ ଗୀତା, ଶିବ ଗୀତା, ରାମ ଗୀତା, ସାବିତ୍ରୀ ଗୀତା, ପାଣ୍ଡବ ଗୀତା ଓ ଭାଗବତ ଗୀତା ଇତ୍ୟାଦି) ପ୍ରଧାନ ସ୍ଥାନ ଅଧିକାର କରିଛନ୍ତି । ଏସବୁ ରଚନାରେ ଇନ୍ଦ୍ର, ବରୁଣ, ଯମ ପ୍ରଭୃତି ବୈଦିକ ଦେବତାଙ୍କର ସ୍ଥାନ ଓ ସମ୍ମାନ ଗୌଣ ଏବଂ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଓ ସେମାନଙ୍କର ଭାର୍ଯ୍ୟାଗଣଙ୍କ ସ୍ଥାନ ଓ ସମ୍ମାନ ହେଲା ପ୍ରଧାନ । ବୈଦିକ ଓ ପୌରାଣିକ ହିନ୍ଦୁ ମିଥ୍‌ମାଳାକୁ ଶାସ୍ତ୍ରୀୟ ମିଥ୍ ଭାବରେ ଗ୍ରହଣ କରାଯାଇପାରେ, ଯେହେତୁ ବେଦ ପୁରାଣାଦି ପ୍ରାଚୀନ ସଂସ୍କୃତ ଭାଷାର ରଚିତ ଗ୍ରନ୍ଥ ସକଳ ସାଧାରଣ ହିନ୍ଦୁ ନିକଟରେ 'ଶାସ୍ତ୍ର' ନାମରେ ପରିଚିତ । ଶିଳ୍ପ ସାହିତ୍ୟ ଓ ପୁରାଣର ସମାବେଶରେ ଶାସ୍ତ୍ରୀୟ ମିଥ୍‌ର କଳେବର ମଣ୍ଡିତ, ଦର୍ଶନ ମଧ୍ୟ କେତେକ କ୍ଷେତ୍ରରେ ଏହାର ଭୂଷଣ ରୂପେ ବିବେଚିତ । ପୁରୁଷ ପୁରୁଷ ଧରି ଏହି ପୌରାଣିକ ତଥା ଶାସ୍ତ୍ରୀୟ ମିଥ୍ ହିନ୍ଦୁ ସମାଜର ପରମ୍ପରା ଓ ବିଧିର ନିର୍ଦ୍ଦେଶକ ଓ ନିୟାମକ ଥିଲା । ଗୋଟିଏ ଗ୍ରନ୍ଥରେ ଅନେକ ସଂଲଗ୍ନ ଅଧ୍ୟାୟ ସଦୃଶ ହିନ୍ଦୁ ସମାଜ ନାନା ଧାର୍ମିକ ସମ୍ପ୍ରଦାୟରେ ବିଭକ୍ତ । ଯଥା—ବୈଷ୍ଣବ, ଶୈବ, ଶାକ୍ତ, ଗାଣପତ୍ୟ, ସୌର ପ୍ରଭୃତି । ପ୍ରତି ସମ୍ପ୍ରଦାୟର ନିଜସ୍ୱ ମିଥ୍, ନିଜସ୍ୱ ପୂଜାବିଧି, ବିଶ୍ୱାସ ଏବଂ ପୁରାଣ ରହିଛି । ଅଥଚ ସମସ୍ତ ପାର୍ଥକ୍ୟ ସତ୍ତ୍ୱେ ସମ୍ପ୍ରଦାୟ ମଧ୍ୟରେ ଏକ ସ୍ଥାୟୀ ସଂଯୋଗ ବା ସଂଲଗ୍ନତା ବିରାଜମାନ ଯାହାକି ସେଗୁଡ଼ିକୁ ଏକ ପରିବାରଭୁକ୍ତ (ହିନ୍ଦୁ) କରିଛି ।

## (୩) ଲୋକମିଥ୍ ତତ୍ତ୍ୱ—

ଲୋକ ପୂଜିତ ସମସ୍ତ ଦେବତା ହିନ୍ଦୁ ଶାସ୍ତ୍ରାନୁମୋଦିତ ହୋଇପାରି ନାହାନ୍ତି କିମ୍ବା ଲୋକ ପ୍ରଚଳିତ ସମସ୍ତ ମିଥ୍ ହିନ୍ଦୁ ଶାସ୍ତ୍ର ପୁରାଣାଦିରେ ସଂଶ୍ଳିଷ୍ଟ ହୋଇପାରି ନାହିଁ । ଗୋଟିଏ ବିସ୍ମୟକର ତାତ୍ପର୍ଯ୍ୟ ହେଉଛି ଯେ ଭାରତବର୍ଷର ଗ୍ରାମେ ଗ୍ରାମେ ଲୋକ ଦେବତା ଯେପରି ପର୍ଯ୍ୟାପ୍ତ ସେହିପରି ଲୋକମିଥ୍ ମଧ୍ୟ ବହୁ ସଂଖ୍ୟକ, ଲୋକୋତ୍ସବ, ଲୋକାଚାର ଓ ଲୋକାନୁଷ୍ଠାନ ସହିତ ଲୋକଦେବତା ଓ ଲୋକମିଥ୍ ନିବିଡ଼ ଭାବରେ ଜଡ଼ିତ ଏବଂ ଲୋକତତ୍ତ୍ୱର ସୀମାନ୍ତର୍ଗତ । ଏକଦା ହିନ୍ଦୁ ଶାସ୍ତ୍ର ପୁରାଣ ପ୍ରଭୃତି କେବଳ ସଂସ୍କୃତ ଭାଷାରେ ଲିଖିତ ଥିଲା ଏବଂ ମିଥ୍ ପରିଚୟ ଥିଲା ଏକାନ୍ତ ଭାବରେ ସଂସ୍କୃତ ଜ୍ଞାନ ସାପେକ୍ଷ । ଯେତେବେଳେ ଓଡ଼ିଆ,

ବଙ୍ଗଳା, ଅସମୀୟା, ଗୁଜୁରାଟୀ, ମରାଠୀ ପ୍ରଭୃତି ନବ୍ୟ ଭାରତୀୟ ଆର୍ଯ୍ୟ ଭାଷାଗୁଡ଼ିକ କେବଳ କଥିତ ପ୍ରାକୃତ ଭାଷାର ମାଧ୍ୟମ ଭାବରେ ଗୃହୀତ ହୋଇଥିଲା । ଏଣୁ ସଂସ୍କୃତ ଅନଭିଜ୍ଞ ଲୋକେ ଶାସ୍ତ୍ରୀୟ ମିଥ୍ ଜାଣିବା ପାଇଁ ସଂସ୍କୃତଜ୍ଞଙ୍କ ଉପରେ ନିର୍ଭର କରୁଥିଲେ; କିନ୍ତୁ ଯେଉଁ ମିଥ୍ ସକଳ କେବଳ ଅଞ୍ଚଳ ବିଶେଷରେ ସୃଷ୍ଟି ହୋଇଥିଲା; ସେସବୁ ଲୋକମୁଖରେ କଥିତ ଭାଷାରେ ବଞ୍ଚି ରହିଥିଲା । କାଳକ୍ରମେ ଯେତେବେଳେ ନୂତନ ଭାରତୀୟ ଆର୍ଯ୍ୟ ଭାଷାଗୁଡ଼ିକ ଓ ଅନ୍ୟାନ୍ୟ ଦ୍ରାବିଡ଼ୀୟ ଭାଷା ମଧ୍ୟ ଲିଖିତ ଭାଷାର ରୂପ ଗ୍ରହଣ କଲେ ଓ ବିକଶିତ ହେଲେ ସେତେବେଳେ ପ୍ରାନ୍ତୀୟ ଭାଷାର ଲେଖକମାନେ ପ୍ରତିଷ୍ଠିତ ହିନ୍ଦୁ ଗ୍ରନ୍ଥଗୁଡ଼ିକ ଭାଷାନ୍ତର କଲେ । ବିଶେଷତଃ ବହୁ ହିନ୍ଦୁ ମିଥ୍ ପରିପୂର୍ଣ୍ଣ ବିଖ୍ୟାତ ମହାକାବ୍ୟ ଯଥା ରାମାୟଣ, ମହାଭାରତ ଏବଂ ଭାଗବତ ପୁରାଣ ପ୍ରାଥମିକ ପର୍ଯ୍ୟାୟରେ ଭାଷାନ୍ତରିତ ହୋଇଥିବା ପରିଲକ୍ଷିତ ହୁଏ । ଓଡ଼ିଆ ଭାଷାରେ ମଧ୍ୟ ତିନୋଟି ଶ୍ରେଷ୍ଠ ଓ ସଫଳ ଗ୍ରନ୍ଥ ହେଉଛି ସାରଳା ଦାସଙ୍କ ମହାଭାରତ, ବଳରାମଙ୍କ ଦାଣ୍ଡି ରାମାୟଣ ଓ ଜଗନ୍ନାଥଙ୍କ ଭାଗବତ । ଏହି ପ୍ରାନ୍ତୀୟ ଲେଖକମାନେ କେବଳ ଅନୁବାଦ କରି ନ ଥିଲେ ବରଂ ନିଜ ନିଜ ଅଞ୍ଚଳର ଧାର୍ମିକ ବିଶେଷତ୍ୱ, ସାମାଜିକ ଆଚାର ବିଚାର, ଲୋକପର୍ବ, ଲୋକାନୁଷ୍ଠାନ, କିମ୍ବଦନ୍ତୀ ଏବଂ ଲୋକ ପ୍ରଚଳିତ ମିଥ୍ ସହିତ ପରିଚିତ ଥିଲେ ଏବଂ ଅତ୍ୟନ୍ତ ଚତୁରତାର ସହିତ ସେସବୁକୁ ସଂକଳିତ ଗ୍ରନ୍ଥରେ ସଂଯୁକ୍ତ କରିଥିଲେ ।

## ବିବର୍ତ୍ତିତ ମିଥିକ୍ ଧାରା : ଇଂରାଜୀ କାବ୍ୟ ପରମ୍ପରା—

ଇଂରାଜୀ କାବ୍ୟ ପରମ୍ପରାରେ ମିଥ୍ର ଏକ ସୁନିର୍ଦ୍ଦିଷ୍ଟ ବିବର୍ତ୍ତିନ ଧାରା ଲକ୍ଷ୍ୟ କରାଯାଏ । ସ୍ପେନସର୍ଙ୍କ 'ଫେୟାରୀ କୁଇନ୍' (Faerie queen) ତଥା ଇଲିୟଟଙ୍କ 'ଦ ୱେଷ୍ଟଲେଣ୍ଡ' (The wasteland) ତଥା ମିଲଟନ୍ଙ୍କ 'ପାରାଡାଇଲ୍ ଲଷ୍ଟ' (Paradise lost) ପର୍ଯ୍ୟନ୍ତ ଦୃକ୍ପାତ କଲେ ଏହି କାବ୍ୟିକ ବିବର୍ତ୍ତିନ ପ୍ରକ୍ରିୟା ସୁସ୍ପଷ୍ଟ ହୁଏ । ଇଂରାଜୀ କବିତାରେ ପ୍ରୟୋଗ କରାଯାଇଥିବା ଏହି ମିଥ୍ଗୁଚ୍ଛ ମୁଖ୍ୟତଃ ଗ୍ରୀକ୍ ପରମ୍ପରାରୁ ଆହୃତ । ଗ୍ରୀକ୍ ମିଥ୍ର ଏହି ଭିତ୍ତିଭୂମି ଉପରେ ଇଂରେଜ କବିଗଣ ସ୍ୱକୀୟ କାବ୍ୟିକ ଆଭିମୁଖ୍ୟ ପ୍ରସ୍ତୁତ କରିଛନ୍ତି । ସ୍ପେନସର୍ଙ୍କ 'ଫେୟାରୀ କୁଇନ୍'ର ଏକ ନୈତିକ ଭାବାଦର୍ଶ ଗ୍ରୀକ୍ ପରମ୍ପରାର 'ଆର୍ଥରିଆନ୍ ମିଥ୍' ଉପରେ ଆଧାରିତ । ପରୀ କଥାଭଳି ଢଙ୍ଗରେ ବହୁ ଅଲୌକିକ ଉପାଦାନ (Supernatural element) ସଂଯୋଜିତ ହୋଇଥିବାର ଲକ୍ଷ୍ୟ କରାଯାଏ । ଏହି ଆର୍ଥରିଆନ୍ ମିଥ୍ ଉପରେ ଆଧାରିତ 'ଫେଅରି କୁଇନ୍'ର କାବ୍ୟିକ ବିବର୍ତ୍ତିନ ଧାରା ହେଉଛି ଏହିପରି—'ପରୀରାଣୀ

ଗ୍ଲୋରିଆନା (Gloriana)ଙ୍କ ବାର୍ଷିକ ଭୋଜିସଭା ଦ୍ୱାଦଶଦିନ ପର୍ଯ୍ୟନ୍ତ ଅନୁଷ୍ଠିତ ହୁଏ । ପ୍ରତିଦିନ ଜଣେ ଜଣେ ନାଇଟ୍ (Knight) ଏକ ଏକ ସମସ୍ୟାର ସମାଧାନ କରନ୍ତି । ଦୁଃସାହସିକ ଅଭିଯାନ ଦ୍ୱାରା ଏହି ସମସ୍ୟା ସମାହିତ ହୁଏ । ସେଦିନ ଭୋଜିସଭାରେ ଆର୍ଥର ନାମକ ଜଣେ ଯୁବକଙ୍କୁ ବିଦୂଷକ ସଦୃଶ (Clownish) ବେଶଭୂଷାରେ ତଳେ ବସିଥିବାର ଦେଖାଗଲା । ଏହି ସମୟରେ ଉନା (Una) ନାମକ ଜଣେ ତରୁଣୀ ପ୍ରବେଶ କରି କହିଲେ ଯେ ତାଙ୍କ ପିତାମାତାଙ୍କୁ ଗୋଟିଏ ଡ୍ରାଗନ୍ ଏକ ଦୁର୍ଗ (Castle)ରେ ବନ୍ଦୀ କରି ରଖିଛି । ସେମାନଙ୍କୁ ତୁରନ୍ତ ଉଦ୍ଧାର କରାଯିବା ଆବଶ୍ୟକ । ଏହି ସମୟରେ ଆର୍ଥର କହିଲେ ଯେ ସେ ଏହି କାର୍ଯ୍ୟ ସମ୍ପନ୍ନ କରିପାରିବେ । ଏହାପରେ ବୀରତ୍ୱପୂର୍ଣ୍ଣ ପୋଷାକ ପିନ୍ଧି ସେ ଦୁଃସାହସିକ ଅଭିଯାନରେ ବାହାରିଲେ । ଗ୍ରୀକ୍ ମିଥ୍‌ର ଏହି ପଞ୍ଜର ଉପରେ ଶଂସିତ କାବ୍ୟର ନୈତିକ ରୂପକ (Moral Allegory) ଓ ରାଜନୈତିକ ରୂପକ (Political Allegory)ର ସମନ୍ୱିତ ଅଭିବ୍ୟକ୍ତି ଲକ୍ଷ୍ୟ କରାଯାଏ । କାଳର ଦ୍ୱନ୍ଦ୍ୱ, ସଂଘର୍ଷ ତଥା ଆଧ୍ୟାତ୍ମିକ ଅବକ୍ଷୟ ମଧ୍ୟରେ ମାନବାତ୍ମାର ବିପର୍ଯ୍ୟୟ କବି ଟି: ଏସ୍: ଇଲିୟଟ୍‌ଙ୍କ 'ଦି ୱେଷ୍ଟଲାଣ୍ଡ' (The wasteland)ର କାବ୍ୟିକ ଅଭିବ୍ୟକ୍ତି ମାଧ୍ୟମରେ ପରିସ୍ଫୁଟ ହୋଇଛି । ଦ୍ୱିତୀୟ ବିଶ୍ୱଯୁଦ୍ଧୋତ୍ତର ପୃଥିବୀ ହିଁ ଏହାର କ୍ୟାନଭାସ୍ । ଯୁଦ୍ଧୋତ୍ତର ପୃଥିବୀର ଅବକ୍ଷୟ ଓ ଯନ୍ତ୍ରଣା ଯୀଶୁଙ୍କ ରକ୍ତ ପାତ୍ର, (Holi Grail) ସୁରକ୍ଷିତ ପାତ୍ର (Grail Castle) ଚତୁଃପାର୍ଶ୍ୱସ୍ଥ ଊଷର ଭୂମି ମାଧ୍ୟମରେ ସୂଚ୍ୟଇ ଦିଆଯାଇଛି, "Where the Sun beats / And the dead tree gives no shelter / the criket no relief / And the dry stone no sound of water."

ଏଲିୟଟ୍‌ଙ୍କ ମୃତ ଉପତ୍ୟକାରେ ବସନ୍ତର ଶୁଭାଗମନ ପାଇଁ ମଣିଷ ମନରେ ପ୍ରତ୍ୟାଶା ନାହିଁ । ଶୀତର ଶୁଷ୍କ ସଂସାରରେ ସେମାନେ ସନ୍ତୁଷ୍ଟ । ଐତିହ୍ୟ ଅଥବା ସଂସ୍କୃତି ପ୍ରତି ସେମାନଙ୍କର ବିଶ୍ୱସ୍ତତା ନାହିଁ । ଏହିଭଳି ଏକ ଊଷର ଭୂଇଁରେ ଏଲିୟଟ୍‌ଙ୍କ ପ୍ରସାଦ (Grail castle) ପ୍ରତିଷ୍ଠିତ । ଏହାର ରକ୍ଷକ ହେଉଛନ୍ତି କୈବର୍ତ୍ତରାଜ । ଏହି କୈବର୍ତ୍ତରାଜଙ୍କ ଗୋଇଠିରେ ଏକ କ୍ଷତଚିହ୍ନ । ସେ ନପୁଂସକ । କେବଳ ରକ୍ତପାତ୍ର ଅନୁସନ୍ଧାନକାରୀ ନାଇଟ୍ (Knight)ମାନଙ୍କ ଦ୍ୱାରା ତାଙ୍କର କ୍ଷତ ଆରୋଗ୍ୟ ହେବ । କ୍ଷତ ଆରୋଗ୍ୟ ହେବାମାତ୍ରେ ଊଷର ଭୂଇଁରେ ବନ୍ଧ୍ୟାତ୍ୱ ଅପସରିଯିବ । କବି ଏହି କାବ୍ୟର ବିଶ୍ଳେଷଣ କରିଛନ୍ତି ଅନ୍ଧଦ୍ରଷ୍ଟା ଟାଇରେସିଅସ୍‌ଙ୍କ ଅନ୍ତର୍ଦୃଷ୍ଟିରେ । ଟାଇରେସିଆସ୍ ଗ୍ରୀକ୍ ପୁରାଣର

ଏକ ଚରିତ୍ର । ଗ୍ରୀକ୍ ପରମ୍ପରାରେ ଏହି ଟାଇରେସିଆସ୍ ମଣିଷର ଅନ୍ତର୍ଦୃଷ୍ଟିର ପ୍ରତୀକ । 'ୱେଷ୍ଟଲ୍ୟାଣ୍ଡ'ର 'ଫିଲୋମେଲାଉପାଖ୍ୟାନ' ମଧ୍ୟ ଗ୍ରୀକ୍ ପୁରାଣରୁ ଆହୃତ । ବସ୍ତୁତଃ ଗ୍ରୀକ୍ ମିଥ୍‌ର ଏହି କାହାଣୀ ସାଂପ୍ରତିକ କାଳର ହ୍ରାସ ପାଶବିକତା ଓ ଯୌନ ବୀଭତ୍ସତାର ସ୍ୱରୂପକୁ ପ୍ରମୂର୍ତ୍ତ କରୁଥିବା ଭଳି ମନେହୁଏ । ଏଠାରେ ପ୍ରତିଫଳିତ ସାଂପ୍ରତିକ ଜୀବନବୋଧ ସର୍ବଦା ଅବକ୍ଷୟଗ୍ରସ୍ତ । ସାଂସ୍କୃତିକ, ସାମାଜିକ ତଥା ଆଧ୍ୟାତ୍ମିକ ଅବକ୍ଷୟ ମଧ୍ୟରେ ମଣିଷର ଆତ୍ମିକ ମୃତ୍ୟୁ ଘଟିଛି । ଆଧୁନିକ ଜୀବନର ବନ୍ଧ୍ୟାତ୍ୱ ଓ ସ୍ଥାଣୁତ୍ୱକୁ କବି ଊଷର ଭୂମି ପ୍ରତୀକ ମାଧ୍ୟମରେ ସୂଚାଇଛନ୍ତି । ଏହି ପରିପ୍ରେକ୍ଷୀରେ ବିଶ୍ଳେଷଣ କଲାବେଳେ ମନେହୁଏ ମିଥିକ୍ କବିତାରେ ମିଥ୍ କେବଳ ଏକ ବର୍ଣ୍ଣନାତ୍ମକ ପ୍ରକ୍ରିୟା ମାତ୍ର ନୁହେଁ ତାହାର ଏକ ସ୍ୱୟଂସମ୍ପୂର୍ଣ୍ଣ ସ୍ୱକୀୟ ବୈଶିଷ୍ଟ୍ୟ ରହିଛି ଯାହାକି ସମକାଳୀନ ଯୁଗଚେତନାର ସ୍ୱରୂପ ଉନ୍ମୋଚନ ତଥା ଅତୀତ ସହ ସଂପୃକ୍ତି ସମ୍ପର୍କରେ ସଚେତନ କରିଦେଇଛି । ସୁତରାଂ ମିଥ୍ ସ୍ଥିତିଶୀଳ ନୁହେଁ ଗତିଶୀଳ । ପରମ୍ପରା ଏହାର ଜନୟିତ୍ରୀ ହୋଇଥିଲେ ମଧ୍ୟ ବିଭିନ୍ନ ଯୁଗଚେତନା ଭିତ୍ତିରେ ଏହା ରୂପାନ୍ତରିତ ହୋଇଥାଏ । ଇଲିୟଟ୍‌ଙ୍କ ପରବର୍ତ୍ତୀ କାଳରେ ଇଂରେଜୀ ସାହିତ୍ୟରେ ବହୁ ମିଥିକ୍ କବିତା ରଚିତ ହୋଇଛି । ତନ୍ମଧ୍ୟରେ ମଧ୍ୟ ଯୁଗଚେତନାର ସଙ୍କେତ ରହିଛି । ଆଧୁନିକ ଓଡ଼ିଆ କବିତା ପରମ୍ପରା ବିଶେଷତଃ କବି ଗୁରୁପ୍ରସାଦଙ୍କ 'କାଳପୁରୁଷ'ରେ 'ୱେଷ୍ଟଲ୍ୟାଣ୍ଡ'ର ଏକ ପ୍ରତ୍ୟକ୍ଷ ପଦଧ୍ୱନି ଶୁଣିବାକୁ ମିଳେ । ସୀତାକାନ୍ତଙ୍କ 'ଅଷ୍ଟପଦୀ'ରେ ମଧ୍ୟ ଏହାର ପ୍ରଭାବ ଲକ୍ଷ୍ୟ କରାଯାଏ । ସେ ଯାହା ହେଉନା କାହିଁକି ମିଥ୍ ପ୍ରୟୋଗ ପରିପ୍ରେକ୍ଷୀରେ କେବଳ ପାଶ୍ଚାତ୍ୟ ନୁହେଁ ପ୍ରାଚ୍ୟ ଭାରତୀୟ ପରମ୍ପରା ପ୍ରତି ମଧ୍ୟ ଆଧୁନିକ କାବ୍ୟଚେତନା ଅନେକାଂଶ ଅନୁରକ୍ତ ।

## ଆଧୁନିକ ଓଡ଼ିଆ କବିତାର କ୍ରମବିକାଶରେ ମିଥ୍‌ର ଭୂମିକା--

ପାଶ୍ଚାତ୍ୟ ପରମ୍ପରା ଭଳି ଆଧୁନିକ ଓଡ଼ିଆ କବିତାର କ୍ରମବିକାଶରେ ମିଥ୍ ଏକ ବିଶିଷ୍ଟ ଭୂମିକା ଗ୍ରହଣ କରିଛି । ଆଧୁନିକ ଓଡ଼ିଆ କାବ୍ୟଧାରାର ଆଦ୍ୟ ସୂତ୍ରଧର ରାଧାନାଥଙ୍କଠାରୁ ଆରମ୍ଭ କରି ସତ୍ୟବାଦୀର ସାଧକ ନୀଳକଣ୍ଠଙ୍କ ପର୍ଯ୍ୟନ୍ତ; କବି ସଚ୍ଚିଦାନନ୍ଦ ରାଉତରାୟ, ଗୁରୁପ୍ରସାଦ ମହାନ୍ତି, ସୀତାକାନ୍ତ ମହାପାତ୍ର, ରମାକାନ୍ତ ରଥ, ଦୀପକ ମିଶ୍ର, ସୌଭାଗ୍ୟ ମିଶ୍ର, ରାଜେନ୍ଦ୍ର ପଣ୍ଡା, ସୌରୀନ୍ଦ୍ର ବାରିକ ଓ ପ୍ରତିଭା ଶତପଥୀ ପ୍ରମୁଖଙ୍କ କାବ୍ୟ ସୃଷ୍ଟି ପ୍ରତି ଦୃଷ୍ଟିପାତ କଲେ ମିଥ୍ ପ୍ରୟୋଗର ବୈଶିଷ୍ଟ୍ୟ ସ୍ପଷ୍ଟ ହୋଇଯାଏ । ରାଧାନାଥଙ୍କ ଉଭୟ

ଜାତୀୟତାବାଦୀ ତଥା ଇତିହାସ ଭିତ୍ତିକ (Pseudo Historic) ରୋମାଣ୍ଟିକ କାବ୍ୟ ଗ୍ରନ୍ଥରେ ବହୁ ପୌରାଣିକ ଘଟଣା, ଚରିତ୍ର ତଥା ସ୍ଥାନ ବିଶେଷର ନାମୋଲ୍ଲେଖ ରହିଛି । କିନ୍ତୁ 'ମହାଯାତ୍ରା' ବ୍ୟତୀତ ତାଙ୍କର 'ଦଶରଥ ବିୟୋଗ' ଓ 'ସାବିତ୍ରୀ ଚରିତ' ସମେତ ଅନ୍ୟ କୌଣସି କାବ୍ୟରେ ମିଥିକ୍ ଗଢ଼ଣ ଦେଖିବାକୁ ମିଳେନାହିଁ । ବସ୍ତୁତଃ 'ମହାଯାତ୍ରା'ରେ 'ମହାଭାରତ'ର 'ସ୍ୱର୍ଗାରୋହଣ ପର୍ବ' ଏକ ଉପାୟ ବା ମାଧ୍ୟମ ମାତ୍ର । ତାହାର ଉଦ୍ଦେଶ୍ୟ ବା ଲକ୍ଷ୍ୟ ହେଉଛି ମହାଭାରତୀୟ ସାଂସ୍କୃତିକ ଚେତନାର ପୁନଃ ଜାଗରଣ । ପୌରାଣିକ ପରିବେଶ ବା ଚେତନା ମାଧ୍ୟମରେ ହିଁ ପରାଧୀନ ଭାରତକୁ ବନ୍ଧନ ମୁକ୍ତ କରିବା ପାଇଁ ଆହ୍ୱାନ ଦିଆଯାଇଛି । ତାମିଲ ସାହିତ୍ୟରେ ସୁବ୍ରମନ୍ୟମ୍ ଭାରତୀଙ୍କ 'ପାଞ୍ଚାଲୀ ଶପଥମ୍' (୧୯୧୨)ରେ ଅନୁରୂପ କାବ୍ୟାଦର୍ଶ ତଥା ମିଥିକ୍ ଗଢ଼ଣ ଲକ୍ଷ୍ୟ କରାଯାଏ ।

ନୀଳକଣ୍ଠଙ୍କ ମୌଳିକ କାବ୍ୟ 'କୋଣାର୍କେ' ଓ 'ଖାରବେଳ'ରେ ମୁଖ୍ୟତଃ ଇତିହାସ ତଥା ଆପାତଃ ଇତିହାସ (Pseudo-History)ର ସଞ୍ଚରଣ ଘଟିଛି । ତହିଁରେ ପୌରାଣିକ ଘଟଣାର ସଂକ୍ଷିପ୍ତ ସୂଚନା ସ୍ଥଳବିଶେଷରେ ରହିଛି ସତ ମାତ୍ର ତାହାକୁ ମିଥ୍ ରୂପେ ଅଭିହିତ କରିହେବ ନାହିଁ । କାରଣ କବିତାରେ ମିଥ୍ ପ୍ରୟୋଗ କହିଲେ କେବଳ ପୌରାଣିକ ଚରିତ୍ର ବା ଘଟଣାର ନାମୋଲ୍ଲେଖକୁ ବୁଝାଏ ନାହିଁ ବରଂ ପୌରାଣିକ ଆଖ୍ୟାନ ଓ ଚରିତ୍ର ସାମ୍ପ୍ରତିକ କାଳ ସହ ଏକ ଯୋଗସୂତ୍ରରେ ଗ୍ରଥିତ ହୋଇ ସାମାଜିକ ତଥା ସାଂସ୍କୃତିକ ପ୍ରତ୍ୟୟଦୃଷ୍ଟି ପ୍ରକଟ ନ କଲେ ସାର୍ଥକ ମିଥ୍ ଧର୍ମୀ କବିତାର ଉଦ୍ଭବ ଘଟେ । ଏହି ପରିପ୍ରେକ୍ଷୀରେ ବିଶ୍ଳେଷଣ କଲାବେଳେ ବୈକୁଣ୍ଠନାଥଙ୍କ 'ସୀତା' ଓ 'କୁବୁଜା' ଆଦି କବିତାରେ ମଧ୍ଯ ମିଥ୍ ଚେତନାର ସ୍ୱାକ୍ଷର ମିଳେନାହିଁ । କିନ୍ତୁ ତାଙ୍କର 'ପାର୍ଥ ଅନୁଶୋଚନା' କବିତାରେ ମିଥ୍ ଚେତନା ମାଧ୍ୟମରେ ସାମ୍ପ୍ରତିକ କାଳର ହୃତ ପୌରୁଷକୁ ସୂଚାଇ ଦିଆଯାଇଛି—"ଅର୍ଜୁନ ଆଜି ବୀର୍ଯ୍ୟହୀନ / ଆଜି ଅବନତ ଶିର, କିଏ ଦିବ ପ୍ରତେ / କଥା କପଟତେ / ବୁଝିବେ ପ୍ରାଜ୍ଞ ଧୀର ।"

ଶ୍ରୀକୃଷ୍ଣଙ୍କ ମୃତ୍ୟୁ ପରେ ଅର୍ଜୁନଙ୍କ ଶୌର୍ଯ୍ୟ ଓ ବୀରତ୍ୱ ଶକ୍ତି ଅନ୍ତର୍ହିତ ହେଲା ବୋଲି ମହାଭାରତ ଲେଖକଙ୍କ ମତ । ସାମ୍ପ୍ରତିକ କାଳରେ ପରୋକ୍ଷରେ ଦୃପ୍ତ ମାନବୀୟ ମୂଲ୍ୟବୋଧର ମୃତ୍ୟୁ ଘଟିଛି । ସୁତରାଂ ଅର୍ଜୁନ ସ୍ୱାଭାବିକ ଭାବରେ ତାଙ୍କର ଯୋଦ୍ଧୃଶକ୍ତି ହରାଇ ବସିଛନ୍ତି । କାଳର ଏହି ଅବକ୍ଷୟ ମଧ୍ୟରେ ମାନବୀୟ ମୂଲ୍ୟବୋଧ କିଭଳି ଅନତିକ୍ରମ୍ୟ ହୋଇ ରହିଛି ତାହାର ସୂଚନା ମିଳେ କବି

ରାଧାମୋହନ ଗଡ଼ନାୟକଙ୍କ 'ଦୁଇଟି ଡାହ୍ୟାର ଡେଣା' କବିତାରେ—"ଦେଖି ଦେଖି ସେ ଡ଼େଣାର ତଳେ / ଦୀପ୍ତ ରୁଚିର ଶକୁନ୍ତଳାର ଅଶ୍ରୁକ ଆତ୍ମା ଝଳେ।" (୮୬-୫) ଶଂସିତ କବିତାର ଏ ଡେଣା ଏକ ଗୃଧ୍ରପକ୍ଷୀର । ଗୃଧ୍ରପକ୍ଷୀ ଏଠାରେ ବିପର୍ଯ୍ୟସ୍ତ ମାନବୀୟ ମୂଲ୍ୟବୋଧର ପ୍ରତୀକ । କିନ୍ତୁ ଏହି ବିପର୍ଯ୍ୟୟର ଅନ୍ତରାଳରେ ଏବେ ମଧ୍ୟ ଶକୁନ୍ତଳାର ଚିରନ୍ତନ ଆତ୍ମା ଉଜ୍ଜ୍ୱଳ ହୋଇ ଫୁଟିଉଠେ । ସକଳ ଅବକ୍ଷୟର ଅନ୍ଧାରକୁ ଭେଦକରି ଆଲୋକର ଦ୍ୟୁତି ଉଦ୍‌ଭାସିତ ହୁଏ । କବି ରାଉତରାୟଙ୍କ 'ରକ୍ତବୀଜର ଅଭିଯାନ' ଶୀର୍ଷକ କବିତାରେ ଶ୍ରୀକୃଷ୍ଣଙ୍କୁ ବିପ୍ଳବୀ ମାନବାତ୍ମାର ପ୍ରତୀକ ରୂପେ ଅବସ୍ଥାପିତ କରାଯାଇଛି । ଏହି ବିପ୍ଳବୀ ମାନବାତ୍ମା ପ୍ରତିକୂଳ ପରିସ୍ଥିତି ବିରୋଧରେ ସଂଗ୍ରାମ ଘୋଷଣା କରେ । ଏହି ପ୍ରତିକୂଳ ଶକ୍ତି ଏଠାରେ ରକ୍ତବୀର୍ଯ୍ୟ ରୂପେ ଦଣ୍ଡାୟମାନ । କବିତାର ପରବର୍ତ୍ତୀ ବିବର୍ତ୍ତନ ଧାରାରେ ଏହି ପ୍ରତିକୂଳ ଶକ୍ତିକୁ କଂସ ମିଥ୍ ସହିତ ସମନ୍ୱିତ କରାଯାଇଛି । ସଂଗ୍ରାମୀ ମାନବାତ୍ମା ଆହ୍ୱାନ ଜଣାଇ ଦୃପ୍ତ କଣ୍ଠରେ ଡାକୁଛି—"ଲକ୍ଷଶିର ସୁନାପଦ୍ମ ଯୋଗାଇଛୁ ଏତେଦିନ / ପଦ୍ମାବତୀର କି ଭାଙ୍ଗିଲି ଅଭିମାନ ? / ଆଉ ନୁହେଁ, ଆଉ ନୁହେଁ, ଆଉ ନୁହେଁ /—ଗୁହିଁ ଦେଖ ଛଳଛଳ ପ୍ରଭାତର ମୁହଁ ।" ଏପରିକି ପ୍ରତିକୂଳ ପରିବେଶ ମଧ୍ୟରେ ମାନବାତ୍ମା କିଭଳି ସଂଗ୍ରାମରତ ତା'ର ସୂଚନା ଦିଆଯାଇଛି । କବି ଅନନ୍ତ ପଟ୍ଟନାୟକଙ୍କ 'ଝରରେ ରୁଧିର' କବିତାରେ ଏକ ସମଧର୍ମୀ ମିଥ୍ ପ୍ରୟୋଗରେ—"ମୃତ୍ୟୁର ଜଳେ ପଦ୍ମିଶ ପଦ୍ମିଶ / ତୋଳେ ଯେ ତୋ ଲାଗି ରକ୍ତକହିଁ / କୃଷ୍ଣନାଗର ଦଂଶନେ ସେ କି ପଡ଼ିବ ନଇଁରେ ପଡ଼ିବ ନଇଁ ।" 'ଝରରେ ରୁଧିର' ଏକ ସାମାଜିକ ବିପ୍ଳବାତ୍ମକ କବିତା । ଏଥିରେ ମାର୍କସୀୟ ବାମପନ୍ଥୀ ଚେତନାର ସ୍ୱାକ୍ଷର ମଧ୍ୟ ସୁସ୍ପଷ୍ଟ । ଏହି ପରିପ୍ରେକ୍ଷୀରେ 'କୃଷ୍ଣ' ଶୋଷିତ ଗୋଷ୍ଠୀକୁ ପ୍ରତିନିଧିତ୍ୱ କରିଛନ୍ତି । 'ମୃତ୍ୟୁର ଜଳ' ଏଠାରେ ପ୍ରତିକୂଳ ପରିସ୍ଥିତିର ପ୍ରତୀକ । କଂସ ଶୋଷକ ଗୋଷ୍ଠୀର ବାହ୍ୟାଦ । 'କୃଷ୍ଣନାଗର ଦଂଶନ' ଏଠାରେ ସଂଗ୍ରାମକାଳୀନ ଦୁଃଖ ଓ ଯନ୍ତ୍ରଣାକୁ ସୂଚାଉଛି । କିନ୍ତୁ ସକଳ ଦୁଃଖ ଓ ହତାଶା ମଧ୍ୟରେ ମାନବାତ୍ମା ତା'ର ସ୍ୱାଧୀକାରବୋଧ ସାବ୍ୟସ୍ତ କରିବା ପାଇଁ ଅଙ୍ଗୀକାରବଦ୍ଧ । କବି ରାଉତରାୟଙ୍କ 'ଶିବାଗ୍ନି'ରେ କୃଷ୍ଣା ଓ କୁବୁଜାର ସୂର୍ଯ୍ୟ ପୂଜାର ସଙ୍କେତ ପ୍ରମୂର୍ତ୍ତି—"ଚାଲ ଚାଲ ଆଜି ସୂର୍ଯ୍ୟ ପୂଜା / ସୁନ୍ଦରୀ କରିବା ଏଇ କୃଷ୍ଣା ଓ କୁବ୍‌ଜା / ପୃଥିବୀରେ, ନୂଆ ରୂପେ ନୂଆ ରୂପାୟନେ ।"

ପୃଥିବୀରେ ନୂତନ ମୂଲ୍ୟବୋଧର ସର୍ଜନା ପାଇଁ ଏହି ସୂର୍ଯ୍ୟ ପୂଜାର ଆୟୋଜନ ଅଥଚ କୁବୁଜାଙ୍କର ସୂର୍ଯ୍ୟ ପୂଜାର ଦୃଷ୍ଟାନ୍ତ ପୌରାଣିକ ପରମ୍ପରାରେ

ଲକ୍ଷ୍ୟ କରାଯାଏ ନାହିଁ । ଏଭଳି ତପସ୍ୟା କରିଥିଲେ କୃଷ୍ଣ ବ୍ୟାଧିଗ୍ରସ୍ତ ଶାମ୍ବ । କବିତାର ପରବର୍ତ୍ତୀ ପର୍ଯ୍ୟାୟରେ 'ଗାନ୍ଧାରୀଙ୍କ ଗାନ୍ଧାରୀ ହସ୍ତିନା'ରେ ଗାନ୍ଧାରୀଙ୍କ ସହ ଗାନ୍ଧାରୀ ଓ ହସ୍ତିନାର ସମ୍ପର୍କ ଗ୍ରଥିତ ହୋଇଛି । ଯେତେଦୂର ମନେହୁଏ ଏହାଦ୍ୱାରା କୌଣସି ସୁସ୍ପଷ୍ଟ କାବ୍ୟିକ ଉଦ୍ଦେଶ୍ୟ ସାଧିତ ହୋଇ ପାରିନାହିଁ । 'ପାଣ୍ଡୁଲିପି'ର 'କେଶ' ଶୀର୍ଷକ କବିତାରେ 'କେଶ' ଲୌକିକ କଳ୍ପନାର ଫରୁଆ ଭିତରେ ରହିଥିବା ଯାଉଥିବା ରାଜକେମାର ବାରହାତ ଲମ୍ବ ବେଣୀର କେଶ ନୁହେଁ । ବରଂ ପକ୍ଷାନ୍ତରେ ଏହା ଏକ ଯୁଗଚେତନାର ଅପମୃତ୍ୟୁର ବାହକ । "ଦୂରକରି ଅରାଜକ ରଜନୀର ଅଙ୍କ / ମୃତ୍ୟୁ ପରି ଆସେ ଘୋଟି ମୋହମୟ ଆଶ୍ଚର୍ଯ୍ୟ ଅନଳ / ଶ୍ୟାମଳ ସର୍ପିଳ ଶ୍ଳଥ ଏଇ କ୍ଷିପ୍ର କେଶର ବନ୍ୟାରେ / ହସ୍ତିନାର ସ୍ୱର୍ଣ୍ଣଚୂଡ଼ା ଇନ୍ଦ୍ରନୀଳ ମହମ ମିନାରେ, ଭସାଇ କେ ନିଏ ନାହିଁ ? । ମରଣର ଝଞ୍ଜ୍ଷଣ ଉପହାସ ଭଙ୍ଗାଗଢ଼ା ମଧ୍ୟେ ରଚେ ଆଜି ଏକ ବିଚିତ୍ର ସମାସ ।"

'ଭଙ୍ଗା' ଓ 'ଗଢ଼ା'—ବିଲୟ ଓ ପୁନଃସୃଷ୍ଟିର ଦ୍ୟୋତକ ମତ୍ଵଣ । ଜରାଜୀର୍ଣ୍ଣ ଯୁଗଚେତନାର ବିଲୟ ପରେ ଏହି ମହାକାଳ ଏକ ନୂତନ ସମୃଦ୍ଧ ସୃଷ୍ଟିର ଜନ୍ମକାଳକ ରଚନା କରିବ । ଏହି ଦୃଷ୍ଟିରୁ କବି ବେଣୁଧର ରାଉତ ଆଧୁନିକ ମଣିଷକୁ 'ବୃହନ୍ନଳା' ଭାବରେ ଅଭିହିତ କରିଛନ୍ତି । ଜୀବନ ଯନ୍ତ୍ରଣାରେ ଦଗ୍‌ଧୀଭୂତ ଆଧୁନିକ ମଣିଷ ପାଇଁ ଏ ସଂସାର ଏକ କୁରୁକ୍ଷେତ୍ର, ଅଥଚ ଏ କୁରୁକ୍ଷେତ୍ରର ଯନ୍ତ୍ରଣା ଓ ଦହନକୁ ସେ ପ୍ରକାଶ୍ୟରେ ସ୍ୱାଭାବିକ ଭାବରେ ଅଭିବ୍ୟକ୍ତ କରିପାରେ ନାହିଁ । ସାମ୍ପ୍ରତିକ ମଣିଷକୁ କବି ଅସହାୟ ବିଷାଦଗ୍ରସ୍ତ ଅର୍ଜ୍ଜୁନ ରୂପେ ତର୍କଣା କରି ତା'ର ଅସହାୟତ୍ୱକୁ ସୂଚିତ କରିଛନ୍ତି ।

ବସ୍ତୁତଃ ଗୁରୁପ୍ରସାଦ ମହାନ୍ତି ଆଧୁନିକ ଓଡ଼ିଆ କବିତା ପରମ୍ପରାରେ ମିଥ୍ ଚେତନାରେ ଏକ ସୁନିର୍ଦ୍ଦିଷ୍ଟ ମୋଡ଼ ସୃଷ୍ଟି କରିବାରେ ଜଣେ କ୍ରାନ୍ତିକାରୀ ଶିଳ୍ପୀ । 'ସମୁଦ୍ର ସ୍ନାନ' ଶୀର୍ଷକ ତାଙ୍କର ଏକକ ଗୀତଗୁଚ୍ଛ ସଙ୍କଳନରେ 'କାଳ-ପୁରୁଷ', ଅକ୍ରୂର ଉବାଚ ଓ ଚମ୍ପାଫୁଲ ସନେଟ୍ ପରିପ୍ରେକ୍ଷୀରେ ଏହା ବିଶ୍ଳେଷଣ କରାଯାଇ ପାରେ । ତାଙ୍କର 'କାଳପୁରୁଷ'ରେ ଟି. ଏସ୍. ଇଲିୟଟଙ୍କ 'ଦି ୱେଷ୍ଟ-ଲେଣ୍ଡ୍' (The wasteland)ର କାବ୍ୟଧର୍ମ ଅନୁସୃତ ହୋଇଛି । ମୃତ୍ୟୁ ଚେତନା ତହିଁରେ ପ୍ରଲମ୍ବିତ ନୁହେଁ । ମୃତ୍ୟୁରୁ ଅମୃତକୁ ଅଭିଯାତ୍ରା ହିଁ ତହିଁରେ ବର୍ଣ୍ଣିତ । ଏହି ଅମୃତ ଆସ୍ପୃହା ଅକ୍ରୂର ଓ ଉଦ୍ଧବ ମିଥ୍ ମାଧ୍ୟମରେ ତଥା ଜହ୍ନ, ଝରଣା ଓ ଅରୁନ୍ଧତୀ ତାରାର ଚିତ୍ରକଳ୍ପ ମଧ୍ୟରେ ମୂର୍ତ୍ତିମନ୍ତ । "ହେ ଅକ୍ରୂର, ହେ ଉଦ୍ଧବ, ସଖା ମୋର ପ୍ରାଣର ଦୋସର / ବୁଦ୍ଧି ବୁଦ୍ଧି ଛାଡ଼ୀ ରୁହ ପିଠିରେ

ମୋ ତୁମ ପର ବୋଝ / ମୁଁ ଯିବ ତୁମର ପର ତାରା ଖୋଜି, ଜହ୍ନ ଖୋଜି, ଖୋଜି ଖୋଜି ଝରଣାର ସୁଅ / ମୁଁ ଯିବ ତୁମର ପର ଖୋଜି ମୋର ପିତା-ମାତା / କମ୍ପିଲୀ ନଖରେ ଖୋଜି ଅରୁନ୍ଧତୀ ତାରାର ଆଲୁଅ ।" (ଅକ୍ରୂର ଓ ଉଦ୍ଧବ ଦୁହେଁ କୃଷ୍ଣ ଭକ୍ତ । ଜଣେ କୃଷ୍ଣଙ୍କୁ ମଥୁରା ଆଣି କଂସ ମୃତ୍ୟୁର କାରଣ ହୋଇଛି । ଅନ୍ୟ ଜଣେ କୃଷ୍ଣ ସମ୍ବାଦ ନେଇ ଯାଇଛି ଓ ଈଶ୍ୱରଙ୍କ ବାର୍ତ୍ତା ପ୍ରଚାର କରିଛି । ମାନବାତ୍ମା ଶଂସିତ କବିତାରେ ଅକ୍ରୂର ଓ ଉଦ୍ଧବ ଚେତନା ସହ ଏକାତ୍ମ । 'ଶ୍ରୀମଦ୍‌ଭାଗବତ'ର ଅକ୍ରୂର ଓ ଉଦ୍ଧବଙ୍କ ପର ତା' ପିଠିରେ ଏକ ବୋଝ ଯାହାକି ଧ୍ୱଂସର, ମୃତ୍ୟୁର ତଥା ଅବକ୍ଷୟର । ତହିଁରୁ ସେ ପରିତ୍ରାଣ ଚାହେଁ, ଶାନ୍ତି ଚାହେଁ, ସ୍ୱସ୍ତ୍ୟୟନ ଆଶା କରେ । 'ତାରା', ଜହ୍ନ ଓ 'ଅରୁନ୍ଧତୀ ତାରା' ମାଧ୍ୟମରେ ଏହି ଶାନ୍ତି ଓ ସ୍ୱସ୍ତ୍ୟୟନର ସଙ୍କେତ ମିଳିଛି । ବସ୍ତୁତଃ ଅରୁନ୍ଧତୀ ତାରା ଏକ ମୃତ୍ୟୁଞ୍ଜୟୀ ଚେତନାକୁ ମୂର୍ତ୍ତିମନ୍ତ କରେ । ଅରୁନ୍ଧତୀ ବଶିଷ୍ଠ ଋଷିଙ୍କ ପତ୍ନୀ । ପତିପରାୟଣତା ପାଇଁ ସେ ପ୍ରଖ୍ୟାତ । ଉତ୍ତରାକାଶରେ ସପ୍ତର୍ଷି ମଣ୍ଡଳର ଷଷ୍ଠ ତାରା ବଶିଷ୍ଠଙ୍କ ନିକଟରେ ସେ କ୍ଷୁଦ୍ର ତାରାଟିଏ ହୋଇ ରହିଛନ୍ତି ବୋଲି ଏକ ପୌରାଣିକ ଲୋକବିଶ୍ୱାସ ପ୍ରଚଳିତ । 'ହିତୋପଦେଶ'ରେ ଉଲ୍ଲେଖ କରା-ଯାଇଛି—ମୃତ୍ୟୁ ଯାର ଆସନ୍ନ ଏହି ତାରା ତାକୁ ଦେଖାଯାଏ ନାହିଁ । ମାନବାତ୍ମା ଆଜି ମୃତ୍ୟୁଗ୍ରସ୍ତ ଅଥଚ ସେ ତହିଁରୁ ପରିତ୍ରାଣ ଚାହେଁ, ସୁତରାଂ ସାଂପ୍ରତିକ ମଣିଷ ବ୍ୟାକୁଳ ଭାବରେ ସେ ଅରୁନ୍ଧତୀ ତାରାକୁ ଖୋଜୁଛି । ଜୀବନର ଏହି କେନ୍ଦ୍ରଚ୍ୟୁତ 'ଇଳା' ମିଥ୍ ମାଧ୍ୟମରେ ସୂଚିତ ହୋଇଛି । ଇଳା ହେଉଛନ୍ତି ଶ୍ରଦ୍ଧା ଓ ମନୁଙ୍କ କନ୍ୟା । ସୁତରାଂ କନ୍ୟା ସନ୍ତାନଟିଏ ଭୂମିଷ୍ଠ ହେବା ପରେ ମନୁଙ୍କ ଇଚ୍ଛାନୁଯାୟୀ ବଶିଷ୍ଠ କନ୍ୟାଟିକୁ ପୁତ୍ର (ସୁଦ୍ୟୁମ୍ନ)ରେ ରୂପାନ୍ତରିତ କରିଦେଲେ । ପରବର୍ତ୍ତୀ କାଳରେ ସୁକୁମାର ବନରେ ପ୍ରବେଶ କରିବା ଅପରାଧରେ ସେ ନାରୀରୂପ ଧାରଣ କରିଥିଲେ ଓ ଏକମାସ ପୁରୁଷ ରୂପ ଧାରଣ କଲେ ଶିବ ପାର୍ବତୀଙ୍କ କରୁଣାରୁ । ଟାଇରେସିଆସ୍‌ଙ୍କ ପରି ଇଳା ଉଭୟ ନାରୀ ଓ ପୁରୁଷଙ୍କ ଯୌନ ଅଭିଜ୍ଞତା ସମ୍ପନ୍ନ । କିନ୍ତୁ ଟାଇରେସିଆସ୍‌ଙ୍କ ପରି ସେ ଅନ୍ଧ ଓ ଭୂତ ଭବିଷ୍ୟ ଦ୍ରଷ୍ଟା ନୁହନ୍ତି ବରଂ ସ୍ୱୟଂ ସଂହତ ଜୀବନ ପରିସରରୁ କେନ୍ଦ୍ରଚ୍ୟୁତ । ଓ୍ୱେଷ୍ଟଲାଣ୍ଡର ମିଥ୍ ସହିତ ଗୁରୁ ମହାନ୍ତି ସମତା ରକ୍ଷା କରି 'ଇଳା' ଚରିତ୍ରଟିର ମନୋଜ୍ଞ ବିକାଶ 'କାଳପୁରୁଷ'ରେ କରିବାରେ ସମର୍ଥ ଯେ ହୋଇଛନ୍ତି ଏଥିରେ ସନ୍ଦେହ ନାହିଁ । ଗୁରୁପ୍ରସାଦଙ୍କ ପରେ ଓଡ଼ିଆ କବିତାର ବିବର୍ତ୍ତନ ଧାରାରେ ଶ୍ରୀ ରମାକାନ୍ତ ରଥଙ୍କୁ ସ୍ମରଣ କରାଯାଇ ପାରେ । ତାଙ୍କର 'ଗରୁଡ଼' କବିତାରେ 'ଗରୁଡ଼' ସଂଗ୍ରାମୀ ମାନବାତ୍ମାର ପ୍ରତୀକ । ସେ ସତ୍ୟର ପ୍ରତୀକ ଏବଂ ସାପରୂପୀ ମିଛମାନଙ୍କୁ

ହତ୍ୟା କରୁଛି ।—"ମଦ ପିଇ ଝଡ଼ ରାତି ଗର୍ଜିଉଠେ / ଥରାଇ ଆକାଶ / ସାଗରର ଢେଉ ସବୁ ଫାଟିପଡ଼େ କୂଳର ଉପରେ / ତମସା ଉଲଗ୍ନ ଟାଣି ରାତି ରଚେ ରତି ଶଯ୍ୟା ତା'ର / ବିଦ୍ୟୁତ୍ର ଦୀପ ଲିଭେ ଅଣଚାଶ ବତାସ ନମିଷେ ।"

ଏହିଭଳି ଏକ ଅନ୍ଧକାର ତମସାଚ୍ଛନ୍ନ ଦର୍ଶନ ହିଁ ଆଜିର ଦୁଃସ୍ଥ ପୃଥିବୀକୁ ଘେରି ରହିଛି । ଏହା ସତ୍ତ୍ୱେ ଏକ ନୀଳାଭ ଝରଣା ପୃଥିବୀ ବକ୍ଷରେ ବୋହି ଗ୍ଲଲିଛି । ଏହି ନୀଳାଭ ଝରଣା କିନ୍ତୁ ସବୁଜିମା ମଣ୍ଡିତ ଜୀବନବୋଧର ପ୍ରକାଶ ନୁହେଁ, ବରଂ ଏହା ବିଷାକ୍ତ ସାପର ଗରଳର ଝରଣା । ଶୀର୍ଷକ 'ସାପ' କବିତାଟିରେ ଆଧୁନିକ ସମାଜର ଅନ୍ୟାୟ ଏବଂ ଦୁର୍ନୀତି ବିରୁଦ୍ଧରେ ମଣିଷ ନିତ୍ୟ ନିୟତ ସଂଗ୍ରାମ କରୁଛି । ଏହି ସଂଘର୍ଷରେ ଜୟ-ପରାଜୟ ବଡ଼କଥା ନୁହେଁ, କଥା ହେଉଛି ସଂଗ୍ରାମ ପ୍ରତି ବିଶ୍ୱସ୍ତତା । ହୁଏତ ସେଥିପାଇଁ କବି ସ୍ୱୀକାରୋକ୍ତି କରିଛି—"ଅନିବାର୍ଯ୍ୟ ଏ ମରଣ / ବିଧାତାର ଏଇ ପରାଜୟ / ତଥାପି ସେ ପିଇଗ୍ଲଲେ / ନିଜ ଦେହରୁ ନିଗାଡ଼ି ଶୋଣିତ / ବିଧାତାର ଏଇ ପରାଜୟ / ଏକା ହୋଇ ସେ ହାଣୁଛି ଦଳ ଦଳ ବିଶ୍ୱାସଘାତକ / ଆମ ପରି କେତେଜଣରୁ / ନିରାପଦେ ହେବାକୁ ଜୀବିତ / ସଂଗ୍ରାମ ଯେ ତାହା ଲାଗି / ବିଜୟର ଚରମ ମୁକୁଟ ।" ଚଳିତ ଦଶନ୍ଧିରେ ରମାକାନ୍ତଙ୍କ 'ଶ୍ରୀରାଧା'ଓ 'ସପ୍ତମ ଅଧ୍ୟାୟ'ର କେତେକ କବିତାରେ ମିଥ୍‌ର ବୁଦ୍ଧିଦୀପ୍ତ କାବ୍ୟିକ ପ୍ରୟୋଗ ରହିଛି । କାଳଦୃଷ୍ଟିରୁ ତାହାକୁ ପରବର୍ତ୍ତୀ ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ କରାଯିବ । କବି ଶରତ ଚନ୍ଦ୍ର ପ୍ରଧାନଙ୍କ 'ନଚିକେତାର ସ୍ତବ' କବିତାରେ 'ନଚିକେତା' ଉପନିଷଦ ବର୍ଣ୍ଣିତ ନଚିକେତାର ଏକ ବିରୋଧାଭାସ ! ଉପନିଷଦର ନଚିକେତା ମୃତ୍ୟୁ, ରୋଗ ଓ ଶୋକକୁ ଅତିକ୍ରମ କରି ପ୍ରଚଣ୍ଡ ସ୍ପର୍ଦ୍ଧା ପ୍ରକଟିତ କରୁଥିଲାବେଳେ ଆଧୁନିକ ନଚିକେତା ଅହରହ ମୃତ୍ୟୁ ଶଙ୍କାରେ ଆଚ୍ଛନ୍ନ ଓ ମ୍ରିୟମାଣ ହୋଇ-ପଡ଼ିଛି ।—"ମୁଁ ଦିନେ ଖାଇବାକୁ ଯିବ / ମହିଷି ଗୋଠକୁ / ମୁଁ ଦିନେ ଭେଟିବି ଘରେ ମହିଷିଆଳକୁ / ମୁଁ କିନ୍ତୁ ପାରେନି ଯାଇ କେମିତି ବା ଯିବି ? / ତା' ପିଙ୍ଗଳ ଆଖିପତା ତା' ଜଙ୍ଗଲ ଗ୍ରୀବ / ଡରାଇଲା ମୋତେ ।" 'ମହିଷି' ଓ 'ମହିଷିଆଳ' ଶୀର୍ଷକ କବିତାରେ ଯଥାକ୍ରମେ ମୃତ୍ୟୁ ଓ ମହାକାଳର ପ୍ରତୀକ ଯେଉଁମାନଙ୍କୁ ସମ୍ମୁଖୀନ ହେବାପାଇଁ ସାଂପ୍ରତିକ ଜୀବନଧାରୁ ନଚିକେତାର ସାହସ କୁଳାଏ ନାହିଁ । ସେଥିପାଇଁ ସେ ନିତ୍ୟନିୟତ ଭୀତତ୍ରସ୍ତ ଓ ଜୀବୋନ୍ମୁଖ । କବି ଶ୍ରୀ ସୌଭାଗ୍ୟ କୁମାର ମିଶ୍ରଙ୍କ 'କ୍ରିସ୍ମାସ୍ ୧୯୬୧'ରେ ମିଥ୍ ଚେତନାର ପରିସର ଭିନ୍ନ ପ୍ରକାର । ଚଳିତ ଶତାବ୍ଦୀର ହିଂସ୍ର ପାଶବିକ ପ୍ରବୃତ୍ତି ଓ ତାହାରୁ

ଉତ୍ତରଣ ପ୍ରୟାସ ଏହି କବିତାରେ ଆଦିଜନନୀ ଆର୍କିଟାଇପ୍ ମଧ୍ୟରେ ପ୍ରମୂର୍ତ୍ତ । ଆଦିଜନନୀ ଆର୍କିଟାଇପ୍‌ର ଥିମ୍ ମୃତ୍ୟୁ ଓ ପୁନର୍ଜନ୍ମ (Death and Rebirth) । ପାପ ପ୍ରବଣତା ମଧ୍ୟରେ ଆଧୁନିକ ମଣିଷର ନୈତିକ ମୃତ୍ୟୁ ଘଟିଛି । ଜୀବନର ଉଚ୍ଚାଙ୍ଗ ମୂଲ୍ୟବୋଧ ତା' ପାଇଁ ଅସହ୍ୟ । ଉର୍କିନ୍ ମେଷଙ୍କ ନିଷ୍ପାପ ଚକ୍ଷୁଯୁଗଳର ଉତ୍ପାଟନ ମଧ୍ୟରେ ଏହି ପାଶବିକତା ସୂଚିତ । "ଦେଖିଲି ତ ମୁଁ ବର୍ଚ୍ଛି ଓ ବାଘ ନଖରେ / ତୋ ଆଖିଟା ଛଣ୍ଡାଇ ଆଣି / ଫିଙ୍ଗିଦେଲି ବଜାର ମଝିରେ ।" ମୃତ୍ୟୁରୁ ଅମୃତତ୍ୱକୁ ଏହି ଅଭିଯାତ୍ରା ଯାପକ ମିଶ୍ରଙ୍କ ମିଥ୍‌ଧର୍ମୀ କବିତା 'ଜୟଦ୍ରଥ'ର ପଥପାଦ୍ୟ ବକ୍ତବ୍ୟ । ଏହି 'ଜୟଦ୍ରଥ' ଏକ ପୌରାଣିକ ଚରିତ ବିଶେଷ ହେଲେ ମଧ୍ୟ ଆସନ୍ନ ମୃତ୍ୟୁ ଶଙ୍କାରେ ମ୍ରିୟମାଣ ହୋଇ ଆଜିର ମଣିଷକୁ ମଧ୍ୟ ବିବ୍ରତ କରି ପକାଇଛି ।

—"ମୁଁ ଅନୁଭବ କରୁଛି କିଏ ଯେମିତି / ମୋ ବେକରେ ଧଳା ଆଉ କଳା ଫୁଲ / କ୍ରମାନ୍ୱୟ ଭାବରେ ସଜାଡ଼ି / ମାଳାଟିଏ ପିନ୍ଧାଉଚି / ଏ ବୋଧେ ମୋ ନିଜ ମୃତ୍ୟୁର ସ୍ୱପ୍ନ / ଯାହା ଦିନେ ଦେଖିଥିଲି ଜୟଦ୍ରଥ ।" ମଧ୍ୟଯୁଗୀୟ ପରଲୋକତତ୍ତ୍ୱ ଅନୁଯାୟୀ କଳା ଓ ଧଳା ଫୁଲର ସମନ୍ୱିତ ସ୍ୱପ୍ନ ଦେଖିଲେ ମୃତ୍ୟୁ ହେବାର ଆଶଙ୍କା ଦେଖାଦିଏ । ଆଧୁନିକ ମଣିଷ ଏଠାରେ ଜୟଦ୍ରଥ ଭଳି ମୃତ୍ୟୁ ଶଙ୍କାରେ ବ୍ୟତିବ୍ୟସ୍ତ । କିନ୍ତୁ ପୁରାଣ ପରମ୍ପରାରେ ମୃତ୍ୟୁକୁ ପାପର ପ୍ରାୟଶ୍ଚିତ୍ତ ରୂପେ ସ୍ୱୀକୃତି ଦିଆ ଯାଇଥିବାବେଳେ ସାଂପ୍ରତିକ ସାହିତ୍ୟ ଚେତନା ଏକ ଚିରନ୍ତନ ପ୍ରେମବୋଧକୁ ଶେଷ ସତ୍ୟ ରୂପେ ସ୍ୱୀକୃତି ଦିଏ । ଏହି ଚିରନ୍ତନ ଉପଲବ୍ଧି ପାଇଁ ସେ ପୁନର୍ଜନ୍ମ ଲୋଡ଼େ । ମୃତ୍ୟୁ ଓ ଜୀବନର ବିବର୍ତ୍ତିତ ଚକ୍ର ମଧ୍ୟରେ ପାପ ପୁଣ୍ୟ ଏକ ଆପେକ୍ଷିକ ସତ୍ୟ । ସୁତରାଂ ପାପ ପୁଣ୍ୟ ଭିତରେ ବି ଜୟଦ୍ରଥ ପୁନର୍ଜନ୍ମ କାମନା କରେ । ଇହଜନ୍ମର ଦୁଃଖ ଓ ବେଦନାରୁ ପରିତ୍ରାଣ ପରେ ଏହି ପୁନର୍ଜନ୍ମ ହିଁ ତାକୁ ମୁକ୍ତି ଓ ଶାନ୍ତି ଦେବ । କବି ସୌମ୍ୟେନ୍ଦ୍ର ଦାଶଙ୍କ 'ଉପଭାରତ'ରେ ମହାଭାରତର କେତେକ ଚରିତ୍ର ମଧ୍ୟରେ ମାନବ ତଥା ଯୁଗଚେତନାର ବୈଶିଷ୍ଟ୍ୟ ପ୍ରକଟିତ । ଏଠାରେ ପ୍ରସଙ୍ଗକ୍ରମେ ସୂଚାଇ ଦିଆଯାଇ ପାରେ ଯେ, 'ଉପଭାରତ'ର ସମସ୍ତ କବିତା ମିଥିକ୍ ନୁହେଁ । 'ଭସ୍ମ', 'ମିନତି', 'ଚକ୍ଷୁସ୍ନାନ', 'କୋଟିସୂର୍ଯ୍ୟର ଅନ୍ଧକାର' ପ୍ରଭୃତି କବିତା ମହାଭାରତର କେତେକ ଚରିତ୍ର ଓ ଘଟଣାର ମର୍ମବିନ୍ଦୁ ଉପରେ ଆଧାରିତ । ତାଙ୍କର 'କୃଷ୍ଣ-ଅକୃଷ୍ଣ', 'ରକ୍ତନଈ କୂଳେ', 'ଶରଶଯ୍ୟା' ଓ 'ପ୍ରତିଧ୍ୱନି' ଆଦି କବିତାରେ ଏକ ସ୍ୱୟଂସମ୍ପୂର୍ଣ୍ଣ ମିଥିକ୍ ଗଢ଼ଣ ରହିଛି । 'କୃଷ୍ଣ-ଅକୃଷ୍ଣ'ରେ କୃଷ୍ଣ ବ୍ରହ୍ମଙ୍କର ମୂର୍ତ୍ତ ରୂପ ଓ ଅକୃଷ୍ଣ ଅମୂର୍ତ୍ତ ରୂପ । ଦେହ ଓ ଅଦେହ ମଧ୍ୟରେ ପାର୍ଥକ୍ୟର ସୀମା-

ରେଖା ଭଙ୍ଗୀରେ ସୁସ୍ପଷ୍ଟ ।—"ଆଜି ଏଇ ଅନ୍ତିମ ପ୍ରହରେ / ଯବନିକା ପତନର ପୂର୍ବ ମୁହୂର୍ତ୍ତରେ / ଏ କି ଯୁଦ୍ଧ ଏ କି ଆଲୋଡ଼ନ ? / କୃଷ୍ଣ-ଅକୃଷ୍ଣର ଦେହ ଅଦେହର ।"

ଏହି ଯୁଦ୍ଧ ଏହି ଆଲୋଡ଼ନଦେହୀ ସତ୍ତା ସହିତ ବିଦେହୀ ସତ୍ତାର । ମାୟା ସହ ସତ୍ୟର । ମୃତ୍ୟୁ ଓ ଜୀବନର । ଯାହାପରେ ମହାଜୀଗବତାର ଗର୍ଜୁଡ଼ି । ସେ ମହାଜୀରବତାରୁ ଏକ ନୂତନ ସୃଷ୍ଟିର ସନ୍ଦୀପନ ଝଂକୃତ ହୋଇଉଠେ— "ଏହା ପରେ / କେଉଁ ଯୁଗ / କେଉଁ ପାପ / କେଉଁ କୃଷ୍ଣ / କେଉଁ ଅବତାର" ?

ବସ୍ତୁତଃ ଯୁଗ ଓ ଜୀବନର କଲ୍ୟାଣ ପାଇଁ ବ୍ରହ୍ମଙ୍କର ଅଦେହୀ ସତ୍ତା ବାରମ୍ବାର ଧରାବତରଣ କରେ । ବିଶ୍ୱର ମଙ୍ଗଳ ପାଇଁ ଆପଣାଛାଏଁ ପାପ ସ୍ୱୀକାର କରେ । ଏକ ଦୁରନ୍ତ ପ୍ରତିକୂଳ ପରିବେଶ ମଧ୍ୟରେ ମାନବ ସଭ୍ୟତା ଚିରକାଳ ଯୂପକାଠରେ ବନ୍ଦୀ । କବି ରାଜେନ୍ଦ୍ର ପଣ୍ଡାଙ୍କର 'ଚୌକାଠରେ ଚିରକାଳ' ସଙ୍କଳନର 'ଅଶ୍ୱମେଧ' ଶୀର୍ଷକ କବିତାରେ ମାନବାତ୍ମାର ଏହି କଷ୍ଟପୀଡ଼ିତ ପରିଣତି ପ୍ରତୀକାତ୍ମକ ଭାବରେ ଅଭିବ୍ୟକ୍ତ ହୋଇଛି । ଶଂସିତ ମିଥିକ୍ କବିତାଟି ଏକ ଦ୍ୱିପାର୍ଶ୍ୱିକ (bi-dimensional) ଚେତନା ମଧ୍ୟରେ ବିବର୍ତ୍ତିତ । ସେଥିପାଇଁ ଭୌତିକ ପ୍ରାଚୁର୍ଯ୍ୟ ଭିତରେ ମଧ୍ୟ ସେ ପ୍ରତୀକ୍ଷା କରେ ଏକ ସୃଜନଶୀଳ ସବୁଜିମା ମଣ୍ଡିତ ଜୀବନକୁ ।

"ଓଠ ଲମ୍ବେଇ ଦିଏ ସୁଦୂର ହ୍ରଦର ମିଠା ପାଣି ଆଡ଼େ / ଘାସଫୁଲ ମଥା ନାଡ଼େ / ଆକାଶ ତଳେଇ ଆସେ / ଦିଗନ୍ତ ପାଖେଇ ଆସେ ।"

କିନ୍ତୁ ସୁଦୂର ହ୍ରଦର ମିଠା ପାଣି, ଘାସଫୁଲ, ଆକାଶ ଓ ଦିଗନ୍ତକୁ ଛୁଇଁବା ପୂର୍ବରୁ ହିଁ ସେଇ ଚୌକାଠରେ ଚିରକାଳ ବନ୍ଦୀ ହୁଏ । ଅସ୍ତାବଳ ହୁଏ ତା'ର ସାମ୍ରାଜ୍ୟ । "ଅସ୍ତାବଳ ମୋର ସାମ୍ରାଜ୍ୟ / ସାମ୍ରାଜ୍ୟ ମୋର ଅସ୍ତାବଳ / ସଂକେତ ପଠାଝେ / ଘୋଡ଼ାମୁହାଁ । ଉତ୍ତରାଧିକାରୀ ହିନ୍‌ହିନେଇ ଆଏ, ହିନ୍ ହିନେଇଥାଏ ।"

ଦିଗ୍‌ବିଜୟ ପାଇଁ ଉଦ୍‌ଗ୍ରୀବ ମାନବାତ୍ମାର 'ଘୋଡ଼ାଶାଳ' ପକ୍ଷାନ୍ତରେ ସୀମିତ ପୃଥିବୀରେ ବନ୍ଦୀ ହେବାର ପରିଣତି ଯେଭଳି ଦୁଃଖାବହ ତା'ର ଉତ୍ତର ଦାୟାଦ ଉତ୍ତର ପୁରୁଷର ପରିଣତି ତା'ଠାରୁ ଅଧିକ ବ୍ୟଥା ଓ ବେଦନା ଜର୍ଜରିତ । ଶଂସିତ କବିତାରେ ମାନବାତ୍ମାର ଏହି ଦସ୍ୟୁମୀୟୁ ବାଂଯ୍ୟଣୀୟୁ

ଆପାତତଃ ନୈରାଶ୍ୟବାଦୀ ଚିନ୍ତା ଓ ଚେତନାକୁ ପ୍ରକାଶ କରୁଥିବା ଭଳି ମନେ-ହୁଏ । କିନ୍ତୁ ଏ ବିପର୍ଯ୍ୟସ୍ତ ମଧ୍ୟରେ ମାନବାତ୍ମାର ମୁକ୍ତି ପାଇଁ ଆଶା ଓ ଅଭୀପ୍ସା ଧ୍ୱନ୍ୟାତ୍ମକ ରୀତିରେ ସୂଚିତ ।

ଆଧୁନିକ ଓଡ଼ିଆ ମିଥ୍ଧର୍ମୀ କବିତାର କ୍ରମବିକାଶରେ ଏହା ଏକ ସାମଗ୍ରିକ ଭାଷ୍ୟ ନୁହେଁ ବରଂ ଏକ ଦୃଷ୍ଟିପାତ ମାତ୍ର । ଏହି କବିତାର ବିକାଶରେ ଭାରତୀୟ ସଭ୍ୟତା ଓ ସଂସ୍କୃତି ପ୍ରତି ବିଶ୍ୱସ୍ତତା ପ୍ରକଟିତ ହେଉଛି । ବସ୍ତୁତଃ ଏହି ବିଶ୍ୱସ୍ତତାବୋଧର ଜଣେ ବିଶିଷ୍ଟ ରୂପକାର ହେଉଛନ୍ତି ଆଲୋଚ୍ୟ କବି ସୀତାକାନ୍ତ ମହାପାତ୍ର । ସୁତରାଂ କବି ମହାପାତ୍ରଙ୍କ ମିଥ୍ଧର୍ମୀ କବିତାର କାବ୍ୟିକ ବିବର୍ତ୍ତନ ସମ୍ପର୍କରେ ପରବର୍ତ୍ତୀ ପରିଚ୍ଛେଦରେ ଆଲୋଚନା କରାଯାଉଛି ।



# ମିଥ୍ ପରମ୍ପରା ଏବଂ ଐତିହ୍ୟ ସହିତ କାବ୍ୟମାନସର ସଂପୃକ୍ତି ଏବଂ ତାହାର ଉତ୍ତରଣ ଜନିତ ବିକାଶ*

କବି ସୀତାକାନ୍ତ ମହାପାତ୍ରଙ୍କ ନିଜସ୍ୱ ବକ୍ତବ୍ୟ ଅନୁସାରେ ସାହିତ୍ୟରେ ପରମ୍ପରାର ଶକ୍ତିମାନ୍ୟତା ସମ୍ପର୍କରେ କହିବାକୁ ଯାଇ—"ଏହା ଏକ ମୁଖା ନୁହେଁ ଯାହାକୁ ଯେ କେହି ପିନ୍ଧି ନାଚି ପାରିବ......ବରଂ ଏହା ଏକ ମୌଳିକ ମାନସିକ ବିପ୍ଳବ", ନାମରେ ନାମିତ କରିଛନ୍ତି । (ଧରିତ୍ରୀ ଓ ଦ୍ୟୁତିର ମୁଖଶାଳା ଲିପି ପୃଷ୍ଠା-୧୦) ପ୍ରତ୍ୟେକ ଜୀବନ୍ତ ପରମ୍ପରା ଚିର ପରିବର୍ତ୍ତନଶୀଳ, ପ୍ରବହମାନ । ସେଥିରେ ଗତକାଲିର ବିଶ୍ୱାସ ଆଜିର ଜୀବନ ସ୍ରୋତ ସହ ଏତେ ଗଭୀର ଭାବରେ ମିଶିଯାଇଛି ଯେ ଜାଣିଶୁଣି ପଛକୁ ଚାହିଁବାର ଅନୁଭୂତି ମନକୁ ଆସେନି । ବରଂ ଏକ ସଚେତନ ପଶ୍ଚାତ ଦୃଷ୍ଟି, ମୃତ ପରମ୍ପରାର ପୁନର୍ଜୀବନ ପାଇଁ ଏକ ବ୍ୟାକୁଳତା ସେଥିରେ ମିଶି ରହିଥାଏ । ପରମ୍ପରା ତେଣୁ ପଛକୁ ଅନେଇବାର ଭାବପ୍ରବଣତା ନୁହେଁ । ଭୁବନେଶ୍ୱର ସହରରେ ରାସ୍ତାରେ ବୁଲୁ ବୁଲୁ ଛକ ପାରିହେଲେ ଆପଣ ଭଙ୍ଗା ମନ୍ଦିରଟିଏ ଦେଖିବେ କିମ୍ବା ରାଜାରାଣୀ ମନ୍ଦିର ଅଖିରେ ପଡ଼ିଯିବ । କେତୋଟି ମିନିଟ୍‌ରେ ଆପଣ ଅନ୍ୟୂନ ହଜାରେ ବର୍ଷ ପଛର ଦୃଶ୍ୟପଟ୍ଟର ସାମ୍ନାସାମ୍ନି ହୋଇଯିବେ । ସାମାଜିକ ଚଳଣି, ମୂଲ୍ୟ ଓ ସମସ୍ତ ପ୍ରତି ଦୃଷ୍ଟିଭଙ୍ଗୀ ସବୁଠାରେ ଏକ ଶକ୍ତିଶାଳୀ ପରମ୍ପରାର ରୂପ ସୁସ୍ପଷ୍ଟ । କାବ୍ୟ ପରମ୍ପରାର ମହାନଦୀରେ କେତେ ଯେ ଉପନଦୀ ମିଶିଛନ୍ତି । ସାରଳା ଦାସଙ୍କର ଦାଣ୍ଡି ବୃତ୍ତରେ ସମୁଦ୍ରର ଉଦାତ୍ତ ସ୍ୱର, ଜଗନ୍ନାଥ ଭାଗବତର ଛନ୍ଦେ ଛନ୍ଦେ ସଂଯୋଗ ବିଯୋଗର ଅପୂର୍ବ ଅନୁଭବ, ଭୀମଭୋଇଙ୍କ 'ସ୍ତୁତି ଚିନ୍ତାମଣି'ର ବିହ୍ୱଳ ଆକୁଳତା ଓ ଆକୂତି, ଉପେନ୍ଦ୍ରଭଞ୍ଜଙ୍କ ସାଙ୍ଗୀତିକତା ଓ ଶବ୍ଦାଡ଼ମ୍ବର ସବୁ ଯେ ସେଥିରେ ମିଶିଯାଇଛି । ପାଶ୍ଚାତ୍ୟ ସାହିତ୍ୟ ଓ ଦର୍ଶନର ସମ୍ୟକ୍ ଅଧ୍ୟୟନ ଓ ଅନୁଶୀଳନ ଫଳରେ ପରମ୍ପରାର ଏକ ନୂତନ ସ୍ୱରୂପ ଆଖି ଆଗକୁ ଆସେ । ଅନ୍ୟ ପକ୍ଷରେ ପରମ୍ପରା ଏକ ବିଚ୍ଛିନ୍ନ ସୀମିତ ସ୍ଥିର ଜଳରାଶି ହୁଏନାହିଁ । ସେଥିରେ ବୁଡ଼ି ରହିବାକୁ ଓ ନଦୀସ୍ରୋତକୁ ଭୁଲିଯିବାକୁ ମନ

ସ୍ପର୍ଶନାହିଁ । କାବ୍ୟ ମାନସର ସୃଷ୍ଟି ପ୍ରକ୍ରିୟା ସମ୍ପର୍କରେ ସୀତାକାନ୍ତ ମହାପାତ୍ରଙ୍କ ମତାମତ ବିଶେଷ ଉଲ୍ଲେଖଯୋଗ୍ୟ । ଗଭୀର ଅନ୍ତର୍ନିହିତ ବେଦନା ଓ ବାହ୍ୟିକ ଆନନ୍ଦ, ଯୁକ୍ତିବାଦୀ ଦର୍ଶନ ଓ ପରମ୍ପରା, ଆତ୍ମସମର୍ପଣ ଓ ସହଜ ଅଙ୍ଗୀକାର ଏମିତି ଅନେକ ଦ୍ୱନ୍ଦ୍ୱ ଓ ଜଟିଳତା ବି ତାଙ୍କର କାବ୍ୟ ମାନସର ମାନସିକ ପରିବେଶ, ପରମ୍ପରା ବାସ୍ତବରେ ଏକ ନିର୍ଦ୍ଦିଷ୍ଟ ବିନ୍ଦୁ ନୁହେଁ । ପ୍ରକୃଷ୍ଟ ଆଧୁନିକତା ହିଁ ପରମ୍ପରାର ନବତମ ରୂପ ବା ନବକଳେବର । ଏହି ତିରିଶ ବର୍ଷର ଓଡ଼ିଆ କବିତାରେ ପରମ୍ପରା ବୋଧର ଏଇ ନୂତନ ସ୍ୱରୂପ ହିଁ ସବୁଠାରୁ ମୂଲ୍ୟବାନ । ନୂତନ କାବ୍ୟଧାରାର ପ୍ରକୃଷ୍ଟ ଶକ୍ତି ହେଉଛି ପରମ୍ପରାର ତୀକ୍ଷ୍ଣ ସଚେତ ମୂଲ୍ୟାୟନ । ପରମ୍ପରା କେବଳ ସ୍ଲୋଗାନ୍ ବା ଧୂଳି ଜମିଥିବା ପୁରୁଣା ଛିଣ୍ଡା ଅଜା ଅମଳର ଦ୍ରବ୍ୟଟିଏ ହୋଇ ରହିନାହିଁ । ପରୋକ୍ଷ ଭାବରେ ବିନା ସ୍ଲୋଗାନରେ ବିନା ବକ୍ତବ୍ୟରେ ଏହି ପରମ୍ପରାଗତ ତିରିଶ ବର୍ଷର ସବୁଠାରୁ ଭଲ କବିତା କିଛି ନୂତନ ସ୍ୱରୂପ ଓ ଶକ୍ତି ନେଇ ଆସିଛି । ପ୍ରାଚୀନ ପ୍ରତି ମୋହ ଆଧୁନିକତାର ମୋହପରି ଦାରୁଣ ଓ ଭୟଙ୍କର ହୋଇପାରେ । ଉଭୟବିଧ ମୋହରୁ ନିଜକୁ ମୁକ୍ତ ରଖିବାକୁ ଓ ତୀକ୍ଷ୍ଣ କାବ୍ୟ ଚେତନାକୁ ସର୍ବୋତ୍ତମ ସ୍ଥାନ ତଥା ପ୍ରାଧାନ୍ୟ ଦେବାକୁ ଏତାଦୃଶ କାବ୍ୟମାନସ ଚେଷ୍ଟା କରୁଛି ।

ସୀତାକାନ୍ତ ମହାପାତ୍ରଙ୍କ ମତରେ କବିତାରେ ମିଥ୍ ବ୍ୟବହାର ପ୍ରତୀକ ବ୍ୟବହାର ବା ବିଭିନ୍ନ ଶୈଳୀର ଅନୁବର୍ତ୍ତନ ଏସବୁ କବିର ଉପାୟ; ମାତ୍ର ଅସଲ କଥାଟି ହେଉଛି ତା'ର ବକ୍ତବ୍ୟ । କେହି କେବେ ମିଥ୍ ବା ପ୍ରତୀକ ବ୍ୟବହାର କରିବ ବୋଲି ଆଗରୁ ସ୍ଥିର କରି ତା'ପରେ କବିତା ଲେଖେନି; ଯେମିତି କୌଣସି ଆତ୍ମନିଷ୍ଠ ଅନୁଭୂତିପ୍ରବଣ କବି ତା'ର ଶୈଳୀ ସମ୍ପର୍କରେ ପ୍ରଥମରୁ ସିଦ୍ଧାନ୍ତ ନିଏନାହିଁ । ନିଜର ଗଭୀରତମ ଅନୁଭବକୁ ପ୍ରକାଶ କଲାବେଳେ ଯେଉଁ ପଦ୍ଧତି ବା ପନ୍ଥା ସର୍ବାଧିକ ଅନୁକୂଳ ତଥା ଉପଯୋଗୀ ମନେହୁଏ ବା ଯେଉଁ ଶୈଳୀ ଓ ଭାଷା ସର୍ବୋତ୍ତମ ମନେହୁଏ ତାକୁ ହିଁ ସେ ବ୍ୟବହାର କରେ । ଯେମିତି ମିଥ୍ ବୋଲି କହିଲେ କେବଳ ଇତିହାସ ପୁରାଣର ଆଖ୍ୟାୟିକାକୁ ବୁଝାଏ ନାହିଁ ବରଂ ଅସହାୟ ମଣିଷର ପ୍ରତିନିଧି ରୂପେ ଜାରି ଆସିଛି ଏବଂ ସାମ୍ନାରେ ମୃତ୍ୟୁ ରୂପୀ ଦେବତା ସ୍ୱୟଂ ଶ୍ରୀକୃଷ୍ଣ, ତା'ହେଲେ ନିଜ ଭାଗ୍ୟକୁ ନିନ୍ଦିବା ଛଡ଼ା ସେ ଆଉ କ'ଣ କରିପାରେ । ଆଉ ଯଶୋଦା—ତା'ର ଭାଗ୍ୟ ସବୁ କଳାକାରର ଭାଗ୍ୟ । କାରଣ ଗୋପୀଗଣ ଦେଖି ନ ପାରିବାର ଯାହା ବିଶ୍ୱ ସେ ଦେଖିଛି କୃଷ୍ଣର ତୁଣ୍ଡରେ, ଆଉ ଦୁଷ୍ଟ ପିଲା ଖାଇଥିବା ମାଟିପାଣି ଦେଖିଛନ୍ତି । ତେଣୁ ସେ ବିସ୍ମୟ କାହାକୁ ବୁଝାଇବ କ'ଣ ସେ ପ୍ରକୃତରେ ଦେଖିଛି ? ତା'ର ଯେ

ନେଇ ସାକ୍ଷୀ ନାହିଁ । କେଉଁଠି ନିର୍ଜନ କେଉଁଠି ନିସ୍ସଙ୍ଗ ସେ ଦୃଶ୍ୟ । ଅବଶ୍ୟ ଆଧୁନିକ କବିତାର ସମାଜ ପ୍ରତି ଯଥେଷ୍ଟ ଅବଦାନ ରହିଛି ଏ ସମ୍ପର୍କରେ ମତ ଦେଇ ସୀତାକାନ୍ତ ମହାପାତ୍ର କହନ୍ତି—ଅଧିକାଂଶ କ୍ଷେତ୍ରରେ ଆଜିର କଳା ଓ ସାହିତ୍ୟରେ ଦେଖା ଦେଇଥିବା ହତାଶ ଭାବ, ଜୀବନ ବିମୁଖତା ପ୍ରଭୃତି ଇଚ୍ଛାକୃତ ଏକ ଧାରଣାତ୍ମକ ଇଣ୍ଟେଲେକ୍‌ଚୂଆଲ ମୁଖା, ସେଥିପ୍ରତି ତାଙ୍କର ଶ୍ରଦ୍ଧା ନାହିଁ । ବରଂ ସମସ୍ତ ପ୍ରଗତି ସକଳ ଅଧୋଗତି ସତ୍ତ୍ୱେ ଭୂଇଁଆଡ଼େ ବସ୍ତୁର ପ୍ରାଚୁର୍ଯ୍ୟ ସତ୍ତ୍ୱେ ଆତ୍ମାର ଅନ୍ଧାର ଓ ହାହାକାର ତଥା ପ୍ରାଣରେ ଅଭୀପ୍‌ସାକୁ ନୂତନ ରୂପ ଦେବାରେ ଆଜିର କବିତାର ଏକ ସ୍ୱତନ୍ତ୍ର ସ୍ଥାନ ଅଛି ।

ସର୍ବୋପରି କବିତାରେ ବ୍ୟବହୃତ ଭାଷା ଓ ଶବ୍ଦମାନଙ୍କର ସୂକ୍ଷ୍ମତାର ଆସ୍ୱାଦନ ଏକ ଗଭୀର ମାନସିକ ଅନ୍ତର୍ବିନ୍ୟାସର ଅପେକ୍ଷା ରଖେ । ଯେଉଁ ସଂସ୍କୃତି ଶବ୍ଦକୁ ବ୍ରହ୍ମ ବୋଲି ଆଖ୍ୟାୟିତ କରେ ଶବ୍ଦର ଅପବ୍ୟବହାର ତା' ନିକଟରେ ସଂସ୍କୃତିର ଅପଚୟ ସଙ୍ଗେ ସମାନ । ଶବ୍ଦର ରୂପରେଖ ଓ ରଙ୍ଗ ସହଜେ ହାତରେ ଧରି ହୁଏନି । ସେଥିପ୍ରତି ସାଂସ୍କୃତିକ ଅବଚେତନର ସ୍ୱଚ୍ଛନ୍ଦ ପ୍ରତିକ୍ରିୟା ଏବଂ ତା'ର ସ୍ୱଚ୍ଛ ପରିପ୍ରକାଶକୁ ଅବ୍ୟାହତ ରଖିବା କବି ପକ୍ଷରେ ନିହାତି ଆବଶ୍ୟକ ବୋଲି ଶ୍ରୀ ମହାପାତ୍ରଙ୍କର ବ୍ୟକ୍ତିଗତ ଦୃଢ଼ ଧାରଣା । ଏତଦ୍‌ବ୍ୟତୀତ ସେ ନିଜର ବିଖ୍ୟାତ କବିତା ସଙ୍କଳନ 'ଅଷ୍ଟପଦୀ' ଓ 'ସମୁଦ୍ର'ର କାବ୍ୟବୃତ୍ତ ପରିକଳ୍ପନାରେ ଯେଉଁ ପରିବେଶ ଏବଂ ଚେତନାର ସମନ୍ୱୟ ଘଟାଇ ପାରିଛନ୍ତି ସେ ସମ୍ପର୍କରେ ମତ ଦେଇ କହନ୍ତି—"ଇତିହାସର ପରିପ୍ରେକ୍ଷୀରେ ଓ ବ୍ୟକ୍ତିଗତ ଜୀବନର ସ୍ୱୟଂସମ୍ପୂର୍ଣ୍ଣ ଏକାକୀତ୍ୱର ରସାସ୍ୱାଦନକୁ 'ଅଷ୍ଟପଦୀ'ର ମୂଳକଥା ଭାବରେ ଗ୍ରହଣ କରି ନେଇଛନ୍ତି ସତ, ସୋଲନ୍ ନିର୍ଜନ ଦ୍ୱୀପରେ ଏକାକୀ କିନ୍ତୁ ନିଃସଙ୍ଗତା ବୋଧରେ ସେ ଜର୍ଜରିତ ନୁହେଁ । ବରଂ ବାସ୍ତବତା ଓ ତା'ର କ୍ରୂର ଉଦାସୀନତା ସହ ସେ ସନ୍ଧି ସ୍ଥାପନ କରି ସାରିଛି । 'ଅଷ୍ଟପଦୀ'ର କବିତା ସମୂହ ଏକ ନିର୍ଦ୍ଦିଷ୍ଟ ସୃଷ୍ଟିର ପରିପ୍ରକାଶ ତଥା ଗୋଟିଏ ମାନସିକ ଉତ୍ତରଣର ବିବିଧ ପାହାଚ । କବିତାଗୁଡ଼ିକ ପ୍ରାୟ ବର୍ଷକ ଭିତରେ ଏକୀଭୂତ ଓ ନିରବଚ୍ଛିନ୍ନ ମାନସିକ ପ୍ରକ୍ରିୟାରୁ ଉଦ୍ଭବ ହୋଇଥିଲେ । ଏସବୁ ଦୃଷ୍ଟିରୁ 'ସମୁଦ୍ର' ବ୍ୟକ୍ତି ଚେତନାର ମୁକ୍ତି ଖୋଜାର ପ୍ରୟାସ ଓ ତା'ର ଏକ ବ୍ୟାପକ ଲ୍ୟାଣ୍ଡସ୍କେପ୍ । 'ପରିଚୟ', 'ପ୍ରତିବେଶୀ' ଓ ପରିଣାମ ଏଇ ତିନୋଟି ମୁଖ୍ୟ ବିଭାଗ ମଧ୍ୟ ଦେଇ 'ସମୁଦ୍ର' ବ୍ୟକ୍ତିଚେତନା (ଆତ୍ମା ?)ର ଗଭୀରତା, ବିଶୃଙ୍ଖଳ ଓ ସୁପ୍ତ ଶକ୍ତିର ପ୍ରତୀକ ତଥା ଏକ 'ଆଲିଗରି' ଭାବରେ ବ୍ୟବହୃତ ହୋଇଛି । 'ଅଷ୍ଟପଦୀ'ର ଦୀର୍ଘ କବିତା ପରେ ଅନ୍ୟ ଦୁଇଟି କବିତା 'ପରିକ୍ରମା' ଓ 'ଶରଧାବାଲିର

ବୃତ୍ତାଲୋକ’ରେ କବି ମୃତ୍ୟୁ ଓ ଜୀବନର ପାରସ୍ପରିକ ଟଣାଓଟରା ଭିତରେ ଜୀବନର ସୂର୍ଯ୍ୟାସ୍ତକାଳୀନ ପଶ୍ଚାତ ଦୃଷ୍ଟି ସମ୍ପର୍କରେ ବ୍ୟାପକ ଅନୁଧ୍ୟାନ କରିଛନ୍ତି ।

## (ଖ) ସୀତାକାନ୍ତ ମହାପାତ୍ରଙ୍କ କାବ୍ୟ ଜଗତ—

ନିର୍ଜନ ସମୁଦ୍ର କୂଳରେ ବସି ଦିଗ୍‌ବଳୟ ଛୁଇଁଥିବା ଜଳରାଶିକୁ ଚାହିଁଲେ ମନେହୁଏ ସମୁଦ୍ର ଖୁବ୍ ଅସୀମ । ଯୋଜନ ଯୋଜନ ବ୍ୟାପ୍ତ ବାଲୁକା ରାଶି ଉପରେ ଅନନ୍ତ ଆକାଶକୁ ଚାହିଁଲେ ଆକାଶର ବହୁ ବିଚିତ୍ର ସୌନ୍ଦର୍ଯ୍ୟ ତା’ର ଅମାପତ୍ୱର ସୂଚନା ଦିଏ । ମନେହୁଏ ଯେପରି ସେମାନଙ୍କର ଆରମ୍ଭ ନାହିଁ କି ଶେଷ ନାହିଁ । ଯେପରି କାଳ କାଳ ଧରି ଏମାନେ ଏଭଳି ପରିବ୍ୟାପ୍ତ ହୋଇ ସୃଷ୍ଟିର ଅସୀମତାକୁ ପ୍ରତିନିଧିତ୍ୱ କରି ଆସିଛନ୍ତି । ପୃଥିବୀ ମଧ୍ୟ ଠିକ୍ ଆକାଶ ଓ ସମୁଦ୍ର ପରି ବ୍ୟାପକ । ଜୀବନର ସମସ୍ତ ଦଗ୍ଧ ଓ ଅନୁଭୂତିକୁ ବୁକୁରେ ଚାପିଧରି ପୃଥିବୀ ଚିର ଗତିଶୀଳ । ଏହି ପୃଥିବୀରେ ବାସ କରୁଥିବା କଳାକାର, ସାହିତ୍ୟିକ ବା କବି ତା’ର ମହାନ୍ ସୃଷ୍ଟିକୁ ଜୀବନ୍ତ କରେ ଜୀବନର ଆକର୍ଷଣ—ବିକର୍ଷଣ, ଆନନ୍ଦ-ନିରାନନ୍ଦ, ବିଷାଦ, ଗ୍ଲାନି, ଅହଂକାର ଭିତରେ । ପୃଥିବୀର ବିସ୍ତୃତ ବଳୟରେ ସେ ସମୁଦ୍ର ଓ ଆକାଶର ବିବିଧ ଓ ବହୁରୂପୀ ସୌନ୍ଦର୍ଯ୍ୟକୁ ଅବଲୋକନ କରି ତା’ର ରସାସ୍ୱାଦନ କରେ କିମ୍ବା ତା’ର ବାସ୍ତବ ଓ ଅତୀନ୍ଦ୍ରୀୟ ନିର୍ଲିପ୍ତ ଚେତନାକୁ ଉଜ୍ଜୀବିତ କରାଏ । ଏହିପରି ଏକ ବଳିଷ୍ଠ ଓ ପ୍ରଜ୍ଞାଦୀପ୍ତ ଚେତନାର କବି ସୀତାକାନ୍ତ ମହାପାତ୍ର ଓଡ଼ିଆ କାବ୍ୟ କ୍ଷେତ୍ରରେ ଜଣେ ଅସାଧାରଣ ପ୍ରତିଭାଶାଳୀ କବି । ତାଙ୍କର ସୃଷ୍ଟିକଳା ପରିଚିତ ପୃଥିବୀ ଅପରିଚିତ ଆକାଶ ଓ ଅଜ୍ଞେୟ ସମୁଦ୍ରର ସମନ୍ୱୟରେ ଖୁବ୍ ବ୍ୟାପକ ଓ ପ୍ରସାରକ୍ଷେମ । ଆଜିଯାଏ ପ୍ରକାଶିତ ଶ୍ରୀ ମହାପାତ୍ରଙ୍କର ସାତଟି କାବ୍ୟ ଗ୍ରନ୍ଥ ଦୀପ୍ତି ଓ ଦ୍ୟୁତି (୧୯୬୩), ଅଷ୍ଟପଦୀ (୧୯୬୭), ଶବ୍ଦର ଆକାଶ (୧୯୭୧), ସମୁଦ୍ର (୧୯୭୭), ଚିତ୍ରନଦୀ (୧୯୭୯), ଆରଣ୍ୟ (୧୯୮୨), ସମୟର ଶେଷନାମ (୧୯୮୪) ପ୍ରଭୃତିରେ କବିଙ୍କ ସୃଷ୍ଟି ମାନସରେ ଏହି ବ୍ୟାପ୍ତ ଜଗତର ଉତ୍ତରଣ ଚେତନାର ସୂଚନା ମିଳେ । ଏହି ସମସ୍ତ କବିତାରେ କବି ଯେଉଁ ଅଜସ୍ର ସୃଷ୍ଟି ସମ୍ଭାରର ପରିଚୟ ଦେଇଛନ୍ତି ତାହାର ଉତ୍କର୍ଷ ପୃଥିବୀର ବିଭିନ୍ନ ଭାଷାରେ ଅନୂଦିତ ତାଙ୍କର ଶତାଧିକ କବିତାରେ ପ୍ରତିପାଦିତ ହୋଇ ପାରିଛି । କବିଙ୍କର ଅସାମାନ୍ୟ କାବ୍ୟିକ କୁଶଳତା ତାଙ୍କର ସଂସ୍କୃତି ଓ ପରମ୍ପରାବୋଧକୁ ନେଇ ସମ୍ବେଦନଶୀଳ ସରଳ ପଲ୍ଲୀପ୍ରାଣତା ତାଙ୍କର କାବ୍ୟଜଗତର ପ୍ରତିନିଧିତ୍ୱ କରିଛି । ବିଶେଷ ଭାବରେ ସାମ୍ପ୍ରତିକ ଜୀବନର ନିଷ୍ପେଷଣ, ଦୁଃଖ, ଯନ୍ତ୍ରଣା, ମର୍ମଦାହ ତଥା ନିପୀଡ଼ନର

ଅନନ୍ତନମ୍ୟ ଅନୁଭୂତ ସମୂହ ମଣିଷ ମନରେ ଯେଉଁ ବ୍ୟଥାତୁର ଅଗ୍ନିବଳୟ ସୃଷ୍ଟି କରନ୍ତି ତା'ର ତୀବ୍ର ବିପ୍ଳବାତ୍ମକ ପ୍ରତିକ୍ରିୟା ସୃଷ୍ଟି ହୁଏ ମନରେ ଓ ଆତ୍ମାରେ । ଫଳତଃ ପ୍ରବହମାନ ଜଟିଳ ସମସ୍ୟାଧାରରେ ସାମ୍ପ୍ରତିକ ଆତ୍ମକୈନ୍ଦ୍ରିକ ମଣିଷ ସଫଳ ଜୀବନଚର୍ଯ୍ୟା କରିପାରେ ନାହିଁ । ତା'ର ନିର୍ବାସିତ ଜର୍ଜରିତ ଆତ୍ମିକ ସ୍ଥିତିରେ ଅବସାଦପୂର୍ଣ୍ଣ କାରୁଣ୍ୟର ସୂତ୍ରପାତ ହୁଏ । ଏହି ଯନ୍ତ୍ରଣାଦଗ୍ଧ ଯୁଗ ମାନସର ସମସ୍ତ ତାତ୍ପର୍ଯ୍ୟକ ପ୍ରତିଫଳନ ସୀତାକାନ୍ତୀୟ କାବ୍ୟ ଜଗତରେ ପ୍ରତିଫଳିତ ହୋଇଛି ଖୁବ୍ ଅନ୍ତରଙ୍ଗ ହୋଇ । ଗୋଟିଏ କଥାରେ କହିବାକୁ ଗଲେ କବି ଶ୍ରୀ ମହାପାତ୍ର ଜୀବନର ଏହି କଠୋର ବାସ୍ତବତା ଓ ନିଷ୍ଠୁର ସତ୍ୟକୁ ଲଙ୍ଘନ କରି ଏକ ବଳିଷ୍ଠ ଆଶାର ସଞ୍ଚରଣ ପାଇଁ ଯତ୍ନଶୀଳନାନ୍ତି ଉଦ୍ୟମ କରିଛନ୍ତି । ତାଙ୍କ ନିଜ ଭାଷାରେ କହିଲେ ହିଁ ବେଶୀ ତାତ୍ପର୍ଯ୍ୟପୂର୍ଣ୍ଣ ହେବ— × × ×

"ବିଂଶ ଶତାବ୍ଦୀ ଏପରି ଏକ ଜଟିଳ ଓ ଅଦ୍ଭୁତ ଶତାବ୍ଦୀ ଯେତେବେଳେ ଏକ ପକ୍ଷରେ ଜ୍ଞାନର ପରିସର ଅସୀମ, ଯୁକ୍ତି ଓ ତଥ୍ୟ ଆକାଶକୁ ଛୁଇଁଛି, ଅଥଚ ସେସବୁ ସାମ୍ନା କରିବାକୁ କଳା ଶିଖାଏ । ତା'ର ନାୟକ ଯୁଦ୍ଧକ୍ଷେତ୍ରରେ କୌଣସି ବୀରପୁଙ୍ଗବ ନୁହନ୍ତି । ସେଇ ସାଧାରଣ ମଣିଷଟିଏ ଯିଏ କାହୁଅରେ ବେଳଯାଏଁ ବୃଦ୍ଧିରହି ତାରି ସ୍ୱପ୍ନ ଦେଖେ । ବିନା ଅଭିଯୋଗରେ ଜୀବନର ହଳାହଳକୁ ପିଇନିଏ ପିତାମହ ଭୀଷ୍ମଙ୍କ ପରି ଯନ୍ତ୍ରଣାର ଶରଶଯ୍ୟାରେ ଶୋଇଯାଏ । ଅଥଚ ତା'ର ମୁଖମଣ୍ଡଳ କି ଗୌରବାନ୍ୱିତ କି ଦୃପ୍ତ । ସେଇ ଅସହାୟ ସଂଗ୍ରାମଶୀଳ ଓ ଅପରାଜିତ ମଣିଷର ଚେତନା ମୋ ମତରେ ଆଜିର କାବ୍ୟର ମୌଳିକ ବକ୍ତବ୍ୟ ।" (ଦୀପ୍ତି ଓ ଦ୍ୟୁତି ମୁଖଶାଳା ଲିପି)

ବାହ୍ୟଜଗତ ଏବଂ ବସ୍ତୁଜଗତ ବା ବାସ୍ତବଜଗତ, ଆନ୍ତଃଜଗତ ଏବଂ ମନୋଜଗତ ବା ଚିତ୍ତଜଗତ—ଉଭୟଙ୍କ ଭିତରେ ପ୍ରଚ୍ଛନ୍ନ ଘନିଷ୍ଠତା ସ୍ୱାଭାବିକ । ଏହି ସମ୍ପର୍କ ବା ଘନିଷ୍ଠତାକୁ ସାମାନ୍ୟ କୋରିଲେସନ୍ (corelation) ବା ସମ୍ପୃକ୍ତି କୁହାଯାଇ ନ ପାରେ ବରଂ ନିଜସ୍ୱ ପରିବେଶ ସହ ଏକ ଜଟିଳ ଆତ୍ମୀୟତା ସ୍ଥାପନ ଫଳରେ ଯେଉଁ ପ୍ରାଣସ୍ପନ୍ଦନ କବିତା ରୂପରେ ପ୍ରକାଶ ଲାଭ କରେ ତାହା ହିଁ ହେଉଛି ଶ୍ରୀ ମହାପାତ୍ରଙ୍କ କବିତାର ମୁଖ୍ୟ ସ୍ୱର । ତାଙ୍କ କବିତାର କାବ୍ୟିକ ଭାବ, ଗତି, ଉଦ୍ଭାବନକ୍ଷମ ବୌଦ୍ଧିକ ସକଳ ଆବେଗ, ସୂକ୍ଷ୍ମ ଅନୁଭବ, ସମସ୍ତ ସଚେତନତା, ମୃତ୍ୟୁଚିନ୍ତା ଓ ଆଧୁନିକ ଜୀବନ ପର୍ଯ୍ୟାୟରେ ସିଏର ଅଲୌକିକ ପ୍ରୟୋଗ ଏସବୁର ଏକ ପ୍ରାଞ୍ଜଳ ନକ୍ସା ଅଙ୍କନ କରି ସମାଲୋଚକମାନେ ତାଙ୍କୁ ଷାଠିଏର ସାହିତ୍ୟର ଏକ ନିର୍ଦ୍ଦିଷ୍ଟ ମାଇଲଖୁଣ୍ଟ

ଖାବରେ ଅଭିହିତ କରିଛନ୍ତି । ସୁତରାଂ ଏହିସବୁ ମନ୍ତବ୍ୟରୁ ମନେହୁଏ ଶ୍ରୀ ମହାପାତ୍ରଙ୍କ କାବ୍ୟଜଗତ ଦୁଇଟି ପୃଥକ୍ ଭିନ୍ନ ସାହିତ୍ୟ ସ୍ରୋତର ଯୌଗିକ ଅନ୍ତଃକ୍ରିୟା । ପ୍ରଥମତଃ ତାଙ୍କର ଭାରତୀୟ ସଂସ୍କୃତି ଓ ପରମ୍ପରା ଉପରେ ଆଧାରିତ ବୈଦିକ ଦୃଷ୍ଟିଭଙ୍ଗୀ, ଦ୍ୱିତୀୟତଃ ଓଡ଼ିଆ ସାହିତ୍ୟର ପ୍ରାଚୀନ ଓ ମଧ୍ୟଯୁଗୀୟ କବିମାନଙ୍କର ରଚନାବଳୀ ଯଥା ସାରଳା ଦାସଙ୍କ ମହାଭାରତ, ଜଗନ୍ନାଥ ଦାସଙ୍କ ଭାଗବତ ଏବଂ ଭୀମ ଭୋଇଙ୍କ ଭକ୍ତିଭାବପୂର୍ଣ୍ଣ କବିତା ସମୂହ ସୀତାକାନ୍ତଙ୍କ ସୃଷ୍ଟି ପ୍ରାଣରେ ଯଥେଷ୍ଟ ପ୍ରଭାବ ବିସ୍ତାର କରିଛନ୍ତି । ପୂର୍ବସୂରୀମାନଙ୍କର ଆଧ୍ୟାତ୍ମିକ ଓ ଅଧିଭୌତିକ ଜୀବନ ଦୃଷ୍ଟି କବିଙ୍କ ମନରେ ସୃଷ୍ଟି କରିଛି ଅପୂର୍ବ ଭାବାନୁଭୂତି । ବିଶେଷତଃ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ୟୁରୋପରେ ସାମାଜିକ, ଐତିହାସିକ, ମନସ୍ତାତ୍ତ୍ୱିକ ଓ ସାଂସ୍କୃତିକ କ୍ଷେତ୍ରରେ ତଥା ଜ୍ଞାନର ବିବିଧ ବିଭାଗରେ ଯେଉଁ ଆନ୍ଦୋଳନ ସବୁ ରୂପ ପାଇଲା ତାହାର ପ୍ରଭୂତ ପ୍ରଭାବ ମଧ୍ୟ ସୀତାକାନ୍ତଙ୍କ କବିତାରେ ଅନୁଭୂତ ହୁଏ । ଇଲିୟଟ୍ ଓ ପାଉଣ୍ଡଙ୍କ ପ୍ରଜ୍ଞାଭିତ୍ତିକ ସାହିତ୍ୟ, ଆଙ୍ଗିକ ଓ ଆତ୍ମିକ ଶୈଳୀରେ ନୂତନ ପରୀକ୍ଷାନିରୀକ୍ଷା କବିଙ୍କ କାବ୍ୟିକ ମନକୁ ଯଥେଷ୍ଟ ପ୍ରେରଣାଦୀପ୍ତ କରିଥିଲା । ନିଜସ୍ୱ ମୌଳିକ ପରମ୍ପରା ସହ ୟୁରୋପୀୟ କାବ୍ୟାଦର୍ଶର ସୂକ୍ଷ୍ମ ସମ୍ପର୍କ ତଥା ସମନ୍ୱୟ ରକ୍ଷାକରି ଏକ ଅଭିନବ କାବ୍ୟଶୈଳୀ ବା ନୂତନ ଇଡ଼ିୟମ୍ ସୃଷ୍ଟି କରିବାକୁ ସକ୍ଷମ ହୋଇଥିଲେ । ମାତ୍ର ବିଶ୍ୱରେ ପାଉଣ୍ଡ-ଇଲିୟଟ୍ ଅଡ଼େନ୍ ପ୍ରଭୃତିଙ୍କର କାବ୍ୟାନ୍ଦୋଳନ ଦ୍ୱାରା ଅନୁପ୍ରାଣିତ ହୋଇ ପ୍ରତିନିଧି ସ୍ଥାନୀୟ ଅଗ୍ରଜ କବି ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ, ଗୁରୁପ୍ରସାଦ ମହାନ୍ତି, ବେଣୁଧର ରାଉତ, ଚନ୍ଦ୍ରାମଣି ବେହେରା ଓ ଭାନୁଜୀ ରାଓ ପ୍ରମୁଖ ସୀତାକାନ୍ତଙ୍କ ପୂର୍ବରୁ ପରୀକ୍ଷା ଆରମ୍ଭ କରିଥିଲେ । ସେଥିପାଇଁ ପରବର୍ତ୍ତୀ କାଳରେ ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର, ସୌଭାଗ୍ୟ ମିଶ୍ର, ଦୀପକ ମିଶ୍ର, ରାଜେନ୍ଦ୍ର ପଣ୍ଡା ଓ କମଳାକାନ୍ତ ଲେଙ୍କା ପ୍ରଭୃତି କବିଗଣ ଉକ୍ତ ଆଭିମୁଖ୍ୟକୁ ଅଧିକ ସକ୍ରିୟ କରି ଓଡ଼ିଆ କବିତା ଜଗତରେ ଏକ ଶକ୍ତିଶାଳୀ ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ ।

ସୁତରାଂ ଓଡ଼ିଆ କବିତାର ଉନ୍ମେଷର ଦ୍ୱିତୀୟ ପର୍ବରେ ରମାକାନ୍ତ ଓ ସୀତାକାନ୍ତଙ୍କ ପ୍ରୟୋଗବାଦୀ ଶୈଳୀକ ପ୍ରତ୍ୟୁତ୍ପନ୍ନତା ଏକ ନୂତନ ସାହିତ୍ୟ ଚେତନାର ଦିଗ୍‌ବଳୟ ପ୍ରସାରିତ କରିଥିଲା । ରମାକାନ୍ତଙ୍କ କବିତାରେ ନୂତନ ପ୍ରକାଶଭଙ୍ଗୀ ଲାଳିତ୍ୟ ଓ କଳ୍ପନାରେ ପ୍ରବାହ ଜନକ ଇନ୍ଦ୍ରିୟବୋଧ (Infla-matory sensation) ଏବଂ ସୀତାକାନ୍ତଙ୍କ କବିତାରେ ନିଜସ୍ୱ ସଂସ୍କୃତି, ଐତିହ୍ୟ ତଥା ପାରମ୍ପରିକ ଚେତନା ଓଡ଼ିଆ ସାହିତ୍ୟକୁ ଏକ ନୂତନ ଦିଗ୍‌ଦର୍ଶନ

ପ୍ରଦାନ କରିଥିଲେ । ସୀତାକାନ୍ତ ମହାପାତ୍ରଙ୍କ ମୌଳିକ ସୃଷ୍ଟି 'ଦୀପ୍ତି ଓ ଦ୍ୟୁତି', 'ଅଷ୍ଟପଦୀ' ଇତ୍ୟାଦି ପ୍ରାରମ୍ଭିକ କାବ୍ୟଗ୍ରନ୍ଥମାନଙ୍କରେ ଇଲିୟଟୀୟ ଭାବଧାରାର ପ୍ରଚ୍ଛନ୍ନ ପଦଚିହ୍ନ ରହିବା ସଙ୍ଗେ ସଙ୍ଗେ ଭାରତୀୟ ପରମ୍ପରା ଓ ସଂସ୍କୃତିର ଏକ ନିର୍ଦ୍ଦିଷ୍ଟ ବସ୍ତୁସ୍ଥିତି ବିଦ୍ୟମାନ । ଶ୍ରୀ ମହାପାତ୍ରଙ୍କ ଚେତନାର ଏକ ଅପରିହାର୍ଯ୍ୟ ଅଂଶବିଶେଷ ହେଉଛି ମୃତ୍ୟୁ । ଏହାର ଅଦ୍ଭୁତ ଆକର୍ଷଣ ଜନିତ ବହୁ ଅନୁଭବକୁ ସେ ପ୍ରାଞ୍ଜଳ ଭାବରେ ବିଭିନ୍ନ ରୂପକଳ୍ପ ମାଧ୍ୟମରେ ବର୍ଣ୍ଣନା କରିଛନ୍ତି । କବି ରିଲ୍‌କେଙ୍କ ପରି ଜୀବନର ସୃଜନଶୀଳ ମାଧ୍ୟମରୁ ଉତ୍ତୀର୍ଣ୍ଣ ହୋଇ ଏକ କସ୍‌ମିକ୍ ବା ସୌରସୃଷ୍ଟି ଭିତରେ ପହଞ୍ଚିବା ପୂର୍ବକ ଜୀବନ ଓ ମୃତ୍ୟୁ ମଧ୍ୟରେ ବିଦ୍ୟମାନ କସ୍‌ମିକ୍‌ଟେନସନ୍‌ର ଅବତାରଣା କରିଛନ୍ତି । ତାଙ୍କର କାବ୍ୟ ନାୟକ ଫ୍ରୟେଡ଼ ବର୍ଣ୍ଣିତ Tanatos ପ୍ରବୃତ୍ତି ବା ମୃତ୍ୟୁ ଇଚ୍ଛାଦ୍ୱାରା ଆକର୍ଷିତ ହୋଇଛି । ରିଲ୍‌କେଙ୍କ ପରି ସେ ବିଶ୍ୱାସ କରନ୍ତି ମୃତ୍ୟୁ ହେଉଛି ପୃଥିବୀର ସବୁଠାରୁ ପବିତ୍ରତମ ଧାରଣା (holiest inspiration) । ପ୍ରସ୍ଥାନଭିମୁଖୀ ବସ୍ତୁସମୂହ ଯଥା—ଜୀବନ, ଶରୀର, ଦୁଃଖ, କ୍ଳାନ୍ତି ଇତ୍ୟାଦିର ରୂପାନ୍ତରରେ ଏକ Supernumerous ସ୍ଥିତି ଲଭ୍ୟ ହୁଏ ଏବଂ ଏହା ପ୍ରତିନିୟତ ମଣିଷକୁ ଊର୍ଦ୍ଧ୍ୱମୁଖୀ କରାଇଥାଏ । ଅବଶ୍ୟ ଏ ମୃତ୍ୟୁ ଜନିତ ଆକର୍ଷଣ ମୂଳରେ ବିଷଣ୍ଣ ବିଷାଦର ସ୍ୱର ଧ୍ୱନିତ ହୋଇଛି । ରମାକାନ୍ତ ରଥଙ୍କ ମୃତ୍ୟୁ ଚେତନା ସୀତାକାନ୍ତଙ୍କ ଠାରୁ ଅଧିକ ତୀବ୍ର ଓ ପ୍ରଖର । ତାଙ୍କ କବିତାଗୁଡ଼ିକର ମୁଖ୍ୟ ଦାର୍ଶନିକ ଅନ୍ତର୍ଦୃଷ୍ଟି ମୃତ୍ୟୁଜନିତ ନିର୍ଜନତା କ୍ଷତ ଦ୍ୱାରା ସଂକ୍ରମିତ ହୋଇଛି । ମୃତ୍ୟୁ ପ୍ରତି ତାଙ୍କର କାବ୍ୟପୁରୁଷର ଦୃଷ୍ଟିଭଙ୍ଗୀ କରୁଣ ପରିହାସପୂର୍ଣ୍ଣ ତଥା ବ୍ୟଙ୍ଗାତ୍ମକ । ତାରି ଭିତରେ ସେ ଅନୁଭବ କରନ୍ତି ପରିବ୍ୟାପ୍ତ ଜୀବନର ଶୋକଗ୍ରସ୍ତ ବ୍ୟର୍ଥତା ଓ ମୃତ୍ୟୁର ଅନିବାର୍ଯ୍ୟତା । କିନ୍ତୁ ମୃତ୍ୟୁର ବେଦନାର୍ତ୍ତ ସ୍ୱର ସୀତାକାନ୍ତଙ୍କ କବିତାରେ ଏକ ଉଦାର ନିର୍ମଳ ଆତ୍ମିକ ଦୃଷ୍ଟିଭଙ୍ଗୀ ଦ୍ୱାରା ପରିମାର୍ଜିତ । ବୋଧହୁଏ ତାଙ୍କ ପାଇଁ ଜନ୍ମ ଆଉ ମୃତ୍ୟୁର ପାର୍ଥକ୍ୟ ଖୁବ୍ ନଗଣ୍ୟ । ମୃତ୍ୟୁ ବିଷୟ ଚିନ୍ତା କଲାବେଳେ ସେ ବୁଦ୍ଧଙ୍କ ପରି ହୋଇପାରନ୍ତି ନିର୍ବାକ ବା ମୂକ କିମ୍ବା ନିତ୍ୟନୈମିତ୍ତିକ କାର୍ଯ୍ୟକଳାପରେ ଆପାତତଃ ବ୍ୟସ୍ତ ରହି ଭୁଲି ଯାଇପାରନ୍ତି ମୃତ୍ୟୁକୁ । ଯଦି ଜନ୍ମ ଏବଂ ମୃତ୍ୟୁ ଏକ ଏବଂ ଅଭିନ୍ନ ପ୍ରକ୍ରିୟା ତେବେ ମୃତ୍ୟୁ ପ୍ରତି ଭୟ କାହିଁକି ? "Life tiself is dead. And the duality is life and death. And death is not just shadow or mystery. It is the negative reality of life". Poetry of our time—"Bear-foot in the reality page 29)"

ସମଗ୍ର ଚେତନା ଓ ମୃତ୍ୟୁ ଚେତନା କବିଙ୍କ ଅବଚେତନର ଏକ ଅବିଚ୍ଛେଦ୍ୟ ଅଙ୍ଗ । ସୀତାକାନ୍ତ ଏହି ବିଷୟରେ ଗଭୀର ଭାବରେ ସଚେତନ ମଧ୍ୟ । ତାଙ୍କର କାବ୍ୟ ଚିନ୍ତନରେ ଉଭୟ ଭାରତୀୟ ଓ ପାଶ୍ଚାତ୍ୟ ମୃତ୍ୟୁ ଚେତନାରେ ଅନେକ ପାର୍ଥକ୍ୟ ପରିଲକ୍ଷିତ ହୁଏ । ଏକ ଇଂରାଜୀ ପ୍ରବନ୍ଧରେ ମୃତ୍ୟୁର ବାସ୍ତବତା ଉପରେ ଆଲୋକପାତ କରି ସେ ଲେଖିଥିଲେ—"Death is an everpresent reality to the Indian mind Death old age and sickness are constantly presenting our lives, death breathes deep and owls cry in the dark; the darkness almost wispers, death is everywhere squeaking and crying". (Bearfoot into Reality—The Relevance of myth and Archetype for Indian poetry Page 18)

ସୀତାକାନ୍ତଙ୍କ ଜୀବନ ଦୃଷ୍ଟିରେ ଭାରତୀୟ ଚେତନାର ଏହି ସତ୍ୟ ଉଦ୍‌ଘାଟିତ । ତାଙ୍କ ଦୃଷ୍ଟିରେ ଜୀବନ ନାଟକର ଶେଷ ଯବନିକା ମୃତ୍ୟୁ । — ("ମନେହୁଏ ମୃତ୍ୟୁ ଖାଲି ଶୀର୍ଷତମ ଶେଷ ଅନୁଭୂତି") ମୃତ୍ୟୁ ପରେ ବୋଧହୁଏ ଜୀବନର ଅଗ୍ରଗତି ସମ୍ଭବ । ଏଣୁ ତାଙ୍କ କବିତାରେ ଜୀବନ ଓ ମୃତ୍ୟୁ ଜନିତ ଦ୍ୱନ୍ଦ୍ୱ ନାହିଁ ।

ମଣିଷ ପାଟରେ ରହି ତାକୁ ଭଲପାଇ ତା'ର ପଡ଼ୋଶୀ ଭାବେ ତା'ର ସୁଖ ଦୁଃଖ, ହାନିଲାଭର ଭାଗୀଦାର ହୋଇ କବି ନିଜର ମାନବବାଦୀ ଓ ପ୍ରାଞ୍ଜିକ ଦୃଷ୍ଟି ଭଙ୍ଗୀ ବ୍ୟକ୍ତ କରିଛନ୍ତି । ତାଙ୍କର ସୃଜନ ଶିଳ୍ପର ମୂଳମନ୍ତ୍ର ସ୍ୱରୂପ ପ୍ରତିଭାତ ହୋଇଛି ତାଙ୍କର ସୂକ୍ଷ୍ମ ମାନବବାଦୀ ଚିନ୍ତାଧାରା । ଓ୍ୱାର୍ଡ଼ସ୍‌ଓ୍ୱାର୍ଥଙ୍କ ପରି ସୀତାକାନ୍ତ କ୍ଳାନ୍ତ ପାଦର କରୁଣ ଓ ହତାଶପୂର୍ଣ୍ଣ ଆର୍ତ୍ତନାଦ ଶୁଣିଛନ୍ତି; ସମ୍ପର୍କଚ୍ୟୁତ ମଣିଷର ବିବ୍ରତ କରୁଣା ଯନ୍ତ୍ରଣା ଭିତରେ ଯେପରି ଭରି ରହିଛି ମଣିଷ ପ୍ରାଣର ନୀରବ ଝଙ୍କାର । ମାନବବାଦୀ ଚିନ୍ତାଧାରା ତାଙ୍କ କବିତାର ଏକ ମୁଖ୍ୟ ଦିଗ । ଏଥିରେ ସତ୍ୟବାଦୀ କାବ୍ୟ ପରମ୍ପରାର ଉଗ୍ର ମାନବବୋଧ ପ୍ରତିଫଳିତ । ସମସାମୟିକ କବିମାନଙ୍କର ଚିନ୍ତା ଓ ଚେତନାରେ ବହୁ ଊର୍ଦ୍ଧ୍ୱରେ କବି ଉଦାର ମାନବପ୍ରୀତି ଓ ବିଶ୍ୱ ପ୍ରୀତିରଶ୍ମିସ୍ୱର ଉଦ୍‌ଗୀର୍ଣ୍ଣ କରିଛନ୍ତି । ଏ ପ୍ରସଙ୍ଗରେ ସେ କହନ୍ତି—"ମୋ କୋଠରୀ ଝରକାର ଆରପାଖରେ ଗୁଗୁଚିଆ ଗଛ, ଟିକି ପ୍ରଜାପତି, ନରେନ୍ ସାଇଁ ଆଉ ନଇଁଛିଆ ଆକାଶର ଦୂର ଉପକୂଳର, ତାରି

ହମନ୍ତେ ଦେଇଛନ୍ତି ପ୍ରାଣସ୍ଫୂର୍ତ୍ତି, ତୋଳିଛନ୍ତି ପ୍ରାଣବନ୍ତ ଗୋଟିଏ ଅର୍କେଷ୍ଟ୍ରା । ଦାଣ୍ଡ ଦୁଆରେ ପାଟି କରି ଭିକ ମାଗୁଥିବା କୁଷ୍ଠରୋଗୀ, ବାଲିକୁଦରେ ଡିଆଁ ମାରି ଖେଳୁଥିବା ଲଙ୍ଗଳା ପିଲା କେଇଟି ଓ କୋଠା ଉପରକୁ ସିମେଣ୍ଟ ବୋହୁଥିବା ମଜୁରିଆ ଭୁଆସୁଣୀ ବୋହୂ, ସମସ୍ତଙ୍କ ଭିତରେ ବଗୁଡ଼ି ହୋଇପଡ଼େ ମୁଁ ।" ପଲ୍ଲୀଚେତନା ଓ ସରଳ ଜୀବନ ଯାପନର ସାବଲୀଳ ଚିତ୍ର ତାଙ୍କ କବିତାର ଅନ୍ୟ ଏକ ଦିଗ । ନିସର୍ଗପଟ ପଲ୍ଲୀପ୍ରାଣର ସ୍ମୃତି ଚିତ୍ରପଟ ତାଙ୍କ କବିତାରେ ସାର୍ଥକ ରୂପ ପରିଗ୍ରହ କରିଛି । ସାଂପ୍ରତିକ ଜଟିଳ ଓ ଯାନ୍ତ୍ରିକ ଜୀବନ ବୃନ୍ଦରୁ ନିଜକୁ ମୁକ୍ତ କରି କବି ଫେରିଛନ୍ତି ପଲ୍ଲୀକୋଳକୁ; ଏବଂ ତା'ର ଅପୂର୍ବ ସ୍ନିଗ୍ଧତାରେ ସେ ହୋଇଛନ୍ତି ଅଭିଭୂତ । ଗ୍ରାମର ନରନାରୀ, ଯାନିଯାତ୍ରା, ପର୍ବ-ପର୍ବାଣୀ, ଗ୍ରାମର କୁକୁଡ଼ା ଲଢ଼େଇ, ଜନ୍ମ, ବିବାହ, ମୃତ୍ୟୁ ବିଭିନ୍ନ ଋତୁର ବର୍ଣ୍ଣ ବୈଭବ ଏହିପରି ବହୁବିଧ ଗ୍ରାମୀଣ ସ୍ମୃତି ସମ୍ବଳିତ ରଚନା ଲେଖି ସୀତାକାନ୍ତ ଆପଣା କବି ପ୍ରତିଭାର ବୈଶିଷ୍ଟ୍ୟ ପ୍ରତିପାଦନ କରିଛନ୍ତି । ଜଗନ୍ନାଥ ସଂସ୍କୃତି ଓ ପରମ୍ପରା ବିଜଡ଼ିତ ଓଡ଼ିଆ ଜାତିର ଜୀବନ ତଥା ପରିବେଶ ଚିତ୍ରଣରେ ତାଙ୍କର ସାଫଲ୍ୟ ଖୁବ୍ ପ୍ରଶସ୍ତ । ଓଡ଼ିଶା ରାଜ୍ୟର ଆଦିବାସୀ ବହୁଳ ଅଞ୍ଚଳରେ ଦୀର୍ଘ ଅନୁଭୂତି ଲାଭକରି ସେମାନଙ୍କର ସାଙ୍ଗୀତିକ କବିତାର ରସାସ୍ୱାଦନ ପୂର୍ବକ କବି ନିଜସ୍ୱ ରଚନାରେ ଅନେକ ସମୟରେ ପ୍ରୟୋଗ କରିଛନ୍ତି ।

ଓଡ଼ିଶାର ଐତିହ୍ୟ, ସଂସ୍କୃତି ଓ ପରମ୍ପରା ଭିତ୍ତିକ ଲୋକକଥା, ଲୋକଗୀତ, ପୌରାଣିକ କାହାଣୀ ସମୂହକୁ ବିଭିନ୍ନ ପରିପ୍ରେକ୍ଷୀରେ ବ୍ୟବହାର କରି ସେ କାବ୍ୟିକ ଆବେଦନରେ ସରଳ ନିଷ୍ଠାର ପରିଚୟ ଦେଇଛନ୍ତି । ଏହି ପରିପ୍ରେକ୍ଷୀରେ କବିତାର ଭାବ, ଶୈଳୀ ଏବଂ ଟେକ୍‌ନିକ୍‌ରେ ଗୁରୁପ୍ରସାଦ ଓ ମୋହାନ୍ତିଙ୍କ ଠାରୁ ସୀତାକାନ୍ତ ମହାପାତ୍ର ସ୍ୱାତନ୍ତ୍ର୍ୟ ଦାବି କରନ୍ତି । 'ଅଷ୍ଟପଦୀ' କାବ୍ୟ ସଙ୍କଳନର 'କୁବୁଜା ପାଇଁ ଗୋଟିଏ ସଙ୍ଗୀତ, କବିତାଟି କବିଙ୍କ ଉନ୍ମେଷ କାଳର ଏକ ପ୍ରତିନିଧି ସ୍ଥାନୀୟ ସୃଷ୍ଟି । ଆତ୍ମାର ନିଦାଘ ଜ୍ୱାଳାରେ ପ୍ରଜ୍ୱଳିତ କୁବ୍‌ଜା ବାସ୍ତବାକୃତ ଜୀବନ୍ତ କ୍ରିୟାରେ ଏକ ସଫଳ ପ୍ରତିଧ୍ୱନି । ଯୁଗ ମାନସ ଓ ଯୁଗ ଚେତନା ସହ ବହୁବିଧ ନାଟକୀୟ ଅନୁଭୂତି ସଂଶ୍ଳେଷଣରେ କୁବ୍‌ଜାର ଆତ୍ମ ସଙ୍ଗୀତ ଝଂକୃତ ।

## କାବ୍ୟରେ ମିଥ୍ ପ୍ରୟୋଗ—

ସୀତାକାନ୍ତ ମହାପାତ୍ରଙ୍କ କବିତାର ସର୍ବଶ୍ରେଷ୍ଠ ଆବେଦନ ମିଥ୍ ଉପରେ ଏକ ସ୍ୱତନ୍ତ୍ର ଆଲୋଚନା କରାଯାଇଛି । ଆଧୁନିକ କବିତାର ଏହି ଜୀବନ୍ତ

ଓ ବଶିଷ୍ଟ ଉସ୍ର ମିଥ୍ ସୀତାକାନ୍ତଙ୍କ କାବ୍ୟ ପରଧିକୁ ଅତି ମାତ୍ରାରେ ପରିବ୍ୟାପ୍ତ କରିଛି । ପୌରାଣିକ ସତ୍ତ୍ୱର ପରିପ୍ରେକ୍ଷୀରେ ସମ୍ପ୍ରତି ଜୀବନର ସମସ୍ତ ଦୁଃଖ, ଗ୍ଲାନି, ଆନନ୍ଦ, ନିରାନନ୍ଦ, ସୁଖ, ସଙ୍କଟ, ସଂଶୟ ଓ ସଂହାର ଇତ୍ୟାଦି ପ୍ରତିଫଳିତ କରି କବି ନିଜ ସୃଷ୍ଟିର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଛନ୍ତି । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏହା ଏକ ନୂତନ ଦିଗ ଉନ୍ମୋଚନ କରିଛି । ବିଭିନ୍ନ ପରିପ୍ରେକ୍ଷୀରେ ମିଥ୍‌ର ପ୍ରତ୍ୟକ୍ଷ ବା ପରୋକ୍ଷ ପ୍ରୟୋଗ କରି କବି ନିଜ ସୃଷ୍ଟି ମାନସରେ ଐତିହ୍ୟ, ପରମ୍ପରା ଓ ସଂସ୍କୃତି ଭାବଚେତନାର ଏକ ମହତ୍ ଯୋଗସୂତ୍ର ସ୍ଥାପନ କରି ପାରିଛନ୍ତି । କବି ମହାପାତ୍ର ବ୍ଲେକ୍, ୟେଟ୍‌ସ୍ ଓ ହାର୍ଟହେନ୍‌ଙ୍କ ପରି ଏକ ରମ୍ୟ ବ୍ୟକ୍ତିଗତ ମିଥ୍ ସିଷ୍ଟମ ଆବିଷ୍କାର କରିଛନ୍ତି । ମଣିଷ ମନର ଅନ୍ତଃସ୍ଥଳ ଚେତନା ସ୍ତରରେ ଅନୁପ୍ରବେଶ ପୂର୍ବକ ଚିନ୍ତା ଓ ଚେତନା କ୍ଷେତ୍ରରେ ନିଜର ପୌରାଣିକ ଅନୁଚିନ୍ତା (ଯାହା ଲେଭିଷ୍ଟ୍ରସ୍‌ଙ୍କ ମତରେ ଏକ ମନନଶୀଳ bricolage) ପ୍ରକାଶ କରିଛନ୍ତି । ମଣିଷ ମନର ଅନ୍ତଃସ୍ଥଳ ଚେତନା ସ୍ତରରେ ଅନୁପ୍ରବେଶ ପୂର୍ବକ ଚିନ୍ତା ଓ ଚେତନା କ୍ଷେତ୍ରରେ ନିଜର ପୌରାଣିକ ଅନୁଚିନ୍ତା (ଯାହା ଲେଭିଷ୍ଟ୍ରସ୍‌ଙ୍କ ମତରେ ଏକ ମନନଶୀଳ bricolage) ପ୍ରକାଶ କରିଛନ୍ତି । ସୁତରାଂ ପୌରାଣିକ ବିମୂର୍ତ୍ତି ଭାବସତ୍ତାକୁ ସାଂପ୍ରତିକ ପରିପ୍ରେକ୍ଷୀରେ ସମନ୍ୱିତ କରିବା ହିଁ ତାଙ୍କ ମତରେ ଉଭୟଙ୍କ ମଧ୍ୟରେ ଏକ ଗୁଣଗତ ସାମ୍ୟ ବା qualitative parallelism ଏବଂ ଏଥିରେ ପର୍ଯ୍ୟାପ୍ତ ତାଙ୍କର ମିଥିକ୍ ଅବଚେତନ । ତାଙ୍କର 'ଅଷ୍ଟପଦୀ'ରେ ମିଥ୍ ବ୍ୟବହାର ଦ୍ୱାରା ଯେଉଁ ଏକ୍‌ସପେରିମେଣ୍ଟ (experiment) ସେ କରିଥିଲେ ତା'ର ସଫଳତା ଉପରେ ଅନେକ ସମାଲୋଚନା ଓ ସମୀକ୍ଷା ପ୍ରକାଶ ପାଇ ସାରିଛି । ସଙ୍କଳନର ଆଠଟି ଦୀର୍ଘ କବିତାରେ ନୈତିକ ଓ ଆଧିଭୌତିକ ସ୍ୱର ଖୁବ୍ ଉଜ୍ଜ୍ୱଳ ଓ ଉଦ୍ଦୀପିତ 'ଅଷ୍ଟପଦୀ'ର ସାମଗ୍ରିକ ଚେତନା ଭିତରେ ସ୍ୱାତନ୍ତ୍ର୍ୟ କାବ୍ୟ ନାୟକର ଚରମ ବେଦନାବୋଧ, ଅସନ୍ତୋଷ, ତା'ର ଆଧ୍ୟାତ୍ମିକ ପତନ, ଜଗତ ଓ ବ୍ୟକ୍ତି ମଧ୍ୟରେ ଅଯୌକ୍ତିକ ଦୂରତ୍ୱ ଏବଂ ମୃତ୍ୟୁର ବିଭୀଷିକାମୟ ଛବି ପୌରାଣିକ ସତ୍ତ୍ୱର ଅଧ୍ୟୟନ ମାଧ୍ୟମରେ ଉତ୍କୀର୍ଣ୍ଣ ହୋଇଛି । ସାମ୍ପ୍ରତିକ ଜୀବନର ଅଶ୍ରୁସିକ୍ତ ଓ ବିଷାଦକ୍ଳିଷ୍ଟ ବେଦନାରେ ମୁହ୍ୟମାନ କାବ୍ୟ ନାୟକର ମନସ୍ତତ୍ତ୍ୱକୁ ସ୍ୱରଚିତ ଲବ୍ଧ ଜ୍ଞାନର ବିଭିନ୍ନ ଅବତାରଣା ଦ୍ୱାରା ନିରୀକ୍ଷଣ କରାଯାଇଛି । ମୋଟାମୋଟି ଭାବରେ ସୀତାକାନ୍ତଙ୍କ କାବ୍ୟ ଚେତନାକୁ ବଳିଷ୍ଠ କରିଥିବା ବିଭିନ୍ନ ପ୍ରେରଣା ମଧ୍ୟରୁ ରାମାୟଣ, ମହାଭାରତ, ଭାଗବତ, ବେଦ, ଉପନିଷଦ ଓ ଓଡ଼ିଶାର ପୁରାତନ ମଧ୍ୟଯୁଗୀୟ ସାହିତ୍ୟ ଉଲ୍ଲେଖନୀୟ । ନିଜସ୍ୱ

ଶୈଳୀର ଲୌକିକ ରୀତି ଚାତୁର୍ଯ୍ୟ ଦ୍ୱାରା ଭିନ୍ନ ଭିନ୍ନ ପୁରାତନ ବା ମିଥିକ୍ ଉପକଥାର ସୂଚନା ଦେଇ ସେ ପ୍ରକାଶ ଭଙ୍ଗୀକୁ ସୃଷ୍ଟି କରିଛନ୍ତି ।

## (ଗ) କବିତା ସଙ୍କଳନମାନଙ୍କର ଆଲୋଚନା—'ଦୀପ୍ତି ଓ ଦ୍ୟୁତି' (୧୯୬୩)

ସର୍ବମୋଟ ୪୭ଟି କବିତା ଗୁଚ୍ଛର ସଙ୍କଳନରେ ୧୯୬୩ ମସିହାରେ 'ଦୀପ୍ତି ଓ ଦ୍ୟୁତି' ଶ୍ରୀ ସୀତାକାନ୍ତ ମହାପାତ୍ରଙ୍କ କବି ଜୀବନର ଉନ୍ମେଷକ ଭାବରେ ଓଡ଼ିଆ ସାହିତ୍ୟ ଜଗତରେ ଆଲୋଡ଼ନ ସୃଷ୍ଟି କରିଥିଲା । ଏହା ତାଙ୍କ ଯୌବନର ପ୍ରଥମ ଝଲକ ଭାବରେ ଚମକିତ ହେଲେହେଁ ଏଥିରେ ଏକ ପ୍ରବୀଣ ମନର ମୁଦ୍ରାଙ୍କନ ସ୍ପଷ୍ଟ ବାରିହୁଏ । କବି ତାଙ୍କର କାବ୍ୟିକ ଦୃଷ୍ଟି-ଭଙ୍ଗୀକୁ କେବଳ ସୀମିତ ସ୍ତରରେ ବାନ୍ଧି ରଖିପାରି ନାହାନ୍ତି ବରଂ ବହୁ ବିଚିତ୍ର ବର୍ଣ୍ଣାଳୀର ବିଶ୍ଳେଷଣ ଭିତରେ ଯେଉଁ ପୃଷ୍ଠଭୂମି ଗଠିତ ହୋଇଛି ସେଥିପ୍ରତି ସଚେତନ ହୋଇଛନ୍ତି । ତେଣୁ ତାଙ୍କ କବିତାରେ ମିଥ୍, ମେଟାଫିଜିକାଲ୍ ଶୈଳୀ, ଚିତ୍ରକଳ୍ପ ତଥା ସମ୍ବେଦନଶୀଳ ମାନବବାଦୀ ଭାବନାର ଅପୂର୍ବ ସଙ୍ଗମ ସାଧିତ ହୋଇଛି । ମିଥ୍ ଗ୍ରହଣରେ ସୀତାକାନ୍ତ ଦୁଇଟି ଉତ୍ସକୁ ମୁଖ୍ୟ ରୂପେ ଗ୍ରହଣ କରିଛନ୍ତି । ଯଥା—ମହାଭାରତ ଓ ଭାଗବତ । ତାଙ୍କ କାବ୍ୟ ଜଗତରେ ଏ ଦୁଇ ଉତ୍ସର ଉପାଦାନ ସୁସ୍ପଷ୍ଟ ଓ ସଂଗଠିତ । 'ଦୀପ୍ତି ଓ ଦ୍ୟୁତି'ର 'କାରା ଶବରର ସଙ୍ଗୀତ', 'ଦୁର୍ଯ୍ୟୋଧନ', 'ଯୁଦ୍ଧୋତ୍ତର', 'ବିସ୍ତ ଦର୍ପଣରେ ସୂର୍ଯ୍ୟାସ୍ତ' ପ୍ରଭୃତି କବିତାରେ ମହାଭାରତର ମିଥିକ୍ ଚରିତ୍ରଗୁଡ଼ିକ ସାଂପ୍ରତିକ ଜୀବନ ଜିଜ୍ଞାସାକୁ ସଫଳ ଭାବରେ ରୂପାୟିତ କରିଛନ୍ତି । 'ଦୀପ୍ତି ଓ ଦ୍ୟୁତି'ରେ ସଙ୍କଳିତ ହୋଇଥିବା ମିଥ୍‌ଧର୍ମୀ କବିତାଗୁଡ଼ିକରେ ଏକ ସ୍ୱାଭିମାନୀ ମାନବାତ୍ମାର ସ୍ୱଚ୍ଛ ଅଙ୍ଗୀକାରବୋଧ ପ୍ରଚ୍ଛନ୍ନ । କବିତା 'ବିସ୍ତଦର୍ପଣରେ ସୂର୍ଯ୍ୟାସ୍ତ' କବିତାଟି ବେଶ୍ ମନକୁ ସ୍ପର୍ଶ କରେ । ସେ ଏହି କବିତାରେ 'ଶ୍ରୀମଦ୍ ଭଗବତ୍‌ଗୀତା'ର ଅର୍ଜୁନଙ୍କ ବିଶ୍ୱରୂପ ଦର୍ଶନର ସାର୍ଥକ ସମନ୍ୱୟ ଘଟାଇ ଏକ ମିଥ୍‌ରୂପୀ ଚେତନା ସୃଷ୍ଟି କରିବାରେ ସଫଳ ହୋଇଛନ୍ତି । ''ସବୁ ଧାଇଁ ଚାଲିଛନ୍ତି ମିଶିବାକୁ / ଜୀବମାନ ସେଇ ଗୋଟିଏ ଆଗ୍ନେୟ ସ୍ଥିତିରେ ସବୁ / ତା' ଭିତରେ ଲୀନ / ବିଶ୍ୱରୂପ ଦର୍ଶନରେ ଥରିଉଠେ କାକୁସ୍ଥ ଅର୍ଜୁନ ।''

ବିସ୍ ସଂଶିତ କବିତାରେ ଚଳମାନ ଜୀବନର ପ୍ରତୀକ । ଦର୍ପଣ ଏ ଜୀବନର କ୍ୟାନଭାସ୍‌କୁ ସୂଚିତ କରୁଛି । ଜୀବନର ଏହି କ୍ୟାନଭାସ୍‌ରେ ସୂର୍ଯ୍ୟୋଦୟ ଭଳି ସୂର୍ଯ୍ୟାସ୍ତ ମଧ୍ୟ ଏକ ଅନିବାର୍ଯ୍ୟ ସତ୍ୟ; ସେହି ସତ୍ୟକୁ ମଣିଷ ସ୍ୱୀକାର କରେ ।

'ମହାଭାରତ'ର ଅର୍ଜୁନ ଭଳି ବିଶ୍ୱରୂପ ଦର୍ଶନରେ ସେ ଶିହରିତ ହୁଏ । କାରଣ ଆଧୁନିକ ଅର୍ଜୁନ ଜାଣେ ଯେ—''ମାଳ ମାଳ ଏ ବ୍ରହ୍ମାଣ୍ଡ ଲୁଚିଯାଏ, ଛପିଯାଏ, ଶୋଷିନିଏ ଲୋମକୂପେ ଏ ଆତମ ପିଣ୍ଡ / ସବୁ ଧରିନିଏ ନିଜ ଶେଷ ରଶ୍ମିଜାଲେ ଅଂଶୁମାନ / ବସ୍ ଦର୍ପଣରେ ଏ ଅଗ୍ନିଗୋଲକ / (ଇଏ କ'ଣ ବ୍ରହ୍ମଲୋକ ନା ଦେବଲୋକ ?)''

ସେଥିପାଇଁ ମୃତ୍ୟୁରେ ମଧ୍ୟ ତା' ପାଇଁ ପାପ୍ତି ମନ୍ତ୍ର ଜୀବନ ତରଙ୍ଗ ଉଚ୍ଛଳ ହୁଏ, ଆକାଶକୁ ଛୁଏଁ । ଉଭୟ ମାଟି ଓ ଆକାଶକୁ ପାପ୍ତି ମନ୍ତ୍ର କରିଦିଏ । 'ପାପ୍ତି ଓ ଦ୍ୟୁତି'ର କେତୋଟି କବିତା 'ବସ୍ ଦର୍ପଣରେ ସୂର୍ଯ୍ୟାସ୍ତ', 'ଆଲବମ୍', 'ଆଖି-୨', 'ବନ୍ଦିନୀ', 'ପୁଷ୍ପ ମନ୍ଦିର', ଉତ୍ତରଣ ପ୍ରଭୃତି କବିତାରେ କବିଙ୍କ ଦାର୍ଶନିକ ମନନଶୀଳତାର ପରିଚୟ ସ୍ପଷ୍ଟ ହୋଇଛି । ଜୀବନ ଓ ମୃତ୍ୟୁର ମିଶ୍ରିତ ଅନୁଭୂତି ସହିତ ଏକ ଭିନ୍ନ ରାଜ୍ୟର କଳ୍ପନା ଓ ପାରତ୍ରିକ ଭାବନାର ଚିହ୍ନ ଏସବୁ କବିତା ବହନ କରନ୍ତି । ଏହି ଭାବନାର ପ୍ରକାଶ ନିମନ୍ତେ ସେ ମହାନୀରବତା, ଶୂନ୍ୟସଂହିତା, ଅକ୍ଷେସ୍ୱର ଦୂର ଉପକୂଳ, ଚେତନାର ନିମଗ୍ନ ପ୍ରହର, ମୂଳାଧାର, ଅସୀମଶୂନ୍ୟତା, ପ୍ରତିଧ୍ୱନି, ପ୍ରଥମ ଶବ୍ଦ, ଅଶବ୍ଦ ଅବଶିଷ୍ଟ, ଶେଷ ନୀରବତା, ନୀଳସ୍ୱପ୍ନ, ମହାପାରାବାର, ନିରାକାର, ଶୂନ୍ୟତାନ, ମାୟାଜାଲ ଆଦି କେତୋଟି ଶବ୍ଦକୁ ବାରମ୍ବାର ପ୍ରୟୋଗ କରିଛନ୍ତି । 'ପାପ୍ତି ଓ ଦ୍ୟୁତି'ର ପ୍ରଥମ କବିତା 'ଅଶ୍ରୁ ଓ ସ୍ୱାଦ'ରେ କବିଙ୍କର ଜୀବନ ପ୍ରତି କାବ୍ୟ ପ୍ରତିଶ୍ରୁତିର ଇସ୍ତାହାର ଘୋଷିତ ହୋଇଛି ।

''ହେ ମୋର କବିତା / ତୁମେ ନୁହଁ କାଶ୍ମୀରର ଡାଲ୍ ହ୍ରଦ / ପହ୍ଲାର ପାଇନ୍ ଜଙ୍ଗଲ / ଉଟି ଅବା ଦୂର ନୈନିତାଲ / ତମେ ଗୋଟେ ପରିଚିତ (ଓ ଅଶ୍ଳୀଳ୍ୟ) ଗାଉଁଲି ସକାଳ ।'' 'ପାପ୍ତି ଓ ଦ୍ୟୁତି'ର ବହୁ କବିତାରେ ଜୀବନର ଏହି ଦୁଇ ଦିଗନ୍ତର ଚିତ୍ର ପ୍ରତିଫଳିତ । ବ୍ୟକ୍ତିସତ୍ତା, ପରିପାର୍ଶ୍ୱ ତଥା ସମୟର ଦ୍ୱନ୍ଦ୍ୱ ଭିତରେ କେଉଁଠି ଯଦି ଜୀବନର ଅନ୍ଧକାର ଦିଗଟିକୁ ସେ ଉଦ୍‌ଘାଟିତ କରିଛନ୍ତି ତେବେ ଅନ୍ୟ କେଉଁଠି ତା'ର ବିପରୀତ ଦିଗଟି ପ୍ରତି ତାଙ୍କର ବିଶ୍ୱାସ ଦୃଢ଼ ହୋଇଛି । ସ୍ଥିତିର ଦୁର୍ବିସହତା, ଜୀବନର ବ୍ୟଥା, ବେଦନା, ବ୍ୟର୍ଥତା, ନିଃସଙ୍ଗତା ଓ ଅନ୍ଧାର ପ୍ରଭୃତିର ଚିତ୍ର ତାଙ୍କର 'ସତ୍ତା ଓ ସମୟ', 'ବନ୍ଦିନୀ', 'ଟ୍ରାଜେଡି', 'ଆଲୋକ ଗୀତିର ତିନୋଟି ସ୍ୱର', 'ସହରରେ ଗ୍ରୀଷ୍ମ', 'ହାରାକିରି', 'ଗୋରାକବର', 'ପରିଚୟ', 'ହସ୍‌ପିଟାଲ', 'ଶୋକସଭା', 'ପ୍ରତିଫଳନ', 'ସହରର ଇତିକଥା', 'କର୍ଫ୍ୟୁ', 'ଆତ୍ମରକ୍ଷା' ପ୍ରଭୃତି କବିତାଗୁଡ଼ିକରେ ଭଙ୍ଗା,

ଦେଉଳ, ଦରଭଙ୍ଗା, କୋଠା, ଭଗ୍ନ, ରଥଚକ୍ର, କୃଷ୍ଣବେଣୀ, ଘାଆ ଦେହ, ଚୁମହୀନ ଚୁଲିକୁଣ୍ଡ ଏହିସବୁ ଅନୁସଙ୍ଗ ଆସି ଯାଇଛନ୍ତି । ଏହି ସବୁଥିରେ ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ଏକାନ୍ତ ବାସ୍ତବ ଓ ପ୍ରତିକ୍ରିୟାମୂଳକ । ତାଙ୍କ ମତରେ ଏହି ସମସ୍ତ ଏକ ହସ୍‌ପିଟାଲ ଓ ଆମେ ସମସ୍ତେ ଜଣେ ଜଣେ ରୋଗାକ୍ରାନ୍ତ ମଣିଷ । ଆମର କୌଣସି ଆତ୍ମପରିଚୟ ନାହିଁ । ଖଟିଆର ନମ୍ବର ହିଁ ଆମର ପରିଚୟ— "ସେମାନଙ୍କ ପରିଚୟ / ଓ୍ୱାର୍ଡ଼ର ନମ୍ବର / ଆଉ କାନ୍ଥରେ ଝୁଲୁଥିବା ଏ କେଡ଼୍‌ର ନମ୍ବର / ସଂଖ୍ୟାର ଏ ପରିଚିତ ଏକା ସତ / ଆଉ ସବୁ ମିଛ / ଜୀବନ ଓ ଅନୁଭୂତି / ସ୍ୱାତନ୍ତ୍ର୍ୟ ଓ ଆତ୍ମିକତା ସବୁ ଅପହଞ୍ଚ ।"

(ହସ୍‌ପିଟାଲ ପୃ ୬୦— ଯାତ୍ରି ଓ ଦୃଶ୍ୟ)

ମଣିଷମାନେ (Auden) ଅଡ଼େନଙ୍କ ପରି ସେହି ଅନ୍‌ନୋନ୍ ସିଟିଜେନ୍ ପରି (Unknown Citizen) ଯାହାର ପରିଚୟ ମାତ୍ର ଗୋଟିଏ ନମ୍ବର । ଏକାଧିକ କବିତାରେ ସେ ସୁକୁମାର ଅନୁଭୂତିହୀନ ସ୍ଥୂଳ ଜୀବନ ସର୍ବସ୍ୱ ସହରୀ ମଣିଷର ଦୂରବସ୍ଥାକୁ ପ୍ରକାଶ କରିଛନ୍ତି । ବିପୁଳ କୋଳାହଳ ଅନାତ୍ମୀୟ ପରିବେଶ ଓ ପ୍ରବଳ ସ୍ୱାର୍ଥର ଭିଡ଼ ଭିତରେ ଭାବପ୍ରବଣ ସହରୀ ମଣିଷଟି (ନିଜେ କବି ହୋଇ ପାରନ୍ତି) ଏହି ଅସ୍ୱସ୍ତିବୋଧରୁ ମୁକ୍ତ ଚାହୁଁଛି । ତା'ର ବିଶ୍ୱାସ ମଥୁରା ନଗରୀରେ ଦିନେ ନା ଦିନେ କୃଷ୍ଣ ପାଦ ଦେବେ ଓ କୁବୁଜାର କ୍ଳେଦକୋଣ୍ଡ ଅସୁନ୍ଦର ଆକୃତି ତାଙ୍କ ସ୍ପର୍ଶ ମାତ୍ରେ ବଦଳିଯିବ । (ସହରରେ ଇତିକଥା) କୁବୁଜା ଏଠାରେ ଆଧୁନିକ ସହରର ସିମ୍ବଲ ଭାବରେ ଗୃହୀତ ହୋଇଛି । ବସ୍ତୁତଃ ପ୍ରୟୋଗବାଦୀ କବିତାରେ ସମସ୍ତ ସଚେତନତା ଓ ନୈରାଶ୍ୟବାଦିତାର ସ୍ୱର ଖୁବ୍ ନିବିଡ଼ ଭାବରେ ଶୁଣା ଯାଇଥାଏ । "ଚମକି ନିଦରୁ ଉଠି ଦେଖେ ମୋର ବିଛଣାରେ ମଲା ଗୋଟେ ଗ୍ରେଟ ପ୍ରଜାପତି / ଆଲୁଅ ଜଳୁଛି ଘରେ, ଗୃହଆଡ଼େ ସ୍ତବ୍‌ଧ ଅମାରାତି / ଚିହ୍ନି କରୁ ପାରୁନି ମୁଁ ସିଏ ଗୋଟେ ପ୍ରଜାପତି ଅଥବା ମୋ ଆପଣା ହୃଦୟ / ଜାଣିପାରୁନି ନିଜେ / ନିଦ ମୋର ସରିଅଛି ଅଥବା ଏ ସ୍ୱପ୍ନର ଅନ୍ୱୟ ।" (ଟ୍ରାଜେଡ଼ି)

ଆଧୁନିକ ମଣିଷ ଜୀବନ ପାଇଁ ସୌନ୍ଦର୍ଯ୍ୟର ଏହି ଅପମୃତ୍ୟୁ 'ମଲା ପ୍ରଜାପତି'ର ରୂପକଳ୍ପ ମଧ୍ୟରେ ସ୍ପଷ୍ଟ ପ୍ରତିଫଳିତ ହୋଇଛି । ଆଧୁନିକ ମଣିଷ କ୍ରମଶଃ ଉତ୍ସଚ୍ୟୁତ ଓ ନୈରାଶ୍ୟ ବିଜଡ଼ିତ ହୋଇ ଖାଲି ଉପରକୁ ଚାହୁଁଛି । "ଖୋଜି ଖୋଜି ନିଜ ମୂଳ ନିର୍ମୂଳୀ ନଟାରେ ।" (ହାବିକୁଦ) ଏହି ପଂକ୍ତିଟି ଅଗ୍ରଜ କବି ଗୁରୁପ୍ରସାଦଙ୍କ କାଳପୁରୁଷର କାବ୍ୟ ନାୟକର ବିଫଳ ଜିଜ୍ଞାସା

ସହିତ ସାମଞ୍ଜସ୍ୟ ରକ୍ଷାକରେ । ମଣିଷ ତା'ର ମୂଳକୁ ଖୋଜୁଛି, ଖୋଜୁଛି ତା'ର ପରିଚୟ ଅଥଚ କେତେ ବିଫଳତାର ଏହି ଅନ୍ୱେଷଣ ସତେ—"କିଏ ଏହି ମୁଁ ତା'ର ଏତେ ଟିକେ ସ୍ମୃତି / ଶତଚେଷ୍ଟା ପରେ ମୋର ମନେ ବି ନ ଜାଗେ ।"

(ଗ୍ରୀଷ୍ମସନ୍ଧ୍ୟା ପରେ ଆଷାଢ଼)

ଏହିସବୁ ବେଦନା ବିଧୂର ଅନ୍ୱେଷା ମଧ୍ୟରେ ତଥାପି ଜୀବନ ପାଇଁ ଆଶା ଓ ଐଶ୍ୱର୍ଯ୍ୟର ଭୂମିକା ଅଛି । ସେହି ଦୃଢ଼ ବିଶ୍ୱାସ ତାଙ୍କ କବିତାର ସମସ୍ତ ନୈରାଶ୍ୟବାଦୀ ଆକୁଳତାକୁ ଯୋଡ଼ାଇ ଦେଉଛି । "ତଥାପି ଜାଣେନା କାହିଁ / କି ବିଶ୍ୱାସେ ଏ ମୋର ହୃଦୟ / ଭଙ୍ଗାଭୁଟା, ପୋଡ଼ାଜଳା ସ୍ମୃତି ଘାଣ୍ଟି / ଖୋଜି ବସେ ତା' ଭିତରେ ଏତେ ଟିକେ ସବୁଜ ପ୍ରତ୍ୟୟ ।"

(ନଈପଠା)

କିମ୍ବା "ଯେତେ କାହିଁ ଝୁଲପରେ / ଅତନ୍ଦ୍ର ନୀଳିମା ମାଗେ ଗଭୀର ଆଶ୍ଳେଷ / କୃଷ୍ଣ କେବେ ପାଦ ଦେବେ ମଥୁରାରେ କୁବୁଜାର ଘରେ / ଲୋଣ୍ଡ୍-କୋଗ୍ନ ପୋଡ଼ାଜଳା ତନୁ ଦେଇ / ଏ ସହରର ବସିଛି ଦୁଆରେ ।" (ସହରର ଇତିକଥା) ପ୍ରଭୃତି ପଂକ୍ତିମାନଙ୍କରୁ ତାଙ୍କ କାବ୍ୟ ମାନସର ନିଶ୍ଚିତ ସମସ୍ୟା ପାଇଁ ପ୍ରତୀକ୍ଷା ଓ ଅନ୍ୱେଷଣ ଚିତ୍ର ସ୍ପଷ୍ଟ ହୁଏ । ତାଙ୍କ ଭିତରର ଅଧ୍ୟାତ୍ମବାଦୀ କବି ଦୃଷ୍ଟିକୁ ନିଶ୍ଚିତ ଭାବରେ ଆଶାବାଦୀ ବୋଲି କହିବାକୁ ହେବ । ଏହି ଆଶାବାଦର ସଙ୍ଗୀତ ପରବର୍ତ୍ତୀ କାବ୍ୟ ସଙ୍କଳନ 'ଅଷ୍ଟପଦୀ'ରେ ଅଧିକ ସାନ୍ଦ୍ର ମନେ ହୋଇଛି । ମୃତ ଅତୀତ ଓ ଧୂସର ବର୍ତ୍ତମାନର ଚିତ୍ରରେ ସେ ଯେତିକି ମ୍ରିୟମାଣ, ଏକ ସମୃଦ୍ଧ ଭବିଷ୍ୟତର ସ୍ୱପ୍ନରେ ମଧ୍ୟ ସେତିକି ବିଭୋର ହୋଇଛନ୍ତି । 'ଦାୟାଦ' କବିତାରେ ଏକ ଚମତ୍କାର ରୂପକଳ୍ପ ମଧ୍ୟରେ ଏହି ବିଶ୍ୱାସ ପ୍ରକାଶ ପାଇଛି—"ଆମେସବୁ ସେବାଳୁଆ ଯିଏ ମଲୁ କାଜଗଡ଼ା ଖୋଳପା ଭିତରେ / ଆମର ଦାୟାଦ ତୁମେ ଜରତ୍କାରୁ ପ୍ରଜାପତି ହୋଇ ରୂପନଅ, ଉଡ଼ିଯାଅ / ବିଚିତ୍ର ଡେଣା ହଲାଇ ଆଶ୍ଚର୍ଯ୍ୟ ଏ ରଙ୍ଗୀନ ଖରାରେ ।" (ଦାୟାଦ) 'ଅପୂ' କବିତାରେ ତାଙ୍କ ପ୍ରାଣର ଏଇ ବର୍ଣ୍ଣିଳ ବିଶ୍ୱାସ ଏକ ଆବେଗ ଏବଂ ଗଭୀର ଉପଲବ୍ଧି ମାଧ୍ୟମରେ ସ୍ୱଚ୍ଛ ହୋଇ ପ୍ରକାଶିତ ହୋଇଛି ।—"ରୂପ, ରସ, ଗନ୍ଧ, ସ୍ପର୍ଶ ଶବ୍ଦର ପୃଥିବୀ / ଓ ତା' ବାହାରେ ଅସୀମର ଛବି / ଅନାଗତ ଅନାହୂତର ପୂରବୀ / ଧୋଇଦେଉ ତୋ ଆଖିର ଲୁହ ।" (ଅପୂ)

ଯେଉଁ ପୃଥିବୀକୁ ଏତେ ଭଲପାଉ—କେଉଁ ସନାତନ କାଳରୁ ସେ ବସି ରହିଛି ତା'ର ସ୍ନେହ ସ୍ନିଗ୍ଧ, ସୋହାଗ କୋମଳ ମନ ନେଇ । କୌଣସି ସତ୍ତ୍ୱ

ମଣିଷ କାନ୍ତଦର୍ଶୀ । କବି କେବେ ଏହି ପୃଥିବୀ ନଷ୍ଟ ହୋଇଯାଉ ବୋଲି ଚାହିଁବ ନାହିଁ । ଶିଳ୍ପୀ ଓ କଳାକାର ତାକୁ ହିଁ ନେଇ ତା'ର ସୃଜନର ସ୍ୱପ୍ନ ଦେଖେ । କବି ସୀତାକାନ୍ତ ତାଙ୍କ 'ଦୀପ୍ତି ଓ ଦ୍ୟୁତି'ର ଶେଷ କବିତା 'ବୁଢ଼ୀମା'ରେ ଏହାର ପ୍ରାଣୋଚ୍ଛଳ ସ୍ୱପ୍ନଭରା ପୃଥିବୀକୁ କଳ୍ପନାରେ ଆଣିଛନ୍ତି ଓ ପ୍ରତ୍ୟକ୍ଷ ଭାବରେ ଯୁଦ୍ଧ ଓ ତତ୍‌ଜନିତ ଧ୍ୱଂସ ପ୍ରକ୍ରିୟାକୁ ଘୃଣା କରିଛନ୍ତି । "ଆମେ କ'ଣ ଚାହୁଁ ଏଇ ଆଈବୁଢ଼ୀ ମରିଯାଉ / ସବୁ ତା'ର ଗପକୁହା / ଶୁଖୁ ତା'ର ମୁହଁରୁ ସେ ଦରଭୁଲି ହସ / ଗପ କ'ଣ ଆଜି ତା'ର ହୋଇଯିବ ଶେଷ ।"

(ବୁଢ଼ୀମା')

ସୀତାକାନ୍ତ ମହାପାତ୍ରଙ୍କ କବିତାରେ ମେଟାଫିଜିକାଲ୍ ଦୃଷ୍ଟିଭଙ୍ଗୀର ଉଦ୍ଭରଣ ସ୍ପଷ୍ଟ ଲକ୍ଷ୍ୟ କରିହୁଏ । ଏହି ପ୍ରସଙ୍ଗରେ 'ଦୀପ୍ତି ଓ ଦ୍ୟୁତି'ର ସର୍ବଶ୍ରେଷ୍ଠ କବିତା 'ଜାରା ଶବରର ସଙ୍ଗୀତ'କୁ ଆଲୋଚନାର ପରିସରଭୁକ୍ତ କରାଯାଇ ପାରେ । ଏହି କବିତା ସମ୍ପର୍କରେ ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ କହନ୍ତି— "ଚିନ୍ତା ଓ ଆବେଗର ସମନ୍ୱୟ ଏ କବିତାର ପ୍ରଧାନ ସୌନ୍ଦର୍ଯ୍ୟ । ଭାରତୀୟ ପୁରାଣର ଏକ ଚରିତ୍ର ମାଧ୍ୟମରେ କବି ଏକ ଗଭୀର ଅନୁଭୂତିକୁ ସ୍ପର୍ଶ କରୁଛନ୍ତି । ସମଗ୍ର କବିତାରେ ବୈଷ୍ଣବ କବି ସୁଲଭ ଏକ ଆବେଦନ ଓ ତନ୍ମୟତା ବିଦ୍ୟମାନ । ଯୁଗେ ଯୁଗେ ଭଗବାନ ଓ ମଣିଷର ସମ୍ପର୍କ ଏ କବିତାର ବିଷୟବସ୍ତୁ ।" (ଗ୍ରନ୍ଥବିଚାର—ଦୀପ୍ତି ଓ ଦ୍ୟୁତି—ଝଙ୍କାର ୧୬ ବର୍ଷ ୧୨ ସଂଖ୍ୟା)

ପ୍ରଭୁଙ୍କର ଛଳନାମୟ ରୂପ, ରହସ୍ୟ ବିଜଡ଼ିତ ସ୍ୱରୂପ ମଧ୍ୟରୁ ନବଜନ୍ମ ପାଇଁ ଜାରା ଶବର ଅପେକ୍ଷା କରିଛି । ଭଗବାନଙ୍କ ସମସ୍ତ କ୍ରିୟାକଳାପ ତା' ଆଗରେ ହୋଇ ଉଠିଛି ଛଳନାପୂର୍ଣ୍ଣ । ସେ ଭାବୁଛି—"ଇଏ କ'ଣ ଛଳନାର ବ୍ରତ ଉଦ୍‌ଯାପନ ପ୍ରଭୋ ? / ଗୋପରୁ ଦ୍ୱାରକା ଯାତ୍ରା, ଶାମୁ ନାରୀବେଶ ଆଉ ବେତବଣ ପରେ / ତୋ ମନର ଅନ୍ତିମ ଉଚ୍ଛ୍ୱାସ / ସବୁ ଖାଲି ମିଛଲାଗେ, ସବୁ ପ୍ରତାରଣା / ଠିକ ମଣିଷ ସାଥିରେ ଲୁଚକାଳି ଖେଳୁଛିନା / ଏଇ ଶୁଭେ ଆକାଶେ ତୋ ଚୁପା ଚୁପା ହସ ।" (ଜାରା ଶବରର ସଙ୍ଗୀତ)

ଏହି ମିଥ୍‌ଟି ମହାଭାରତରୁ ଗୃହୀତ । ଭାରତୀୟ ପୁରାଣ ପରମ୍ପରାରେ ଭଗବାନଙ୍କର ଦ୍ୱିବିଧ ରୂପ ପରିଲକ୍ଷିତ । ବୈକୁଣ୍ଠରେ ତାଙ୍କର ମାୟାରହିତ କଳେବର ଧାରଣ କାଳରେ ମାୟାବଧିତ ହୁଏ । ଭକ୍ତ ମୁକ୍ତି ପାଇଁ ଏ ଛଳନା । ଶଂସିତ କବିତାରେ କିନ୍ତୁ ଭକ୍ତ ଜାରା ସ୍ୱକୀୟ ମୁକ୍ତି କାମନା କରେନାହିଁ ବରଂ ପରୋକ୍ଷରେ ଦୁଃଖ ଓ ଦହନକୁ ଜୀବନର ସ୍ୱାଭାବିକ ସତ୍ୟରୂପେ ଗ୍ରହଣ କରିନିଏ ।

—"ହେ ମାୟାବୀ ! ବିଶ୍ୱରୂପ ଖାଲି ମୋର ଏତିକି ମିନତି / ଯୁଗେ ଯୁଗେ ଫାର ମୋର ଦେଇଚ୍ଛ ତୋତେ / ତୋ ଦେହରୁ, ତୋ ଆପଣା ଛଳନାରୁ ତତେଇ ମୁକତି ।" (କାଳି ଶବର ସଙ୍ଗୀତ)

'ଉପନିଷଦ'ର ନଚିକେତା ଭଳି ସେ "ଜାଣିବାକୁ ମାଗୁନାହିଁ / ଜୀବନ ଓ ମରଣର ରହସ୍ୟ ଅମୋଘ / କୁରୁକ୍ଷେତ୍ରେ ଅର୍ଜୁନର ବିଷାଦ ଖଣ୍ଡନ ବାଣୀ ।"

ଅଥବା କୁରୁକ୍ଷେତ୍ରର ଅର୍ଜୁନ ଭଳି ବିଷାଦବୋଧରୁ ମୁକ୍ତି ପାଇଁ ସେ ଜ୍ଞାନ, କର୍ମ ବା ଭକ୍ତିଯୋଗର ବ୍ୟାଖ୍ୟା ଆବଶ୍ୟକ କରେନାହିଁ । କାରଣ ଯୁଗେ ଯୁଗେ ଏହିସବୁ ବିଶ୍ୱରୂପ ବନ୍ଧନରେ ଭକ୍ତକୁ ସେ ପ୍ରତାରିତ କରି ଆସିଛି । ସେଥିପାଇଁ କାଳି ସ୍ପଷ୍ଟ ରୂପେ ଘୋଷଣା କରେ—"ସବୁ ତ ଦେଖୁଛୁ ତୁଇ ବର୍ତ୍ତମାନ, ଭୂତ ଓ ଭବିଷ୍ୟ / ସବୁ ତ ଜାଣୁଛୁ ତୁଇ ଜୀବନ ଓ ମରଣ ରହସ୍ୟ / ଆମ ପାଇଁ ଖାଲି ଦେଇଛୁ ବିସ୍ମୃତିର ଅବୁଝା ଅନ୍ଧାର / ଛଳନାର ଯେତେ ମାୟାଜାଲ ।"

ବସ୍ତୁତଃ ଛଳନାର ଏ ଭ୍ରମାଲୋକ ଭିତରେ ଉଭୟ କାଳି ଓ କୃଷ୍ଣ ମୃତ୍ୟୁ ଲଭିବେ । ହୁଏତ ଉଭୟେ ପୁନର୍ଜନ୍ମ ପାଇବେ । କାରଣ ବସ୍ତ୍ର ଜୀର୍ଣ୍ଣ ହେବା ପରେ ଯେଉଁଭଳି ତାହାକୁ ପରିତ୍ୟାଗ କରିଯାଇ ନୂତନ ବସ୍ତ୍ର ପରିଧାନ କରିଯାଏ, ସେଭଳି ଶରୀର ଜୀର୍ଣ୍ଣ ହେବା ପରେ ଆତ୍ମା ତାହାକୁ ପରିତ୍ୟାଗ କରି ନୂତନ ଶରୀରରେ ପ୍ରବେଶ କରେ । ତ୍ରେତୟା ଯୁଗର ଶ୍ରୀରାମ ଓ ଅଙ୍ଗଦ ଏହିଭଳି ପୁନର୍ଜନ୍ମ ଲାଭ କରିଛନ୍ତି ଦ୍ୱାପର ଯୁଗରେ ଶ୍ରୀକୃଷ୍ଣ ଓ କାଳି ଶବର ରୂପରେ । ଗୋଟିଏ ଯୁଗରେ ଗୋଟିଏ ମୃତ୍ୟୁରେ କାଳିର ସ୍ମୃତି ବିଲୁପ୍ତ ହେବ । ଅଥଚ ମରଣଶୀଳ ଏ ମଣିଷର ହୃଦୟରେ ଆପଣା ସ୍ମୃତିର ଜାଗୃତି ପାଇଁ ଅଭୀପ୍‌ସା ଜନ୍ମିନି, କାରଣ ଅମରତ୍ୱ ପାଇଁ ତା'ର ସ୍ପୃହା ନାହିଁ । ତା'ର ସେଇ ଏକମାତ୍ର ଅଙ୍ଗୀକାର ବିଶ୍ୱାତ୍ମାକୁ ସେ ତା'ର ମାୟା ବିଧୃତ କଳେବରରୁ ମୁକ୍ତିଦେବ । ଅନ୍ୟତମ କବିତା 'ଦୁର୍ଯ୍ୟୋଧନ' ଶୀର୍ଷକରେ ଦୁର୍ଯ୍ୟୋଧନ ସ୍ୱାଭିମାନୀ ମାନବାତ୍ମାର ପ୍ରତୀକ । ନିୟତିର ଅଲଙ୍ଘ୍ୟ ବିଧାନ ଥିଲା କୁରୁକ୍ଷେତ୍ରରେ କୁରୁବଂଶର ବିନାଶ । ନିଜ ବଂଶର ଏହି ଦୟନୀୟ ଦୁଃଖଦ ପରିଣତି ସମ୍ପର୍କରେ ସ୍ୱୟଂ ଦୁର୍ଯ୍ୟୋଧନ ମଧ୍ୟ ସଚେତନ ଥିଲେ । ଏପରିକି ନିର୍ମମ ନିଷ୍ଠୁର ନିୟତି ବିରୋଧରେ ସେ ସଂଗ୍ରାମର ସ୍ୱର ଉତ୍ତୋଳନ କରିଥିଲେ । ଏହି ସଂଗ୍ରାମ ଥିଲା ଏକାନ୍ତ ନିଃସଙ୍ଗ ସଂଗ୍ରାମ । ସେଥିପାଇଁ ମା'ର ଆଶୀର୍ବାଦ ସଂଗ୍ରାମୀ ସନ୍ତାନ ପାଇଁ ମଧ୍ୟ ନ ଥିଲା । ଧର୍ମ ଓ ନ୍ୟାୟର ପ୍ରତୀକ ମହାସତୀ ଗାନ୍ଧାରୀ 'ଅକ୍ଷୟ ହେଉ ପୁଣ୍ୟ ଜଗତେ ଧର୍ମର ହେଉ ଜୟ' ବୋଲି ଘୋଷଣା କଲେ । ବସ୍ତୁତଃ ପରିଜୟ ହିଁ ଅବଶେଷରେ ହେଲା

ତାଙ୍କର କପାଳ ଲିଖନ । "ହେ ଆହତ ପ୍ରାଣ / ହେ ଶାଶ୍ୱତ ଆତ୍ମକେନ୍ଦ୍ର ମୂର୍ତ୍ତି ଅଭିମାନ / ନିଷ୍ଠୁର ନିର୍ମମ ଏକ ନିୟତି ବିରୋଧେ / ଅସହାୟ ମଣିଷର ଚିର ଅଭିମାନ ।" (ଦୁର୍ଯ୍ୟୋଧନ)

ମୃତ୍ୟୁ ପରେ ଏହି ଅଭିମାନ ଏକ ଗଭୀର ବ୍ୟଥା ସୃଷ୍ଟି କରେ । ଜୀବନର ଗତିପଥରେ ଦୁର୍ବିନୀତ ସଂଗ୍ରାମୀ ମନୋବୃତ୍ତି ହିଁ ଅଭିପ୍ସିତ ଚରମ ସତ୍ୟ । 'ଦୁର୍ଯ୍ୟୋଧନ' ଭଳି 'ଯୁଧିଷ୍ଠିର' କବିତାଟି ଏକ ମିଥ୍ ବ୍ୟକ୍ତିତ୍ୱକୁ ପ୍ରତିପାଦିତ କରିଛି । ଯୁଦ୍ଧ ବିଧ୍ୱସ୍ତ ଭଗ୍ନାବସ୍ଥା ମଧ୍ୟରୁ ମୁକ୍ତିକାମୀ ମଣିଷର ଆବେଗକୁ କୃଷ୍ଣଙ୍କ ବଂଶୀସ୍ୱନ ଓ ଯୁଧିଷ୍ଠିରଙ୍କ ସ୍ୱର୍ଗ ଯାତ୍ରା ଭଳିଆ ପୌରାଣିକ ଉପାଦାନ ଭିତରେ ଆରୋପିତ କରି ଚମତ୍କାରିକ କରିପାରିଛନ୍ତି—"ଯମୁନାତଟର କଦମ୍ବ କେବେଠୁଁ ମଉଳି / ଦ୍ୱାରକାର ସ୍ୱର୍ଣ୍ଣ ସିଂହାସନେ / କାହାର ନାହିଁଚମ୍ଭନେ ଏଥରକାର ବନେ ।" (ଯୁଧିଷ୍ଠିର)

ଏଠାରେ ସାଂପ୍ରତିକ ଯୁଗର ଅଭିଶପ୍ତ ମଣିଷ ଭଗବାନଙ୍କଠାରେ ଆତ୍ମବିଶ୍ୱାସ ହରାଇ ଅନ୍ଧକାରକୁ ନିଜର କରିଛି । ଏ ଭିତରେ ଦ୍ୱିତୀୟ ବିଶ୍ୱ ଯୁଦ୍ଧରେ ପୋଲଣ୍ଡର ରାଜଧାନୀ ଓ୍ୱାର୍ସ ଉପରେ ଜର୍ମାନୀ ଆକ୍ରମଣର ପ୍ରତିଛବି ସ୍ପଷ୍ଟ ରୂପାୟିତ ହୋଇଛି । ଶଂସିତ 'ଯୁଧିଷ୍ଠିର' କବିତାଟି ପୋଲଣ୍ଡ ଭାଷାର ଚଳଚ୍ଚିତ୍ର 'କାନାଲ୍'ର ଏକ ପ୍ରତିକ୍ରିୟା । କବିଙ୍କର ଏ ସମ୍ପର୍କରେ ମତ ହେଉଛି—"ପୋଲଣ୍ଡୀୟ ଭାଷାରେ 'କାନାଲ୍' ଅର୍ଥ ଯୁଦ୍ଧ । ଦ୍ୱିତୀୟ ମହାସମର କାଳରେ ପୋଲାଣ୍ଡ ରାଜଧାନୀ ଓ୍ୱାର୍ସ ଉପରେ ଜର୍ମାନୀ ଆକ୍ରମଣକୁ ଭିତ୍ତିକରି ଏ ଚଳଚ୍ଚିତ୍ର ନିର୍ମିତ । ମଣିଷର ଜୀବନ ପିପାସା ଓ ସ୍ୱପ୍ନବିଳାସୀ ମନରେ ଏପରି ନିଛକ ପ୍ରତିଛବି ଆଉ ଖୁବ୍ କମ୍ ଚଳଚ୍ଚିତ୍ରରେ ମୁଁ ଦେଖିଛି । ସିଉରେଜ୍‌ର ନଳୀ ଭିତରେ ପାଞ୍ଚଜଣ ପଳାତକ, ତା' ଭିତରେ ଜଣେ ସଙ୍ଗୀତ ଶିଳ୍ପୀ । ସିଉରେଜ୍‌ର ପୂତିଗନ୍ଧ ଉପରେ ତାଙ୍କର ବଂଶୀର ମୂର୍ଚ୍ଛନା । ସେ କିନ୍ତୁ ହୋଇଛନ୍ତି ପାଗଳ । ଅନ୍ୟମାନେ ସିଉରେଜ୍‌ରୁ ବାହାରୁ ବାହାରୁ ହୋଇଛନ୍ତି ନାଜୀ ଗୁଳିର ଶିକାର । ରାଷ୍ଟ୍ର, ଶକ୍ତି, ରାଜନୀତି ଯୁଦ୍ଧ ଓ ବିଦ୍ୱେଷର କୁତ୍ସିତ କାଳିମା ବିରୁଦ୍ଧରେ କଳାର ନୀରବ ଅଭିଯୋଗ ।"

(ଯୁଧିଷ୍ଠିର—ପୋଲଣ୍ଡୀୟ ଚଳଚ୍ଚିତ୍ର କାନାଲ୍ ଦେଖିସାରି)

ବସ୍ତୁତଃ ଶ୍ରୀ ମହାପାତ୍ରଙ୍କର 'ଯୁଧିଷ୍ଠିର' କବିତାର ସିଉରେଜ୍‌ର ନଳୀ ସାଂପ୍ରତିକ ଯୁଗ ଓ ଜୀବନର ପ୍ରତୀକ ।

"ଏଇ ସିଭ୍ରେନ୍ ହିଁ ଆମ ଜୀବନ
ମଉରସୀ ଓ ସ୍ୱୋପାର୍ଜିତ
ନାକଫଟା ପୂତିଗନ୍ଧ ଏକ ନର୍କ ଦ୍ୱାର ।" (ଯୁଧିଷ୍ଠିର)

ସିଭ୍ରେନ୍‌ର ପୂତିଗନ୍ଧ ଭିତରେ ବଂଶୀର ମୂର୍ଚ୍ଛନା ଆପାତତଃ ମନେହୁଏ ଏକ ବିରୋଧାଭାସ । କାରଣ ଯୁଦ୍ଧ ଓ ଧ୍ୱଂସଲୀଳା ମଧ୍ୟରେ ସଙ୍ଗୀତ ଭଳି ସୂକ୍ଷ୍ମ କଳାର ମୂଲ୍ୟବୋଧ ଆଜି ଅସ୍ତମିତ । ସେଥିପାଇଁ କବିଙ୍କର ଜିଜ୍ଞାସା—

"ତେଣୁ ତମେ ସେ ବଂଶୀକୁ......
କିନ୍ତୁ ଏ କ'ଣ ? ତମ ହାତରେ ତ ବଂଶୀ ନାହିଁ /
ହେଉ ତା' ହେଲେ
ବଂଶୀ ଧ୍ୱନିର ସେ ସ୍ମୃତିକୁ ପୋତିଦିଅ ଏଇ ପଥଧାରେ ।"

ଯୁଦ୍ଧଗ୍ରସ୍ତ ପୋଡ଼ାଭୂଇଁରେ ସିଏ ବଂଶୀ ସ୍ୱନର ସ୍ମୃତିକୁ ରୋପଣ କରିବାର ସ୍ୱାଭିମାନ ଓ ସ୍ପର୍ଦ୍ଧା ପ୍ରକାଶ କରିପାରେ ସେ ହିଁ ଶିଳ୍ପୀଙ୍କ ଭାଷାରେ ମାନବିକତାର ପ୍ରଭୁ ଯୁଧିଷ୍ଠିର । କାରଣ ପୂତିଗନ୍ଧମୟ ସିଭ୍ରେନ୍‌କୁ ସେ ସ୍ୱର୍ଗରେ ରୂପାନ୍ତରିତ କରିଦେଇ ପାରନ୍ତି । ରାଜନୀତିର ପଙ୍କିଳ ଆବର୍ଜନା ତଥା ଯୁଦ୍ଧ ବିଦ୍ୱେଷର କୁତ୍ସିତ ବିଭୀଷିକା ବିରୁଦ୍ଧରେ ଯୁଧିଷ୍ଠିର ସଂଗ୍ରାମର ଜୟଯାତ୍ରା ଘୋଷଣା କରନ୍ତି । ଏହା ଏକ ଅଞ୍ଚଳ ଭିତରେ ସୀମିତ ନ ରହି ବିଶ୍ୱ ଚେତନାକୁ ପରିବ୍ୟାପ୍ତ ହୋଇଯାଏ । ସତ୍ୟ, ଶିବ, ସୁନ୍ଦରର ଅଲୌକିକ ଆକର୍ଷଣକୁ ମଣିଷ ଭିତରେ ସଞ୍ଚାରି ରଖେ ଯୁଗ ଯୁଗ ପାଇଁ ସେଇ ଆହ୍ୱାନ ଶୁଣାଏ ।

## 'ଅଷ୍ଟପଦୀ'—ଏକ ଉତ୍ତରଣ ପରିଣତିର ଆଲେଖ୍ୟ—

'ଅଷ୍ଟପଦୀ' ସୀତାକାନ୍ତ ମହାପାତ୍ରଙ୍କ ଦ୍ୱିତୀୟ କବିତା ସଙ୍କଳନ । ସୀତାକାନ୍ତ କାବ୍ୟ ପ୍ରତିଭାର ଦ୍ରୁତ ଗତିଶୀଳତା ଏଥିରେ ସନ୍ନିବେଶିତ ଆଠୋଟି କବିତାରୁ ଲକ୍ଷ୍ୟ କରିଯାଇ ପାରେ । ଏହାର କବିତାଗୁଡ଼ିକ ଦୀର୍ଘ ଏବଂ କେତେକ ପରିମାଣରେ ପରୀକ୍ଷାମୂଳକ । 'ଅଷ୍ଟପଦୀ'ର କାବ୍ୟ ଚେତନା ଭିତରେ ମିଥ୍ ସଂଯୋଜନା ଅତ୍ୟନ୍ତ ସାର୍ଥକ ମନେହୁଏ । ସମାଲୋଚକ ଯତୀନ୍ଦ୍ର ମୋହନ ମହାନ୍ତି 'ଅଷ୍ଟପଦୀ'ର ଭୂମିକାରେ ନିଜର ମନ୍ତବ୍ୟ ଦେଇ ଯଥାର୍ଥରେ କହିଛନ୍ତି— "ଅଷ୍ଟପଦୀରେ ପୁରାଣ ବା ମିଥ୍‌ର ବ୍ୟବହାର ଫଳରେ ବ୍ୟାପକ ଓ ପ୍ରସାରିତ

କାବ୍ୟ ଅନୁଭୂତି ସମ୍ଭବ ହୋଇଛି ଓ କାବ୍ୟ ଅଭିଜ୍ଞତା ସୁସଂଗଠିତ ହୋଇ ପାରିଛି । ଜୀବନ ଅଭିଜ୍ଞତାର ଅଭିବୃଦ୍ଧି ଓ ମୂଲ୍ୟାୟନରେ ସ୍ଥାନ ଓ କାଳର ପାର୍ଥକ୍ୟ ନଗଣ୍ୟ ଓ ସେହି ଦୃଷ୍ଟିରୁ 'ଅଷ୍ଟପଦୀ'ର ଆଧୁନିକ ନାୟକର ଜୀବନ ଅନୁଭୂତି ମହାଭାରତ ଚରିତ୍ରର ଜୀବନ ଅନୁଭୂତିଠାରୁ ବିଶେଷ ଭିନ୍ନ ନୁହେଁ । 'ଅଷ୍ଟପଦୀ'ର କାବ୍ୟ ଗଢ଼ଣରେ ମିଥ୍ ଏକ ଅପରିହାର୍ଯ୍ୟ ଅଂଶ ପୁଣି ମିଥ୍‌ର ମାଧ୍ୟମରେ ସମକାଳୀନ ଜୀବନ ପ୍ରତିକାର ଦୃଷ୍ଟି ସ୍ପଷ୍ଟତର ହୋଇଛି । 'ଅଷ୍ଟପଦୀ'ର କାବ୍ୟ ସମଗ୍ରତାରେ ମିଥ୍ ଉଭୟ ପ୍ରତୀକ ଓ ପ୍ରତିକଳ୍ପ ।" 'ଅଷ୍ଟପଦୀ'ର ମୁଖ୍ୟ କାବ୍ୟ ସ୍ୱର ମୃତ୍ୟୁ ଚେତନାକୁ ନେଇ ସଂଗଠିତ । ମିଥ୍ ଏହାର ସ୍ଥାପତ୍ୟ ମାତ୍ର । ପ୍ରୟୋଗବାଦୀ ଓଡ଼ିଆ କବିତାରେ ମିଥ୍ ଗୁରୁପ୍ରସାଦ, ସଚ୍ଚିଦାନନ୍ଦଙ୍କ କବିତାରେ ପ୍ରାୟତଃ ଆଧୁନିକ ମଣିଷ ଜୀବନରେ ପ୍ରତିଫଳନ ବହନ କରେ । 'କାଳପୁରୁଷ'ରେ ଜୀବନ ଓ ମୃତ୍ୟୁର ଅନୁଭବ ସହିତ ପାପ ଓ ପୁଣ୍ୟର ଅନୁଭୂତି ସଂଶ୍ଳିଷ୍ଟ । 'ଅଷ୍ଟପଦୀ'ରେ ଏହି ଭାବନାର ବ୍ୟାପକ ଅଗ୍ରଗତି ଲକ୍ଷ୍ୟ କରିହେବ । 'ଅଷ୍ଟପଦୀ'ର କାବ୍ୟ ନାୟକ କାଳପୁରୁଷ ପରି ଯୁଦ୍ଧ ପରବର୍ତ୍ତୀ ଆଧୁନିକ ମଣିଷର ଦହନ ଏବଂ ଆଗ୍ନେୟ ଜ୍ୱାଳାରେ ବ୍ୟତିବ୍ୟସ୍ତ ହୋଇ ଏ ଅଯାର୍ଥକ ଜୀବନରୁ ମୁକ୍ତି ଖୋଜୁଛି । ସେ ଦେଖୁଛି ଗଛରୁ ରସ, ଘାସରୁ ସବୁଜିମା, ବଉଦରୁ ପାଣି ଶୋଷିନେଇ ସେହି ମହାକାଳରୂପୀ ଅଗ୍ନିର ବଳୟ ଦାଉ ଦାଉ ଜଳି ଉଠୁଛି । ଚତୁର୍ଦ୍ଦିଗରେ ଧୂଳିଝଡ଼ ଓ ଝଞ୍ଜାଆଭୂତି । ଏହି ଚିତ୍ରକୁ ପ୍ରଳୟ ସହିତ ତୁଳନା କରାଯାଇ ପାରେ । ଷ୍ଟିଭେର୍ସୀମାରେ ପରମାଣୁ ବୋମା ନିକ୍ଷେପ କରାଯିବା ଫଳରେ ସେଇ ପ୍ରଳୟାଗ୍ନି ଶିଖାତୋଳି ସମସ୍ତଙ୍କୁ ନିଃଶେଷ କରି ଦେଉଛି । ସତେ ଯେପରି ଯମଦୂତମାନେ ମଣିଷମାନଙ୍କୁ କରେଇରେ ଭାଜିଭୂଜି ସନ୍ତୁଳି ଦେଇଛନ୍ତି । ଚତୁର୍ଦ୍ଦିଗରେ କଡ଼କଡ଼ ଚଡ଼ଚଡ଼ ଶବ୍ଦ, ମୃତ୍ୟୁର ଏହି ଭୟାବହ ଚିତ୍ର ଏସବୁ କବିତାଗୁଡ଼ିକରେ ପ୍ରାଧାନ୍ୟ ଲାଭ କରିଛନ୍ତି । ପ୍ରଥମ କବିତା 'ମୃତ୍ୟୁନାଚ'ରେ ଏହା ଖୁବ୍ ସାନ୍ଦ୍ର । "ସେହି ନିଆଁ କରେଇରେ ଭାଜିଭୂଜି / ସନ୍ତୁଳି ସାନ୍ତୁଳି ହେଲ / କଡ଼କଡ଼ ଚଡ଼ଚଡ଼ ଶବ୍ଦକରି / ଗଛ, ବୃଛ, ମାଟି, ମନ, ଖାଲ, ବଣ, ବିଲ ।"

ସାଂପ୍ରତିକ ପୃଥିବୀରେ ପ୍ରତ୍ୟେକ ମଣିଷ ଯୁଦ୍ଧର ବାରୁଦସ୍ତୂପ ଉପରେ ଠିଆ ହୋଇ ମୃତ୍ୟୁର ଶୀତଳ ସ୍ପର୍ଶ ଅନୁଭବ କରୁଛି । ପୁରାଣର ଆଖ୍ୟାୟିକା ଅନୁଯାୟୀ ଏରକ୍‌କା ବନରେ ପାରସ୍ପରିକ ଯୁଦ୍ଧ ଓ ହଣାକଟା ଫଳରେ ଯଦୁବଂଶୀମାନେ ମୂଳପୋଛ ହୋଇ ଯାଇଥିଲେ । ସେମାନେ ଅଭିଶପ୍ତ ଋଷି

ଥିଲେ । ସାଂପ୍ରତିକ ପୃଥିବୀର ମଣିଷ ସେଇ ଅଭିଶାପରେ ଗ୍ରସ୍ତ । ତା' ପାଇଁ ସଭ୍ୟତା ହିଁ ସଂହାରର ଅନ୍ୟ ନାମ । "ଜଳିଯାଏ ମସ୍କୋ, ରୋମ୍, ହିରୋସୀମା ଆଉ ନୂଆଖାଲି ।" ପଂକ୍ତିରେ ଏହି ଆତ୍ମଘାତୀ ମନୋବୃତ୍ତି ସୁସ୍ପଷ୍ଟ । ତା' ମୁଣ୍ଡ ଉପରେ ମୃତ୍ୟୁର ଷ୍ଟିମରୋଲର ଦୋହଲୁଚି । ସମସ୍ତ ସ୍ୱପ୍ନ ଓ ସମ୍ଭାବନା ଜଳିପୋଡ଼ି ଛାରଖାର ହୋଇଯାଉଛି ।—"ସବୁ ଯାଏ ଜଳିପୋଡ଼ି ମନ ଓ ଇନ୍ଦ୍ରିୟ / ଜଳିଯାଏ ଅନୁଭୂତି / ସକଳ ଭାବନା / ସବୁ ସମ୍ଭାବନା ଆହା / ସବୁ ସ୍ୱପ୍ନ, ସବୁ ଆଶ୍ୱାସନା ।" (ମୃତ୍ୟୁନାଚ)

ତା' ପାଇଁ ଆଶ୍ରୟ କାହିଁ ? ଏପରିକି ତୃଷ୍ଣା ପାନରେ ଅଯୋଗ୍ୟ ନାଗଫେଣୀ କଣ୍ଟାଗଛ ମଧ୍ୟ ଆଉ ପୃଥିବୀ ପୃଷ୍ଠରେ ନାହିଁ । ଆକାଶରେ ବଉଦର ଆଭାସ ମଧ୍ୟ ନାହିଁ । ବରଂ ସେ ଭାବୁଛି ପାରମ୍ପରିକ ବିଶ୍ୱାସ ଅନୁସାରେ ଏପରି ଏକ ରୌରବ ନର୍କରୁ ତ୍ରାଣ ହେବାପାଇଁ ମୃତ୍ୟୁର ଅବ୍ୟବହିତ ପୂର୍ବରୁ କିଛି ଦାନ ଧର୍ମ କରିଯାଇ ପାରେ । ଅସହାୟ ଆଧୁନିକ ମଣିଷ ସେ ସନାତନ ବିଶ୍ୱାସ ପାଖକୁ ଫେରିବାକୁ ବାଧ୍ୟ କାରଣ ତା'ର ସେଥିରୁ ନିଷ୍କୃତି ନାହିଁ ।—"ହେ ବ୍ରାହ୍ମଣ ଏଇ ନିଅ, ଦାନ ନିଅ / ନିଅ ନିଅ ଆମ ଦଶ ଦାନ / ଆଗେ ଜଳେ ଲେଲିହାନ ଅଗ୍ନିଶିଖା ତପ୍ତ ବୈତରଣୀ / ମୃକ୍ତମାନେ, ଶକ୍ତମାନେ, ତୃଷ୍ଣାମାନେ, ସ୍ୱପ୍ନମାନେ / ଅଭିଶପ୍ତ ସବୁ ଯଦୁମାନୀ ଦୁର୍ଯ୍ୟୋଧନ ।" (ମୃତ୍ୟୁନାଚ)

'ଅଷ୍ଟପଦୀ'ର ଦ୍ୱିତୀୟ ଦୀର୍ଘ କବିତା ହେଉଛି 'ସ୍ତନାନ୍ଧସ୍ୟର ଉପକଥା' । 'ମୃତ୍ୟୁନାଚ'ରେ ଯେଉଁ ଅଗ୍ନିପୀଡ଼ିତ ଜୀବନର ଚିତ୍ର ପ୍ରଦତ୍ତ ହୋଇଛି ତାହାର ଅନୁରୂପ ପ୍ରତିଚ୍ଛବି ଏହା ମଧ୍ୟରେ ପ୍ରକାଶିତ ।—"ସିଏ କେଉଁ ସହରର ରାସ୍ତା ଅବା ଗାଆଁ ଦାଣ୍ଡ / ଆଜି ଆଉ ଜାଣି ହଉନାହିଁ /' ନୂଆଖାଲି ? ହିରୋସୀମା, ପିଣ୍ଡାରିକ ? ଦ୍ୱାରକା ? ପ୍ରଭାସ ? କୌଣସିଟି ହୋଇପାରେ । ସମସ୍ତ ଠିକଣା ଆଜି (ଭଲହେଲି ପୋଡ଼ିଜଳି ହୋଇଛି ପାଉଁଶ) ।" (ସ୍ତନାନ୍ଧସ୍ୟର ଉପକଥା)

କାବ୍ୟ ନାୟକ ଜାଣି ଜାଣି ତା'ର ସମସ୍ତ ଠିକଣା ଏହି ଅପରିଚିତ ଇଲାକାରେ ହଜାଇ ଦେଇ ବ୍ୟାକୁଳ ହୋଇ ମୁକ୍ତିର ପଥ ଖୋଜୁଛି । —"ନୀଳ ଆକାଶ ଓ ମେଘ ସବୁଗଲା ଅଗ୍ନିନିକ ଜଳି / ଖେଳ, ସିକ୍ତ ସ୍ୱପ୍ନ ସବୁ ଅପଘାତେ ମରିଗଲା / ଆକାଶେ ଛଟିଲି ଜଳି ଅଗ୍ନିର କୁଣ୍ଡଳୀ ।" ଏଠାରେ ପୁନଶ୍ଚ ସେଇ ମହାଭାରତର ଉପାଖ୍ୟାନକୁ ପ୍ରଚ୍ଛଦପଟ ଭାବରେ ଗ୍ରହଣ କରାଯାଇଛି ଓ ଯଦୁବଂଶ ଧ୍ୱଂସର ବିବରଣୀ ପ୍ରଦାନ କରାଯାଇଛି । କୃଷ୍ଣ ସୁତମାନଙ୍କର ଋଷିଙ୍କ ପ୍ରତି ଅଶ୍ରଦ୍ଧା, ପରିହାସ ଓ ଔଦ୍ଧତ୍ୟଯୋଗୁଁ ସେମାନେ ଅଭିଶାପ ପାଇଥିଲେ । ଆଜି କିନ୍ତୁ ସେଇ ଅଭିଶାପରେ ଜର୍ଜରିତ ହେଉଛି ପୃଥିବୀର ମଣିଷ । ଯୁଦ୍ଧଖୋର ମଣିଷର ହିଂସା,

ଦ୍ୱେଷ ଓ ଜିଘାଂସା ଭିତରେ ଦ୍ୱାରକା ପ୍ରଭାସ ସହିତ ନୂଆଖାଲି ଓ ହାରେସୀମା ସାମିଲ୍ ହୋଇ ଯାଉଛନ୍ତି । ମଣିଷର ଏହି ନିଜସ୍ୱ ପାପ ଯୁଗେ ଯୁଗେ ତାକୁ ଧ୍ୱଂସ ଆଡ଼କୁ ଟାଣି ନେଇଛି । ବାସଚ୍ୟୁତ ଲକ୍ଷ୍ୟହୀନ ମଣିଷ ଦଳ ଚାଲିଛନ୍ତି ଆଶ୍ରୟର ସନ୍ଧାନରେ । ସନ୍ଦେହ, ଯନ୍ତ୍ରଣା, ହତାଶା, ଅବିଶ୍ୱାସ ଓ ମୃତ୍ୟୁର ବିକଟ ଗହ୍ୱର ଭିତରୁ ସେମାନଙ୍କର ମୁକ୍ତି କାହିଁ ? ସେମାନେ ସମସ୍ତେ ଦାନ୍ତେଙ୍କ ନର୍କ ପଥର ଯାତ୍ରୀ କିମ୍ବା ଇଲିୟଟ୍‌ଙ୍କ Hollow men, nomen କିମ୍ବା stuffed men । ନିରୁଦ୍ଦେଶ୍ୟ ଯାତ୍ରାପଥ ଲକ୍ଷ୍ୟ ଅପହଞ୍ଚ । 'ଅଷ୍ଟପଦୀ'ର ଗୁରୁତ୍ୱ କବିତା 'ମାଟି ଓ ମଣିଷ' । ବସୁଦେବ ଓ ଦେବକୀଙ୍କ କାହାଣୀ ଭିତ୍ତିରେ ଏହି କବିତାର ଗଠନବୃତ୍ତ ନିର୍ମିତ । ବସୁଦେବଙ୍କ ବନ୍ଦୀକାଳୀନ ମାନସିକତା ଭିତରେ ବହୁବାଧ ଦୁଶ୍ଚିନ୍ତା, ଅନିଶ୍ଚିତତା, ଅସହାୟତା, ଯନ୍ତ୍ରଣା, ନୈରାଶ୍ୟର କୋଠରୀରେ ବନ୍ଦୀ ସାଂପ୍ରତିକ ମଣିଷର ମାନସିକତା ହିଁ ପ୍ରତିଫଳିତ । ଆଜି ସମସ୍ତେ ମୃତ୍ୟୁ ଚିନ୍ତାଦ୍ୱାରା ଆକ୍ରାନ୍ତ ଓ ବ୍ୟତିବ୍ୟସ୍ତ । ଜୀବନର ଅର୍ଥହୀନତା ଓ ବିଫଳତାରୁ ହିଁ ମୃତ୍ୟୁଚିନ୍ତାର ଜନ୍ମ । ଆଧୁନିକ ଜଗତର ଏହି ବୈଚିତ୍ର୍ୟ ଓ ଚେତନା ମିଥ୍ ବ୍ୟକ୍ତିତ୍ୱ (ବସୁଦେବ) ଭିତରେ ସାର୍ଥକ ଭାବରେ ପ୍ରକଟିତ । ବସୁଦେବର ଅହରହ ମୃତ୍ୟୁଚିନ୍ତା ଭିତରେ ଏହି ସତ୍ୟ ହିଁ ପ୍ରକାଶିତ । 'ମାଟି ଓ ମଣିଷ' କବିତାକୁ କବି ବିଭିନ୍ନ ଶୀର୍ଷକରେ ବିଭକ୍ତ କରିଛନ୍ତି ତଥା ଆର୍କିଟାଇପ୍‌ର ସଫଳ ପ୍ରୟୋଗ କରିଛନ୍ତି । (୧) କାରାଗାର । (୨) ମହାକାଳର ମୃତ୍ୟୁ । (୩) ପ୍ରେତାତ୍ମାର ଶୋଭାଯାତ୍ରା ଓ ପରିବୃତ୍ତି । (୪) ଦୁଃସ୍ୱପ୍ନର ରାତି । (୫) ପ୍ରତିଧ୍ୱନି । 'କାରାଗାର'ରୁ 'ପ୍ରତିଧ୍ୱନି' ମଧ୍ୟରେ ମଣିଷର ସମସ୍ତ ମାନସିକତାର ଯେପରି କ୍ରମିକ ବିକାଶ ଘଟିଛି ସେଥିରୁ ଏହି ପର୍ଯ୍ୟାୟର ଉନ୍ନତ ଚିନ୍ତାଧାରା ସମ୍ପର୍କରେ ଧାରଣା କରିହୁଏ । ପ୍ରଥମ ପର୍ଯ୍ୟାୟରେ କାରାଗାରରେ ବସୁଦେବ ଓ ଦେବକୀ କାରାରୁଦ୍ଧ । ପରିବେଶରେ ମୃତ୍ୟୁର ଶୀତଳତା, 'ମହାକାଳର ମୃତ୍ୟୁ' ଶୀର୍ଷକ କବିତାରେ କାଳର ଅବକ୍ଷୟ ଲିପିବଦ୍ଧ । କିନ୍ତୁ ତୃତୀୟ ପର୍ଯ୍ୟାୟରେ 'ପ୍ରେତାତ୍ମାର ଶୋଭାଯାତ୍ରା ଓ ପରିବୃତ୍ତି'ରେ ଉତ୍ପାଦିକା ଶକ୍ତି ସମ୍ପର୍କିତ କର୍ମାନୁଷ୍ଠାନ (fertility ritual) ମାଧ୍ୟମରେ ଶସ୍ୟହୀନ ଏ ପୃଥିବୀକୁ ଶସ୍ୟଶ୍ୟାମଳ କରିବାର ସମ୍ଭାବନା ଉଜ୍ଜ୍ୱଳ ।

"ବସୁଦେବ ହକାରୁଛି—ହେ ପୃଥିବୀ, ହେ ଦେବକୀ / ମଧୁମତୀ, ମଧୁକ୍ଷରା ହେ ଆଦିଜନନୀ / ସମସ୍ତ କଅଁଳା ପିଲା ଆମେ ସବୁ ଡାକମାରୁ / ଆଦିମାତା, ହେ ସିବିଲ୍, ଗାଆ ଓ ଇସ୍ତର ।"

(ମାଟି ଓ ମଣିଷ)

ଶସ୍ୟକ୍ଷେତରେ ଫସଲର ପ୍ରାଚୁର୍ଯ୍ୟ ପାଇଁ ସେ ମେରଆ ବଳି ଦେଇଛୁ । —''ଦଶଦନ ଆଗରୁ ମୁଁ ନଣ୍ଡାକଲି କେଶ କାଟି / ମେରଆର ମୁଣ୍ଡ, ନୂଆ ଲୁଗା ପିନ୍ଧାଇଲି / ଦେହରେ ତା' ତେଲ, ଘିଅ, ହଳଦୀ ବୋଳିଲି / ସଜାଇଲି ଦଅଁ ପର ନାନାଜାତି ଜଙ୍ଗଲି ଫୁଲରେ ।'' (ମାଟି ଓ ମଣିଷ)

କିନ୍ତୁ ଅଭିଶପ୍ତ ଏହି ମାଟି ଶୂନ୍ୟ ହୋଇ ନୈରାଶ୍ୟବୋଧ ଭିତରେ ବୁଡିଯାଇଛି । କବି ଆଦିଜନନୀ ଆର୍କିଟାଇପ୍‌ର ଅପଦେବତା ମୂର୍ତ୍ତିଟିକୁ ଏଠାରେ ଅଭିବ୍ୟକ୍ତି କରିଛନ୍ତି । ଅପଦେବତାର ସନ୍ତାନ ସ୍ନେହ ମୃତ୍ୟୁ ଶଙ୍କା ସୃଷ୍ଟି କରେ । କବିତାର କ୍ୟାନଭାସ୍‌ରେ ଏଭଳି ମୃତ୍ୟୁଶଙ୍କା ସଞ୍ଚରୁଥିବାବେଳେ ହଠାତ୍ ଏକ ଛାୟାର ଆବିର୍ଭାବ ଘଟେ । ସେ ଛାୟା ଅନ୍ୟ କେହି ନୁହେଁ, ସେ ମଣିଷର ଦ୍ୱିତୀୟ ସତ୍ତାଚ୍ଛାୟା ଇଗୋ ବା (shadow ego) । ସ୍ୱୟଂ କଂସାସୁର ଅହେତୁକ ଜୈବିକ ମୋହରେ ଅବଶେଷରେ ନିଜକୁ ହିଁ ହତ୍ୟାକରେ । କିନ୍ତୁ ଏହି ହତ୍ୟା ଓ ମୃତ୍ୟୁ ଆଦିଜନନୀ ଆର୍କିଟାଇପ୍‌ର ଏକ ପାର୍ଶ୍ୱିକ ଚେତନା । ଏହି ଚେତନାର ଅନ୍ୟ ଏକ ପାର୍ଶ୍ୱ ହେଉଛି ପୁନର୍ଜନ୍ମ । ସେଥିପାଇଁ 'ଦୁଃସ୍ୱପ୍ନର ଗ୍ରନ୍ଥି'ରେ ମୃତ୍ୟୁର ରମଣୀୟତା ଭୁଲି ଯାଇଥିଲେ ମଧ୍ୟ 'ପ୍ରତିଧ୍ୱନି'ରେ ଆଶା ଓ ଆଶ୍ୱାସନାର ସଙ୍କେତ ସ୍ପଷ୍ଟ ହୋଇ ଉଠୁଛି ।

''ମୃତ୍ୟୁନାହିଁ ଆକାଶର / ଯାଦୁକରୀ ଆକାଶର / ମୃତ୍ୟୁନାହିଁ ଏ ମାଟିର , ତାରି ଆଉ ଫସଲର ମେଘ ଆଉ ସମୁଦ୍ର ହାଓ୍ୱାର ।''

(ମାଟି ଓ ମଣିଷ, ପ୍ରତିଧ୍ୱନି)

ଏହିଭଳି ଏକ ଶୁଭ ଲଗ୍ନରେ ଦେବକୀ ପୁଣି ଥରେ ସନ୍ତାନ ସମ୍ଭବା । ତାଙ୍କର ଅଷ୍ଟମ ଗର୍ଭରେ ଶ୍ରୀକୃଷ୍ଣ ଜନ୍ମନେବେ ଶାନ୍ତି ଓ ସୁନ୍ଦରର ପ୍ରତିଷ୍ଠା ପାଇଁ, ବନ୍ଧ୍ୟା ଭୂମି ଶସ୍ୟଶ୍ୟାମଳା ହେବ । ବନ୍ଦୀ ମାନବାତ୍ମାର ମୁକ୍ତି ବ୍ୟାକୁଳତା ସଫଳ ହେବ ।

ପୁନଶ୍ଚ ଏହି ଆଶା ଓ ନିରାଶାର ମାନସିକ ପ୍ରତିକ୍ରିୟା 'ତ୍ରିଶଙ୍କୁର ମଧ୍ୟସ୍ୱର୍ଗ' କବିତାରେ ମଧ୍ୟ ପ୍ରକାଶିତ ହୋଇଛି । ଏଠାରେ ମଧ୍ୟ ନାୟକର ଅନୁଭୂତିରେ ଧ୍ୱଂସପାଇ ଯାଇଥିବା ଯଦୁକୁଳର ସ୍ମୃତି ଜାଗ୍ରତ ହୋଇଛି । ବାରମ୍ବାର କବି 'ଯଦୁବଂଶ' ଧ୍ୱଂସର ପୌରାଣିକ ରୂପକଳ୍ପକୁ କାବ୍ୟବୃତ୍ତ ଭିତରକୁ ଆଣି ବର୍ତ୍ତମାନ ସମୟର ନିଃସଙ୍ଗତା, ହିଂସା, ଦ୍ୱେଷ, ଘୃଣା ଓ ମୃତ୍ୟୁ ଆତଙ୍କର ଚିତ୍ରକୁ ଅଧିକ ଘନୀଭୂତ କରିଛନ୍ତି । ଆଧୁନିକ ମଣିଷ ଜୀବନର ଅନ୍ତଃସାର

ଶୂନ୍ୟତା ଓ ଅବକ୍ଷୟ ଏଥିରେ ସୂଚିତ ହୋଇଛି । ସେ ମାଟିର ସ୍ଥିତି ଓ ବିଶ୍ୱାସ ହରାଇଛି । ସ୍ୱର୍ଗର ଆଲୋକ ମଧ୍ୟ ପାଇପାରୁ ନାହିଁ । ମୋଟ ଉପରେ ତ୍ରିଶଙ୍କୁ ଅବସ୍ଥାରେ ସେ ଏକ ଅନିଶ୍ଚିତ ଜୀବନ ବିତାଉଛି । କେତେବେଳେ ଯେ ସେ ମୃତ୍ୟୁର ଶୀତଳ ହ୍ରଦର ଉପରେ ଖସି ପଡ଼ିବ କିଏ ବା ତାହା କହି ପାରିବ ।

"ଯେହେତୁ ପ୍ରତ୍ୟେକ ରାସ୍ତା ଶେଷେ ସରେ ଲକ୍ଷ୍ୟହୀନତାରେ / ଯେହେତୁ ଆକାଶ ଶେଷ ଯେଉଁଠାରେ ମୃତ୍ୟୁ ହାଇମାରେ··· ।"

(ତ୍ରିଶଙ୍କୁର ମଧ୍ୟସ୍ୱର୍ଗ)

ପରବର୍ତ୍ତୀ କବିତା 'ମରୁପଥର ସ୍ୱରଲିପି'ରେ କବିଙ୍କ ଅନୁଭୂତି ସେହିପରି ନୈରାଶ୍ୟ, ବ୍ୟର୍ଥତା, ନିଃସଙ୍ଗତା ଓ ମୃତ୍ୟୁ ଚେତନାକୁ ନେଇ ମୁଖ୍ୟତଃ ଋଦ୍ଧ ହୋଇ ରହିଛି । ଅତୃପ୍ତିର ପ୍ରେତ, ଶୂନ୍ୟତାର ଜଙ୍ଗଲ, ବିକଟ ଖୁଣ୍ଟର ପେଚା ଆଦି ଶବ୍ଦପୁଞ୍ଜ ମଧ୍ୟରେ ଏହି ଭାବନା ଅଧିକ ଗଭୀର ହୋଇଛି । —"ଅଙ୍କା ହାଦ୍ୟ ସମୁଦ୍ରର ଦଶ୍ରି ନାହିଁ / ଚହଲଗେ ବାଲି ଆଉ ବାଲି / ଘନ କୁହୁଡ଼ି ଅନ୍ଧାର, କଣ୍ଟାବୁଦା / ସମସ୍ତ ଯାତ୍ରା ଶେଷ ଆପଣା ସ୍ଥିତିରେ / ସବୁ ଗତିପଥ ମିଶେ କେନ୍ଦ୍ରବିନ୍ଦୁ ନିଜ ଶୂନ୍ୟତାରେ ।"

'ମରୁ ପଥର ସ୍ୱରଲିପି' କବିତାଟିରେ ସୀତାକାନ୍ତ ମିଥ୍‌କୁ ସମ୍ପୂର୍ଣ୍ଣ ପରିହାର କରି ନିଜସ୍ୱ ବାସ୍ତବ ଅନୁଭୂତିକୁ ଅଧିକ ଶାଣିତ କରିବାକୁ ଚେଷ୍ଟା କରିଛନ୍ତି । 'ରକ୍ତନଦୀ ସନ୍ତରଣ ପରେ' କବିତାରେ ସ୍ୱାଭାବିକ ଭାବରେ ମହାଭାରତ ଯୁଦ୍ଧର କାବ୍ୟ ନାୟକ ଦୁର୍ଯ୍ୟୋଧନକୁ ରୂପାୟିତ କରିଛନ୍ତି । ଜୀବୋନ୍ମୃତ ଦୁର୍ଯ୍ୟୋଧନ ବ୍ୟାସ ସରୋବର ମଧ୍ୟରେ ଲୁଚି ସେହି ଭୟଙ୍କର ମହାକାଳରୂପୀ ମୃତ୍ୟୁକୁ ଅପେକ୍ଷା କରିଛି ।

"ଉରୁ ଭଗ୍ନ ଲଗ୍ନ ଆଜି କେତେ ଦୂର / ପ୍ରଭୁ କେତେ ଦୂର ବ୍ୟାସ ସରୋବର ଘାଟ / ଆହ୍ୱାନ ନ ଆସେ କିଆଁ ଭୀମ ରଡ଼ି, ମହାକାଳ ରଡ଼ି / କେତେଦୂର ରଜନୀର ଅନ୍ତିମ ପ୍ରହର ?"

(ରକ୍ତନଦୀ ସନ୍ତରଣ ପରେ)

ମହାମାନୀ ଦୁର୍ଯ୍ୟୋଧନ ଏପରି ସଙ୍କଟ ସ୍ଥିତିରେ ଜୀବଦ୍ଦଶାର ତଥା କୃତକର୍ମର ରୋମନ୍ଥନ କରିଛନ୍ତି । ଅତୀତ ପାଇଁ କାରୁଣ୍ୟ ଓ ବର୍ତ୍ତମାନ ପାଇଁ ଗଭୀର ଅସହାୟ ଉପଲବ୍ଧି ମଧ୍ୟରେ ତାଙ୍କ ପାଇଁ ପୃଥିବୀରୁ ସବୁଦିନ ନିମନ୍ତେ ଆଲୋକର ଦୀପ୍ତି ଲିଭି ଯାଇଛି । ଏହି କବିତାଟିର ସାଙ୍ଗଠନିକ ଭାବ ସାନ୍ଦ୍ରତା

ଓ ବକ୍ତବ୍ୟର ସ୍ପଷ୍ଟତା ସବୁଠାରୁ ଆକର୍ଷଣୀୟ ହୋଇଛି । ମହାପାପୀ ଦୁର୍ଯୋଧନ ଭିତରେ ମୃତ୍ୟୁଭୟ ପୀଡ଼ିତ ମଣିଷ ଆତ୍ମ ସମର୍ପଣ କରୁଛି ସେହି ମହାନ୍ ଶକ୍ତି ପାଖରେ, ଯାହାଙ୍କୁ ଜୀବନସାରା ସେ ଅସ୍ୱୀକାର କରି ଆସିଛି । 'କୁବୁଜା ପାଇଁ ଗୋଟିଏ ସଙ୍ଗୀତ'ରେ ଏହି ଉତ୍ତରଣର ପ୍ରୟାସ ଆହୁରି ତୀବ୍ର । କୁବୁଜାର ଜନ୍ମ ଜନ୍ମାନ୍ତରର ପ୍ରତୀକ୍ଷା ସତେ ଯେମିତି କୃଷ୍ଣଙ୍କ ସ୍ପର୍ଶରେ ସାର୍ଥକ ହେବ । "ଅନେକ ବର୍ଷ ଗଡ଼ିଛି ମଥୁରାର ରାଜଦାଣ୍ଡେ / ନିର୍ମମ ନିର୍ମେଘ ଏଇ ନୀରବ ଶୂନ୍ୟ ଆକାଶେ / କାଚ ଆଖିଡୋଳା ଦେଇ ହାଡ଼ଭଙ୍ଗା ଜଡ଼ର ଦାଉରେ··· ।" ଯେତେବେଳେ କୁବୁଜା ଶୁଣିଛି ଶ୍ରୀକୃଷ୍ଣ ଆସି ମଥୁରାରେ ପାଦ ଦେଇଛନ୍ତି ସେତେବେଳେ ସତେ ଯେପରି ଶ୍ମଶାନର ମଲା ହାଡ଼ରେ ସଙ୍ଗୀତର ଶିହରଣ ସୃଷ୍ଟି ହୋଇଛି । ସେ ବିଭୋର ହୋଇ କୃଷ୍ଣଙ୍କୁ ଚନ୍ଦନ ଲଗାଇଛି; ତା'ର ଜରାଗ୍ରସ୍ତ ବେଢ଼ଙ୍ଗ ଶରୀରରେ ତାରୁଣ୍ୟର ସ୍ପନ୍ଦନ ଆସିଛି । ଚିରଫଟା ଚାଳିପକା ମନରେ ନୂତନ ସ୍ୱପ୍ନର ମାଦକତା ପୂରି ଯାଇଛି । କେବଳ କୁବୁଜା ପାଇଁ ଏ ଆଶୀର୍ବାଦ ନୁହେଁ ବରଂ ଭଗବାନଙ୍କର ଅଭିଶପ୍ତ ମଥୁରା ପ୍ରତି ଏହି ଅଯାଚିତ କରୁଣା । ତେଣୁ କୁବୁଜା କୃଷ୍ଣଙ୍କୁ ପ୍ରାର୍ଥନା କରି ସମଗ୍ର ମାନବ ଜାତି ପାଇଁ ଏକ ନୂତନ ବିଶ୍ୱାସ ଆଉ ସତ୍ୟର ପଥ ଉନ୍ମୋଚନ କରିଛି—"ଶେଷ ହେଉ ଧୂସରର ମୃତ୍ୟୁ ଆଉ ବିଭଙ୍ଗ କାଳର / ଅନ୍ତ ହେଉ ଅଶ୍ଳୀଳ ଓ କୁତ୍ସିତ ରାଜପୂଜା / ଶୁଖିଲା ଆକାଶେ ଜାଗୁ ମେଘମାଳା, ହାଣ୍ଡିକଳା ଘୁମର ଘୁମର ।"

(କୁବୁଜା ପାଇଁ ଗୋଟିଏ ସଙ୍ଗୀତ)

କୁବୁଜା ପରି ସୋଲେନ୍ ମଧ୍ୟ ଗଭୀର ସମୁଦ୍ରରେ ଥିବା ଦ୍ୱୀପଟିରେ ଏକାକୀ ରହି ସେହିପରି ଆଶା ନେଇ ପ୍ରତୀକ୍ଷା କରିଥାଏ । କବି ସୀତାକାନ୍ତ ମହାପାତ୍ର ହୁକଟୋଲା ଦ୍ୱୀପରେ ଥିବା ଗୋଟିଏ ସରକାରୀ ଡାକବଙ୍ଗଳାର ତତ୍ତ୍ୱାବଧାରକ ରୂପେ କାର୍ଯ୍ୟ କରୁଥିବା ଜର୍ଜ ସୋଲେନ୍ ସହିତ ସାକ୍ଷାତ ଅବସରରେ ତାଙ୍କର ଏହି ପ୍ରସିଦ୍ଧ କବିତାଟି ଲେଖିଛନ୍ତି । ସେ ସୋଲେନ୍ ପରି ଏକ ନିଃସଙ୍ଗ ମଣିଷକୁ ସମୁଦ୍ର ସହିତ ସମ୍ପର୍କିତ କରି ଆମର ପାରମ୍ପରିକ ବିଶ୍ୱାସ ଆତ୍ମା ସହିତ ଜୀବାତ୍ମାର ସମ୍ବନ୍ଧକୁ ଅଧିକ ସୁଦୃଢ଼ କରିଛନ୍ତି । ଏହା ଫଳରେ 'ଅଷ୍ଟପଦୀ'ର ସମସ୍ତ ବିଷାଦବାଦୀ ନୈରାଶ୍ୟ ବିଜଡ଼ିତ ଭାବନାରେ ଏକ ଉତ୍ତରଣ ସଂଗଠିତ ହୋଇଛି । ବୋଧହୁଏ କବିତାଟି ପରେ କବିଙ୍କୁ 'ସମୁଦ୍ର' ପରି କାବ୍ୟ ଗ୍ରନ୍ଥ ରଚନା କରିବାରେ ପ୍ରେରଣା ଦେଇଛି । କାରଣ 'ସମୁଦ୍ର'ର

କବିତାବଳୀରେ ମୁଖ୍ୟତଃ ଜନ୍ମ, ଜୀବନ, ମୃତ୍ୟୁ ଓ ମୁକ୍ତିର ଏକାନ୍ତ ଆତ୍ମୀୟ ଚିତ୍ର ପ୍ରତିଷ୍ଠ ହୋଇଛି । "ସେମାନେ ଯଦି ଜାଣନ୍ତେ ସେଇ ହତଭାଗାମାନେ / ଯେ ସମୁଦ୍ର ଅରେ ଦେଖିଲି ଈଶ୍ୱରଙ୍କୁ / ତା' ବନ୍ଧନରୁ ଆହ ମୁକ୍ତି ନାହିଁ / ସେମାନେ ଯଦି ଜାଣନ୍ତେ ଜନମରୁ ମରଣକୁ ଗତିପଥ / ଖାଲି ସେଇ ସମୁଦ୍ରରୁ ସମୁଦ୍ରକୁ / ତୁମେ ଯାଆ ଏଣେତେଣେ ଯେଉଁ ପଥ ବାହି ।" (ସୋଲୋନ୍)

ସମୁଦ୍ର ସହିତ ଏଇ ନିବିଡ଼ ସମ୍ପର୍କରେ କାବ୍ୟ ନାୟକର ମନରୁ ସମସ୍ତ ମୀଚତା ଓ ସଂକୀର୍ଣ୍ଣତା ଦୂର ହୋଇ ମୁକ୍ତ ଏକ ଐଶ୍ୱର୍ଯ୍ୟ ଜୀବନର ସନ୍ଧାନ ମିଳେ । 'ଅଷ୍ଟପଦୀ'ର ସାମଗ୍ରିକ କାବ୍ୟ ଅନୁଭବ ଜୀବନର ବାସ୍ତବ ଓ ଜଟିଳ ସ୍ଥିତିର ଉଦ୍‌ବେଳନ ବା ଉଚ୍ଚାଟନ କେବଳ ନୁହେଁ ବରଂ ଜୀବନ ପାଇଁ ଏକ ମହାର୍ଘ ଅନ୍ୱେଷଣର ବାର୍ତ୍ତା ବହନ କରେ । ସେଥିପାଇଁ କବି ଗୁରୁପ୍ରସାଦଙ୍କ 'କାଳପୁରୁଷ' ଓ ସୀତାକାନ୍ତଙ୍କ 'ଦିଶକ୍ତି' ମଧ୍ୟରେ ବିଶେଷ ତଫାତ୍ ନାହିଁ । 'କାଳପୁରୁଷ'ର ଜୀବନ ଓ ମୃତ୍ୟୁର ସାମଗ୍ରିକ ଉପଲବ୍ଧି ପ୍ରତି କବି ସୀତାକାନ୍ତ 'ଅଷ୍ଟପଦୀ' ରଚନା କାଳରେ ଯେ ସଚେତନ ଦୃଷ୍ଟିପାତ କରିଛନ୍ତି ଏହା ନିଃସନ୍ଦେହରେ କୁହାଯାଇ ପାରେ । କିନ୍ତୁ ସୀତାକାନ୍ତଙ୍କ କାବ୍ୟ ଭାବନା ସର୍ବୋଚ୍ଚ ଭାବେ ପୁରାଣର ଭାବବସ୍ତୁକୁ ଆହରଣ କରି 'କାଳପୁରୁଷ'ଠାରୁ ଅଧିକ ସଂବେଦନକ୍ଷମ ମାନସିକତାର ପରିଚୟ ଦେଇଛି । "ଅଷ୍ଟପଦୀର ବିଭିନ୍ନ କବିତାରେ ନାୟକ ଆଧୁନିକ ନରକର ଅଗ୍ନିରେ ଦଗ୍ଧ । ଏହି ନରକରେ ଜୀବନ ନାହିଁ କି ମୃତ୍ୟୁ ନାହିଁ ଏକ ଜୀବୋନ୍ମୃତ ଅବସ୍ଥା ଯେଉଁଠାରେ ପାପପୁଣ୍ୟ ଅନୁଭୂତି ଭ୍ରଷ୍ଟ ଓ ବିପର୍ଯ୍ୟସ୍ତ । କେବଳ ଦେବକୀର ଅଷ୍ଟମ ଗର୍ଭ, ଭୀମର କାଳରାତ୍ରି, କୁବୁଜାର ଶ୍ରୀକୃଷ୍ଣ ଦର୍ଶନ ବା ସୋଲୋନ୍‌ର ସମୁଦ୍ର ସହିତ ଘନିଷ୍ଠ ସମ୍ପର୍କରେ ହୁଏତ ଏହି ନରକରୁ ଉଦ୍ଧାରର ସମ୍ଭାବନା ଅଛି ଓ ଏହି ସମ୍ଭାବନା ହିଁ ସନ୍ତାପିତ ନାୟକର ଜୀବନର ଏକମାତ୍ର ଆଶା ।" (ଅଷ୍ଟପଦୀର ଭୂମିକା—ଯତୀନ୍ଦ୍ର ମୋହନ ମହାନ୍ତି)

## 'ଶବ୍ଦର ଆକାଶ'—

ଶବ୍ଦର ଆକାଶ କବିତା ସଙ୍କଳନରେ ମୃତ୍ୟୁ ଅନୁଭବ କ୍ରମଶଃ ଊର୍ଦ୍ଧ୍ୱଗ ହୋଇ ମୁକ୍ତି ଓ ଅମୃତତ୍ତ୍ୱ ଦିଗକୁ ଗତିଶୀଳ ହୋଇଛି । ଏହି ପର୍ଯ୍ୟାୟର କବିତା-ଗୁଡ଼ିକରେ ସ୍ପଷ୍ଟ ପ୍ରତିଫଳିତ ହୋଇଛି । 'ଶବ୍ଦର ଆକାଶ' ଗୀତଗୁଚ୍ଛରେ 'କୁରୁକ୍ଷେତ୍ର', 'ଶରଶଯ୍ୟା' ଓ 'ଅଭିମନ୍ୟୁ' ଶୀର୍ଷକ ତିନୋଟି ମିଥ୍‌ଧର୍ମୀ କବିତାର ଆଲୋଚନା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ । 'ଶବ୍ଦର ଆକାଶ'ର 'କୁରୁକ୍ଷେତ୍ର' ସାଂପ୍ରତିକ ବିଶ୍ୱର ପ୍ରତିଭୂ । ଏହି କୁରୁକ୍ଷେତ୍ରରେ ମଣିଷ ନିୟତିର କ୍ରୀଡ଼ନକ ।

ଜୀବନ ଧାରଣ ପାଇଁ ତା'ର ଯେଉଁ ନଖଦନ୍ତ ସଂଗ୍ରାମ ଚାଲିଛି ସେଥିରେ ସେ କମିଷ୍ଟ ମାତ୍ର । କବିତାର ଉପୋଦ୍‌ଘାତରେ ସାଂପ୍ରତିକ କାଳର ଏହି ଅବକ୍ଷୟକୁ ବିଶଦ ଭାବରେ ସୂଚାଇ ଦିଆଯାଇଛି । —"ସନ୍ତରର ଖୋଷା ଭିତରେ ଗୋଟିଏ ପୋକ / ଘୁମୋଉଥିଲି ଏକଲା ବାରଣ୍ଡାର ଗୋଟିଏ କଣରେ / ସାମ୍ନାରେ ମହା ଶ୍ମଶାନ, ଦିନଟିର ଯୁଦ୍ଧକ୍ଷେତ୍ର / କୁହୁଡ଼ି ଓ ଅନ୍ଧାରରେ ନଇଁ ଆସୁଥିଲି ।"

(କୁରୁକ୍ଷେତ୍ର)

'ସନ୍ତରର ଖୋଷା' ସାଂପ୍ରତିକ ଅବକ୍ଷୟଗ୍ରସ୍ତ ପରିବେଶକୁ ସୂଚିତ କରେ । ଏହି ଷଡ଼ୟନ୍ତ୍ର ପରିବେଶ ଭିତରେ ମଣିଷ ମଣିଷ ନୁହେଁ ବରଂ ସେ ଖୋଷା ଭିତରର ଗୋଟିଏ ପୋକ । ସାମ୍ନାରେ ମହାଶ୍ମଶାନ କୁରୁକ୍ଷେତ୍ର । ପ୍ରତ୍ୟେକ ଦିନ ତା' ପାଇଁ ଏକ କୁରୁକ୍ଷେତ୍ର କୁହୁଡ଼ି ଓ ଅନ୍ଧାରରେ ତା'ର ସ୍ଥିତି ଶେଷ ପ୍ରାୟ । ଅନ୍ୟ ଏକ ସୂର୍ଯ୍ୟସ୍ନାତ ଦିନର ପ୍ରତ୍ୟାବର୍ତ୍ତନ ତା' ପାଇଁ ବିଡ଼ମ୍ବିତ । 'ନେଲି ନେଲି ଆଶା' ପଶ୍ଚାତ୍ତରେ ବର୍ଣ୍ଣାଢ଼୍ୟ ଜୀବନ ସ୍ୱପ୍ନ ଅସ୍ତଯାଏ । କବିତାର ଦ୍ୱିତୀୟ ପର୍ଯ୍ୟାୟରେ—"ସେ ଆସିଲା କୁନି ଝିଅ / ହାତଧରି ଟାଣି ଟାଣି ନେଲା ମୋତେ / ଆଉ ଗୋଟେ ସମର ଭୂଇଁକୁ / ସିଂହତର ବଜୁଲି ତା'ର / ଅନ୍ଧାରରେ କଢ଼େଇଲା / ସେ ଯେମିତି ମୋ ମାଷ୍ଟର / ମୁଁ ତା'ର ଅନ୍ଧ ବାଘ ପିଲା ।"

(ଶରଦର ଆକାଶ—କୁରୁକ୍ଷେତ୍ର)

'କୁନି ଝିଅ', ଏଠାରେ ନମ୍ରତାର ପ୍ରତୀକ । ସମର ଭୂଇଁରେ ସମବେଦୀର୍ଣ୍ଣ ବିଶ୍ୱର ଧ୍ୱଂସସ୍ତୂପ ମଧ୍ୟରେ କବିସତ୍ତା ଯୁଦ୍ଧଗ୍ରସ୍ତ ସାଂପ୍ରତିକ କାଳକୁ ହିଁ ଚିହ୍ନିତ କରୁଛି । ଏହାସତ୍ତ୍ୱେ ଏକ ମାନବିକ ମୂଲ୍ୟବୋଧ ପ୍ରତିଷ୍ଠା ଲାଗି ମିଥ୍‌ର ମାଧ୍ୟମକୁ ଶ୍ରେଷ୍ଠ ମନେ କରିଛନ୍ତି । 'ଅଭିମନ୍ୟୁ' ଶୀର୍ଷକ କବିତାରେ 'ଅଭିମନ୍ୟୁ' ପୌରାଣିକ ଆଖ୍ୟାୟିକାର ଏକ ଆଧୁନିକ ସଂସ୍କରଣ । 'ମହାଭାରତ'ର ଅଭିମନ୍ୟୁ ସପ୍ତରଥୀଙ୍କ ଚକ୍ରବ୍ୟୂହ ମଧ୍ୟରେ ବନ୍ଦୀ । କିନ୍ତୁ ସଂଗ୍ରାମୀ ଯୋଦ୍ଧା ଭଳି ଶେଷ ପର୍ଯ୍ୟନ୍ତ ସେ ନିଜର କର୍ତ୍ତବ୍ୟରେ ଅବିଚଳିତ । ସୁତରାଂ ମୃତ୍ୟୁ ତା' ପାଇଁ ଅମୃତର ଏକ ସୋପାନ । ଅଥଚ ସାଂପ୍ରତିକ କାଳର ଅଭିମନ୍ୟୁ ଯୁଗ ଓ ଜୀବନର ଚକ୍ରବ୍ୟୂହରେ ଯନ୍ତ୍ରଣାଗ୍ରସ୍ତ ଓ ଜୀବୋନ୍ମୁକ୍ତ । 'ପଞ୍ଚତନ୍ତ୍ର'ର ବନ୍ଦୀନୀ କପୋତ ଚିତ୍ରଗ୍ରୀବ ଭଳି ସେ ମୁକ୍ତିକାମନା କରେନାହିଁ, କାରଣ ମୁକ୍ତି ସେଠାରେ ସ୍ୱପ୍ନ । ଏହି ଆକାଶ ଶ୍ୱାସରୁଦ୍ଧ ଏକ ମୃତ ଇଲାକା । —"ଆକାଶ ଓ ପବନରେ / ଏବେ ସୋରିଷଟେ ଫିଙ୍ଗିବାକୁ ଜାଗା ନାହିଁ / ଦରକଳା ଆଶା ଓ ଦରପୋଡ଼ା ସ୍ୱପ୍ନର ସମ୍ମୁଖରେ / ଶ୍ୱାସରୁଦ୍ଧ ମୃତ ଏ ଇଲାକା / ଯା ଭିତରେ ଡେଣା ତ ଝାଡ଼ି ହେବନି / ଜାଲ ଭଳି ଉଠିବ କେମିତି ?"

(ଶରଦର ଆକାଶ, ଅଭିମନ୍ୟୁ)

ବସ୍ତୁତଃ ଏହି ଜାଲ ଏକ ନିର୍ଦ୍ଦିଷ୍ଟ ଭୂମିଖଣ୍ଡ ଭିତରେ ସୀମାବଦ୍ଧ ନୁହେଁ ବରଂ ସମଗ୍ର ବିଶ୍ୱଚେତନାକୁ ଏହା ପରିବ୍ୟାପ୍ତ । "ଏ ଜାଲରେ ସବୁ ରାସ୍ତା / ବିଭିନ୍ନ ପୃଥିବୀ / ଆଉ ବିଭିନ୍ନ ସମୁଦ୍ର / ପାହୁଲରେ ମୁହଁ ଜାକ ଯେତେ ତୃଷ୍ଣା / ଚେରର ଅନ୍ଧାର ।"

ତଥାକଥିତ ଅଗ୍ରଗାମୀ ମଣିଷ ଏଠାରେ ଗ୍ରୀକ୍ ମିଥ୍‌ର ସିସିଫସ୍ ଭଳି ପର୍ବତର ଶୀର୍ଷ ଦେଶରେ ପ୍ରସ୍ତର ଖଣ୍ଡଟି ଅବସ୍ଥାପିତ କରିବାର ଅବ୍ୟବହିତ ପୂର୍ବରୁ ହିଁ ଭୂମିସାତ୍ ହୁଏ । ଆଧୁନିକ ଅଭିମନ୍ୟୁ ଜୀବନର ଏହି ଅନିବାର୍ଯ୍ୟ ପରିଣତି ସମ୍ପର୍କରେ ଅବହିତ ନୁହେଁ ଏକଥା କୁହାଯାଇ ନ ପାରେ ବରଂ ଅଧିକ ସଚେତନ । ସୁତରାଂ ବ୍ୟାଧର ଜାଲକୁ ସଂସାରର ଚକ୍ରବ୍ୟୂହକୁ ସେ ସ୍ୱାଭାବିକ ଭାବରେ ସ୍ୱୀକୃତ ଦିଏ । 'ଶରଶଯ୍ୟା'ରେ ଏହି ଦ୍ୱନ୍ଦ୍ୱରୁ ମୁକ୍ତିପାଇଁ କାବ୍ୟନାୟକ ଭୀଷ୍ମଙ୍କ ଭଳି ଦୃଢ଼ ଅନନ୍ୟମନସ୍କ ମନୋବୃତ୍ତିର ଅଧିକାରୀ ହୋଇଛି । 'ଭୀଷ୍ମ' ଏହି କବିତାରେ ସଂଗ୍ରାମୀ ମାନବାତ୍ମାର ପ୍ରତୀକ ଭାବରେ ସମଗ୍ର ମାନବ ସମାଜକୁ ଆହ୍ୱାନ ଜଣାଇ କହିଛନ୍ତି—"ତେଣୁ ହେ ପୃଥିବୀ / ଅଶ୍ରୁର ବହ୍ନିରେ ହୁଅ ଦୀପ୍ତିମାନ / ନଂପୁଂସକ ସମୟର ଜରାୟୁରେ / ବଂଚନାହିଁ ଆଉ ବଂଚନାହିଁ / ମିଛଟାରେ ସ୍ୱପ୍ନର ବନ୍ଧନ ।" (ଶରଶଯ୍ୟା)

'ଶବ୍ଦର ଆକାଶ' କାବ୍ୟ ସଙ୍କଳନର ଅନ୍ୟାନ୍ୟ କବିତା ମଧ୍ୟରେ 'ଏରୋଡ୍ରମ', 'ଘର', 'ବଗିଚ୍ଚ', 'କୋଠରୀ', ହଂସ ପ୍ରଭୃତି କବିତା ସୀତାକାନ୍ତୀୟ ଚେତନାର ବିବରଣ ପ୍ରସ୍ଥାପରେ ଯଥେଷ୍ଟ ସଫଳତା ଅର୍ଜନ କରିଛନ୍ତି । 'ଏରୋଡ୍ରମ' କବିତାରେ ପାରମ୍ପରିକ ହିନ୍ଦୁ ବିଶ୍ୱାସର ବଳିଷ୍ଠ ସମର୍ଥନ ପ୍ରକାଶ ପାଇଛି ଓ ତା' ସହିତ ଆତ୍ମାର ବାରମ୍ବାର ଘଟ ପରିବର୍ତ୍ତନର ଭାବନାକୁ ପରିପୁଷ୍ଟ କରିଛି । ଘଟଟି ଗୋଟିଏ 'ଏରୋଡ୍ରମ' ପରି ଯେଉଁଠାକୁ ଆତ୍ମାରୂପୀ ଏରୋପ୍ଲେନ୍ ଅବତରଣ କରିଆସୁଛି, କିଛି ସମୟ ବିଶ୍ରାମ ନେଉଛି ଓ ତା'ପରେ ପୁଣି ସେଇ ଆକାଶକୁ ଉଡ଼ିଯାଉଛି । ଏହି ପ୍ରତୀକ ପରିକଳ୍ପନାଟି ତାଙ୍କ କାବ୍ୟମାନସର ବୈଶିଷ୍ଟ୍ୟକୁ ଦର୍ଶାଇ ଦିଏ । ସେହିପରି 'ଘର' ଓ 'ବଗିଚ୍ଚ' ମଧ୍ୟ ପ୍ରତୀକାତ୍ମକ ଅର୍ଥ ନେଇ ଆତ୍ମପ୍ରକାଶ କରିଛନ୍ତି । ବଗିଚ୍ଚ ନଶ୍ୱର ଦେହର ପ୍ରତିନିଧିତ୍ୱ କରୁଥିବା-ବେଳେ 'ଘର' ଏକ ବାସସ୍ଥାନ (permanent home) ଭାବରେ ସୂଚିତ ହୋଇଛି । ଏକ ଗଭୀର ପାରମ୍ପରିକ ଇନ୍ଦ୍ରିୟୋତ୍ତର ବିଶ୍ୱାସର ସ୍ୱର ଏ କବିତା ଗୁଡ଼ିକରେ ସମ୍ପ୍ରସାରିତ ହୋଇଛି ଓ ବକ୍ତବ୍ୟରେ ଉଚ୍ଚକୋଟୀର ବୌଦ୍ଧିକତା ଓ ପ୍ରତୀକାତ୍ମକତା ଅବଲମ୍ବନ କରିଛି । ଗୋଟିଏ ଚିରଚରିତ ପୁରାଣ କଥାକୁ କିଛିଟା

ନୂତନ ଛନ୍ଦରେ ପ୍ରକାଶ କରିବା ହିଁ ଯଛା କବିର ମୌଳିକ ପାରଦର୍ଶିତା । ଅବଶ୍ୟ କବିଙ୍କ ବକ୍ତବ୍ୟରେ ସରଳତା ଥିଲେ ବି ସମଗ୍ର ଭାବରେ ଉପସ୍ଥାପନାଟି ଜଟିଳ ମାନସିକତା ଓ ଭାବବୃନ୍ତ ଉପରେ ଗଢ଼ି ହେବାକୁ ବାଧ । ଉଦାହରଣ ସ୍ୱରୂପ 'ବଗିଚ୍ଚ' କବିତାରେ ସେ ରାସ୍ତାକୁ ସମସ୍ୟ ରୂପେ ପ୍ରତଫଳିତ କରିଛନ୍ତି— "ସେଇଠି ରାସ୍ତାର ଶେଷ / ମୋ ବଗିଚ୍ଚ ଯେଉଁଠି ଆରମ୍ଭ । ଯଦିଓ ମୁଁ ଅନେକ-ବାର ଦେଖିଛୁ / ରାସ୍ତାର ସେ ଲହଲହ ଜିଭ / ମୁଁ ଜାଣିଛୁ ଯେ ଜିଭ ହଠାତ୍ ଦିନେ ଗୃଟିଦେବ ।" (ଶବ୍ଦର ଆକାଶ, ବଗିଚ୍ଚ)

ଏଠାରେ ବକ୍ତବ୍ୟଟି ନିଶ୍ଚିତ ଭାବରେ ଜଟିଳ ଭାବକେନ୍ଦ୍ରକୁ ନେଇ ସଞ୍ଚାରିତ । 'ରାସ୍ତାର ଶହ ଶହ ସାପ ଜିଭ' ସବଂଶ ସମସ୍ୟର ବିପୁଳ ଶକ୍ତିମତ୍ତାକୁ ପ୍ରକାଶ କରେ । ସମସ୍ୟ ପୁଣି କେଉଁଠି ଛୁଣ୍ଡା କରିଆଣେ ପିନ୍ଧ ଠିଆ ହୋଇଥାଏ । ତା' ଆଖିରେ ପାହାଡ଼ର ଖୋଲ ଓ ମୁହଁରେ ଦାଢ଼ିର ଜଙ୍ଗଲ । ବଗିଚ୍ଚ ସେ ଏକାନ୍ତ ଧୂଷ୍ଣା ଓ ଏକେଲା । ସମସ୍ୟ ସହିତ ସମ୍ପୂର୍ଣ୍ଣ ଗୃହାବଣା ପ୍ରତଷ୍ଠା କରିଥିବା କବି ହିଁ ସମସ୍ୟକୁ ଏପରି ଉପହସିତ କରିପାରେ । ଇଂରାଜୀ ସାହିତ୍ୟର ମିଷ୍ଟିକ୍ କବିମାନଙ୍କ ଭିତରୁ ବ୍ଲେକ୍, ପୋପ୍, ଡ୍ରାଇଡ଼େନ୍, ଟେନିସନ୍ ଏବଂ ଭାରତୀୟ କବି ରବୀନ୍ଦ୍ରନାଥ ପ୍ରମୁଖ କବିତାରେ ମିଷ୍ଟିକ୍ ଭାବନାକୁ ଖୁବ୍ ଅନ୍ତରଙ୍ଗତାର ସହ ଫୁଟାଇଛନ୍ତି । ସେମାନଙ୍କର ପ୍ରେରଣା ଓଡ଼ିଆ ସାହିତ୍ୟକୁ ମଧ୍ୟ ବହୁ ଭାବରେ ପ୍ରଭାବିତ କରିଛି । ମଧୁସୂଦନ, ବୈକୁଣ୍ଠନାଥ ଓ ମାୟାଧର ମାନସିଂହଙ୍କ କବିତାରେ ତାହାର ପ୍ରତଧ୍ୱନି ଶୁଣିବାକୁ ମିଳେ । ସେହି ପରମ୍ପରାର ଉପଯୁକ୍ତ ଦାୟାଦ ଭାବରେ ସୀତାକାନ୍ତଙ୍କ କବିତାରେ ମିଷ୍ଟିକ୍ ଛନ୍ଦର ଅପୂର୍ବ ବିନ୍ୟାସ ଲକ୍ଷ୍ୟ କରିହୁଏ । ସୀତାକାନ୍ତଙ୍କ କବିତାର ନୈରାଶ୍ୟବୋଧ ଗଭୀର ବିଭୁ ଚନ୍ତାରେ କ୍ରମଶଃ ଲୁପ୍ତ ହୋଇଛି । ଏ ସଙ୍କଳନସ୍ଥ 'ଶବ୍ଦର ଆକାଶ', 'ବିଦୂଷକ', 'କୃଷ୍ଣ-କୈବର୍ତ୍ତି', 'ଦୁଇ ଜଣାଣ' ପରି କେତୋଟି କବିତାକୁ ଅନୁଶୀଳନ କଲେ ଏହା ସ୍ପଷ୍ଟ ହେବ । ଜୀବନର ସମସ୍ତ ବ୍ୟସ୍ତତା ଓ କୋଳାହଳ ମଧ୍ୟରେ ବି କବିଙ୍କ କାନରେ, "ସେ ନୀଳ ଆକାଶ ଗୀତ, ସେ ଗୁମ୍ଫାର ଦରଭୁଲ କରୁଣ ପୂରବୀ" ଗୁଞ୍ଜରିତ ହୁଏ । ଅକ୍ଷର ଶିଖିଲାବେଳେ ବ୍ରହ୍ମା-ବିଷ୍ଣୁ-ମହେଶ୍ୱର ଯେଉଁ ତିନୋଟି ନାମ ଶିଶୁଟିର କାନରେ ପଶି ମନରେ ବିସ୍ମୟ ସୃଷ୍ଟି କରିଥିଲା, ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ତାହା ହିଁ କାବ୍ୟ ନାୟକର ମନ ଓ ଚେତନାର ଆକାଶକୁ ଆଚ୍ଛନ୍ନ କରି ରଖିଛି । ଆକାଶ ତାଙ୍କ ପାଇଁ ବିଖଣ୍ଡିତ ହୃଦୟର ଦୋସର, ସବୁ ଊର୍ଦ୍ଧ୍ୱରେ ଚରନ୍ତନ ବିଦ୍ୟମାନ ଏକ ନୀଳିମ ସତ୍ତା (ଶବ୍ଦର ଆକାଶ) ସବୁ ବିରୋଧାଭାସ ଓ ବୈପରୀତ୍ୟର ଯେ ସାଧନ ଏବଂ ସ୍ରଷ୍ଟା ସେହି ମହାନ୍

ସୂତ୍ରଧରଙ୍କୁ ବୁଝିବାକୁ ଚେଷ୍ଟା କରି କରି ବ୍ୟର୍ଥ ମଣିଷ ଜୀବନର ସାୟଂକାଳରେ ନଈ କୂଳରେ ଠିଆ ହୋଇ ପାରହେବା ସେଇ କୈବର୍ତ୍ତିକୁ ଅପେକ୍ଷା କରେ । "କୁମ୍ଭାଟୁଆ ଆଖିରେ କେତାଏ ନଦ ମାଡରଖି / ସେଇ କୃଷ୍ଣ କୈବର୍ତ୍ତି ଜଗିଅଛୁ ବାଟ / ଆଉ କଏ ଆସୁଅଛ ହୋ ବାଟୋଇ / ରାତି ହେଲା ବେଇଗି ଆସ ବେଇଗି ଆସ / ରହି ରହି ମାରୁଛୁ କୁହାଟ ।"

(ଶବ୍ଦର ଆକାଶ—କୃଷ୍ଣ କୈବର୍ତ୍ତି)

ସାମ୍ନାରେ ଉଚ୍ଛଳ ତରଙ୍ଗାୟିତ ଭରା ନଈ । ପାରହେବାକୁ ଭଙ୍ଗା ଡଙ୍ଗାଟିଏ ବି ନାହିଁ । ନଈ କୂଳରେ ବସିଛୁ ପଞ୍ଝାଏ, ନଈ ଆର ପାଟରେ କେତେ ସୁନ୍ଦର ସ୍ଥାନ ଓ ସୁନାର ଦେଶ ବୋଲି କୈବର୍ତ୍ତି ଭୁଲାଇ କହୁଛୁ । ସଂଶୟାକୁଳ ନାରୀ ହତଭମ୍ବ ହୋଇ ସମ୍ପୂର୍ଣ୍ଣ ଆତ୍ମସମର୍ପଣର ସହିତ ତାକୁ ଜଣାଣ କରିବା ଛଡ଼ା ତା'ର ଆଉ କି ରାସ୍ତା ଅଛି ? ତାଙ୍କୁ କବିସୂର୍ଯ୍ୟ ପରି ଗାଳିଦେଇ କବି ଦ୍ରୌପଦୀଙ୍କ ମୁହଁରେ କୁହାନ୍ତି, "ହେ ପ୍ରବଞ୍ଚନା ଠାକୁର ! ତମେ ଖୁବୁର ଗୁହାରି ଶୁଣିଛ / ତମ କାନରେ ବାଜୁଛି ମୋ ଜଣାଣ / ତମେ ମତେ ବଞ୍ଚେଇଛ ଜୟୁର ନେଲିଆ ବିଷରୁ / ଲୋକ ଲଜ୍ଜାର ଘୃଣାରୁ / ସେ ଭୟ ଓ ଲଜ୍ଜାର ମୋର ଶବ୍ଦହୀନ, ନାମହୀନ ଉଲଙ୍ଗ ସ୍ଥିତିର / ତୁମପରି ନିଦାରୁଣ ପ୍ରବଞ୍ଚକ ବିନା ଆଉ ମତେ କିଏ ବା ନଗ୍ନତାରୁ ବଞ୍ଚେଇ ଥାନ୍ତା / ଅନ୍ତହୀନ ଶାଢ଼ୀର ଛଳନାରେ ବାନ୍ଧିରଖି ।"

(ଦୁଇଟି ଜଣାଣ ଶବ୍ଦର ଆକାଶ)

ମୃତ୍ୟୁ ଓ ମହଶୋଭର ଅନୁଭୂତି ଭିତରେ ସୀତାକାନ୍ତଙ୍କ କବିତାରେ ସାଂପ୍ରତିକ ଜୀବନାନୁଭୂତି ଓ ଜୀବନଚର୍ଯ୍ୟା ଇତିହାସ, ସଂସ୍କୃତି, ପୁରାଣ ତଥା ପରମ୍ପରା ଆଦିକୁ ଆଶ୍ରୟ କରି ଗଢ଼ି ଉଠିଛି । କେତେକ କବିତାରେ ସୌନ୍ଦର୍ଯ୍ୟ ମୂଲ୍ୟବୋଧ ବିବର୍ଜିତ ସାଂପ୍ରତିକ ଦୁର୍ବିସହ ଜୀବନ ସ୍ଥିତିର କାବ୍ୟିକ ବିଶ୍ଳେଷଣ କରାଯାଇଥିବାବେଳେ ଅନ୍ୟ କେତେକ କବିତାରେ ମହାକାଳର ଅବର୍ତ୍ତିମାନରେ ଜୀବନର ସତ୍ୟାସିଦ୍ଧ ଆବିଷ୍କାର ପାଇଁ ପ୍ରବଣତା ପୋଷଣ କରାଯାଇଛି । ଏହି ପର୍ଯ୍ୟାୟର କବିତାରେ ତାଙ୍କର ଶୈଳୀ ହୋଇଛି ଅଧିକ ସାନ୍ଦ୍ର । ମୌଳିକ ଏବଂ ବାକ୍‌ଗତି ମୂଳକ । ଭାବନା ହୋଇଛି ବୌଦ୍ଧିକ ଓ ଜଟିଳ । ପ୍ରତୀକ ଓ ମିଥ୍‌ର ପ୍ରଚଳନରେ କାବ୍ୟଟିର ସୁଷମା ଦ୍ୱିଗୁଣିତ ହୋଇଛି । ସମଗ୍ର ସଙ୍କଳନଟିରୁ କବି ସୀତାକାନ୍ତ ଜଣେ ବିଦଗ୍ଧ ଦାର୍ଶନିକର କାବ୍ୟ ବ୍ୟକ୍ତିତ୍ୱ ନେଇ ଠିଆ ହେଉଛନ୍ତି । ତଥାପି ଏଠାରେ କୁହାଯାଇ ପାରେ ଯେ 'ଅଷ୍ଟପଦୀ'ର ଆବେଗପ୍ରବଣତା ଓ ଦ୍ରୁତ ପ୍ରକାଶଭଙ୍ଗୀ 'ଶବ୍ଦର ଆକାଶ'ରେ ଅନୁପଲବ୍ଧ । ଚିନ୍ତାର ଗମ୍ଭୀରତା ଓ

ଜଟିଳତା ହେତୁ 'ଶବରର ଆକାଶ'ର ଆବେଦନ ମନ୍ଥର । ଜୀବନ ଓ ମୃତ୍ୟୁର କାବ୍ୟିକ ଉଚ୍ଚାରଣ 'ଅଷ୍ଟପଦୀ'ରେ ସହଜଲଭ୍ୟ; କିନ୍ତୁ 'ଶବରର ଆକାଶ'ରେ ଇତଃସ୍ତତ ତଥା ଖଣ୍ଡିତ । ଏପରିକି 'ଅଷ୍ଟପଦୀ' ମିଥ୍ ପ୍ରୟୋଗର ପ୍ରାଚୁର୍ଯ୍ୟ ମଧ୍ୟ ଏଥିରେ ନିର୍ବାସିତ । ତା'ର ନାମକରଣରୁ ଏକ ପ୍ରାନ୍ତିକ କାବ୍ୟ ମାନସର ପରିଚୟ ବହନ କରି ଭାରତୀୟ ଧର୍ମ, ଦର୍ଶନର କିଛି ଜିଜ୍ଞାସା ଉପସ୍ଥାପନା କରେ ଓ କବିଙ୍କ ଐତିହ୍ୟବାଦୀ ଦାର୍ଶନିକ କାବ୍ୟ ସ୍ୱରରେ ସ୍ଥିରତା ଧରିରଖେ ଏକଥା ସ୍ୱୀକାର କରିବାକୁ ହେବ ।

## 'ସମୁଦ୍ର'ର ଗଭୀରତା ଏବଂ ସାନ୍ଦ୍ରତା—

ସୀତାକାନ୍ତ ମହାପାତ୍ରଙ୍କ କବିତାରେ ସମୁଦ୍ର ଏକ ଅବସ୍ଥିତି; ଏକ ସମ୍ପର୍କ, ଏକ ଚେତନା ପୁଣି ଏକ ଅନୁଭୂତି । ତାଙ୍କ କବିତାରେ ଯେମିତି ଦୁଇଟି ବାସ୍ତବତା ସହ ସମ୍ପର୍କ ସ୍ଥାପନର ଏକ ହାର୍ଦ୍ଦିକ ଅନ୍ୱେଷା ସୃଷ୍ଟି ହୋଇଛି । ଏହି ଯୁଗକଳ୍ପୀ ଅନ୍ୱେଷଣରୁ ସମୁଦ୍ର ପ୍ରତି ଗଭୀର ଆନ୍ତରିକତା ଜାତି ହେଉଛି । ଏହି ସମ୍ପର୍କ ତଥା ଏହି ଅନ୍ୱେଷା କବି ଚେତନାର ଏକ ଅଭିନ୍ନ ଅଂଶ । 'ଦୀପ୍ତି ଓ ଦ୍ୟୁତି' ଗ୍ରନ୍ଥରେ 'ସତ୍ତ୍ୱ ଓ ସମସ୍ୟ' କବିତାରେ ସମୁଦ୍ର ପ୍ରତି ମୋହ ସମ୍ପର୍କରେ ପ୍ରଥମ ଝଙ୍କାର ଶୁଣିବାକୁ ମିଳେ—"ସାଗରର ପ୍ରତି ଶିରା ଆଉ ଧମନୀରେ / ଶୋଣିତ ସ୍ୱାକ୍ଷରେ / ଲେଖାଅଛି ମୋ ସତ୍ତ୍ୱାର ଗୂଢ଼ ପରିଚୟ ।"

ସାଗର ପ୍ରତି ଏହି ବ୍ୟାକୁଳତାକୁ 'ଅଷ୍ଟପଦୀ'ର ସୋଲେନ୍ କବିତାରେ କବି ନିଜର ମୁଗ୍‌ଧ ଅନୁଭବକୁ ରୂପାୟିତ କରି କହିଛନ୍ତି । —"ସେମାନେ ଯଦି ଜାଣନ୍ତେ / ଜନମରୁ ମରଣକୁ ଗତିପଥ ଖାଲି ସେଇ ସମୁଦ୍ରରୁ ସମୁଦ୍ରକୁ / ତୁମେ ଯାଅ । ଏଣେତେଣେ ଯେଉଁ ପଥବାହି ।" (ସୋଲେନ୍, ଅଷ୍ଟପଦୀ)

ଏହି ଦୁଇ ପଂକ୍ତିରୁ ସ୍ପଷ୍ଟ ସୂଚିତ ହେଉଛି ସମୁଦ୍ର ଏକ ସ୍ଥିତି ଓ ଏକ ଲକ୍ଷ୍ୟ ଭାବରେ ହିଁ କବିମାନସର ଗଭୀର ଇଲାକାକୁ ସ୍ପର୍ଶ କରୁଛି । ସେ ଯେମିତି ଏକ ଅନ୍ତିମ ଅସୀମତା ଯିଏ ନିଜର 'ପୋକଖିଆ ଅଚଳ ସ୍ଥିତି'କୁ ସୂଚାଇ ଦିଏନା ବରଂ ତାକୁ ଭାଙ୍ଗି 'ସମୁଦ୍ର' ସହ ଏକାକାର ହେବାର ବାସନା ଜଗାଏ । ଏଥିରୁ ମୁକ୍ତ ପାଇବାର ଏକମାତ୍ର ସୂତ୍ରଧର ହେଉଛି ସମୁଦ୍ର । 'ସମୁଦ୍ର' କାବ୍ୟ ଗ୍ରନ୍ଥ ଏହି ପରିଚିତ ଚେତନାର ଏକ ଭିନ୍ନ ଗଭୀର ପରିଣତି । ଏହା ଯେପରି ଆତ୍ମିକ ସେପରି ଅନ୍ତରଙ୍ଗ ମଧ୍ୟ । 'ସମୁଦ୍ର' ତେଣୁ ଏଠାରେ ଏକ ଅନ୍ତରଙ୍ଗ ଅନ୍ୱେଷାର ସ୍ୱର । ଅନ୍ୱେଷଣର ତିନୋଟି ପର୍ଯ୍ୟାୟ 'ସମୁଦ୍ର' ଗ୍ରନ୍ଥରେ ସନ୍ନିବେଶିତ

ହୋଇଛି ଯଥା—ପରିଚୟ, ପ୍ରତିବେଶୀ ଓ ପରିଣାମ । 'ପରିଚୟ' ପର୍ଯ୍ୟାୟରେ ଯେଉଁ କବିତାଗୁଡ଼ିକ ସ୍ଥାନ ପାଇଛି ସେଥିମଧ୍ୟରୁ ସୂର୍ଯ୍ୟପୂଜା, ମୃତନଦୀ, ଓଝ ଓଏସିସ୍‌ର ଗୀତ, ଗ୍ରୀଷ୍ମ, ବୃଦ୍ଧାଲୋକ, ସମୁଦ୍ର, ପରିଚୟ ପ୍ରଭୃତି କବିତା ମାନଙ୍କରେ କବିଙ୍କର ଆଧିଭୌତିକ ଦାର୍ଶନିକ ଚିନ୍ତାର ଅପୂର୍ବ ସମାବେଶ ପରିଲକ୍ଷିତ ହୁଏ । ବେଦରେ ଯଥାର୍ଥ ଭାବେ 'ସମୁଦ୍ର'କୁ ହିଁ ଆଦିସତ୍ତା ଭାବରେ ଅଭିହିତ କରାଯାଇଛି; ଯାହା 'ନାସଦସୀୟ ସୂକ୍ତ'ରୁ ସ୍ପଷ୍ଟ ହୁଏ । ସେହି ସନାତନ ବିଶ୍ୱାସକୁ ଦୋହରାଇବାକୁ ଯାଇ କବି 'ପରିଚୟ' ପର୍ବର ଆରମ୍ଭରେ ଗର୍ବର ସହିତ ଘୋଷଣା କରିଛନ୍ତି—

"ନାସଦା ସୀନ୍ନୋ ସଦା ସୀତ୍ ତାନୀମ୍ / ନାସୀ ଦ୍ରଜମେ ବ୍ୟୋମ ପରୋଯତ୍ / କମାବରୀବଃ କୁହକସ୍ୟ ଶର୍ମନ୍ନ / ଅଂଭଃ କମାସୀଦ୍‌ଗହନଂ ଗଭୀରମ୍ ।"

(ଋଗ୍‌ବେଦ ମଣ୍ଡଳ ୧୨/୧୨୯/୧)

ତନେ କେବଳ ସମୁଦ୍ର ହିଁ ଥିଲା । ସମୁଦ୍ର ସୃଷ୍ଟିରେ ଆଦିସତ୍ତା, ସମୁଦ୍ରରୁ ସବୁକିଛି ସୃଷ୍ଟି ହୋଇଛି ପୁଣି ସମୁଦ୍ରରେ ହିଁ ବିଲୟ ହୋଇଯାଏ । ଏହା ହିଁ ଭାରତୀୟ ପୁରାଣ କଳ୍ପନା । ଭାରତୀୟ ଧର୍ମ ବିଶ୍ୱାସରେ ପରମ ସତ୍ତା ଯେ ବିଷ୍ଣୁ, ତାଙ୍କର ବାସସ୍ଥାନ ଭାବରେ ସମୁଦ୍ରକୁ ହିଁ ନିଯୁକ୍ତ କରାଯାଏ । ମହା କାଳରୂପୀ ଅନନ୍ତ ନାଗର ବକ୍ଷ ଉପରେ ସେ ସମୁଦ୍ରରେ ଶୟନରତ ଥା'ନ୍ତି । ସୃଷ୍ଟି, ସ୍ଥିତି, ବିଳୟର ସର୍ବମୟ ସତ୍ତା ଭାବରେ ସେ କଳ୍ପିତ । ସମୁଦ୍ର ହୁଏ ମେଘ, ମେଘ ହୁଏ ନଦନଦୀ ଏବଂ ସେମାନେ ସମସ୍ତେ ଜଳଧିରେ ମିଶନ୍ତି । ବିଶ୍ୱରୂପ ଦେହରେ ସବୁକିଛି ପୁନର୍ବାର ଲୀନ ହୋଇଯାଏ । ସବୁ ହିଁ ନାହିଁର ଊର୍ଦ୍ଧ୍ୱରେ ଅକଳ୍ପନୀୟ ଏକ ରହସ୍ୟ ଭାବରେ ସେ ରହିଛନ୍ତି । ଐତିହ୍ୟର ଏହି ପୃଷ୍ଠଭୂମିକୁ 'ସମୁଦ୍ର' ସଙ୍କଳନରେ ଜୀବନ ଜିଜ୍ଞାସା ଭାବରେ କବି ମହାପାତ୍ର ଗ୍ରହଣ କରିଛନ୍ତି । ପ୍ରଥମ କବିତା 'ସୂର୍ଯ୍ୟପୂଜା', 'ସମୁଦ୍ର'ର ଏକମାତ୍ର ମିଥ୍‌ଧର୍ମୀ କବିତା; ଯହିଁରେ ଏକ ସୂର୍ଯ୍ୟଦୀପ୍ତ ଜୀବନବୋଧର ଉଦ୍‌ବର୍ତ୍ତନ ପାଇଁ ଆକୁଳ ଆକୂତ ମୂର୍ତ୍ତିମନ୍ତ । ଭାରତୀୟ ସଂସ୍କୃତିରେ 'ସୂର୍ଯ୍ୟ' ଶକ୍ତିର ଉତ୍ସ । ସୂର୍ଯ୍ୟ ଉପାସନା ରୋଗ ଓ ଶୋକ ନିରାକରଣ କରି ଶକ୍ତି ତଥା ସ୍ଫୂର୍ତ୍ତି ପ୍ରଦାନ କରେ । ଏଭଳି ଏକ ସୂର୍ଯ୍ୟ ପୂଜା ଦ୍ୱାପର ଯୁଗରେ ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ କୁଷ୍ଠବ୍ୟାଧି ଜନିତ ଅଭିଶାପରୁ ମୁକ୍ତ ହେବାପାଇଁ କରିଥିଲେ । ସେହି ପୌରାଣିକ ମିଥ୍‌କୁ ଆଧାର କରି କବି ମହାପାତ୍ର ଏଠାରେ ଦର୍ଶାଇବାକୁ ଚାହିଁଛନ୍ତି । ସାଂପ୍ରତିକ ଅଭିଶାପଗ୍ରସ୍ତ ପୃଥିବୀରେ ପୁନର୍ବାର ପ୍ରାଣ ପ୍ରାଚୁର୍ଯ୍ୟ ଫେରାଇ ଆଣିବାକୁ ହେଲେ ସେହି ସକଳ ଶକ୍ତିର ଆଧାର 'ସୂର୍ଯ୍ୟ'ଙ୍କୁ ପୂଜା କରିବା ଏକାନ୍ତ ଅପରିହାର୍ଯ୍ୟ ।

କିନ୍ତୁ ଏହି ପୃଥିବୀର ଅଧିବାସୀଗଣ ସୂର୍ଯ୍ୟଙ୍କ ସ୍ଥିତି ସମ୍ପର୍କରେ ସନ୍ଦିହାନ ହୋଇ ପଡ଼ିଛନ୍ତି । ତେଣୁ କବି କହନ୍ତି—"ଏମାନେ ଜାଣି ନାହାନ୍ତି / ଆଲୁଅ କେମିତି ମିଶେ ପାଣି ଅଭ ପବନରେ ଓ ପାଲଟେ / ସାବ୍‌ଜା ରଙ୍ଗ ଘାସର ଗଛର / ଡାଳଟେଙ୍କରେ ଯିଏ ସୁଅ ହୋଇ ବହୁଥାଏ ସମ୍ରାଟଙ୍କ ସିଂହାସନ ଆଡ଼େ ।" (ସମୁଦ୍ର : ସୂର୍ଯ୍ୟପୂଜା)

'ଶାମ୍ବ' ଶଂସିତ କବିତାରେ ମୁକ୍ତ ଚେତନାର ବାର୍ତ୍ତାବହ ରୂପେ ସମଗ୍ର ମାନବ ଜାତିକୁ ଆହ୍ୱାନ ଜଣାଇ କହନ୍ତି—"ଶାମ୍ବ ତାଙ୍କୁ କହୁଥିଲେ ଉତ୍ତରବାର କ'ଣ ଅଛି / ଶସ୍ୟହାନି, ଅନ୍ନହାନି, ହଂସହାନି ଘଟିପାରେ / କିନ୍ତୁ ସେ ସମ୍ରାଟ/ ଯଦି କରୁଣା କରନ୍ତି, ସବୁ ପାପ, ସବୁ କୁଷ୍ଠ ଓ ଅନ୍ଧାର ଶେଷ ହୁଏ / ଧବ୍ ଧବ୍ ଜଳିଉଠେ ପ୍ରାଣର ଆଲୁଅ ।"

ସୁତରାଂ ଅସତ୍ୟରୁ ସତ୍ୟ, ତମସାରୁ ଆଲୋକ ତଥା ମୃତ୍ୟୁର ଅମୃତାୟିତ ଚେତନାକୁ ଯାତ୍ରା କରିବା ପାଇଁ ସୂର୍ଯ୍ୟ ପରିପ୍ରେକ୍ଷରେ ସମସ୍ତ ଶକ୍ତିର ଉତ୍ସ ଏବଂ ତାଙ୍କର ଆବାହନ ହିଁ ପ୍ରତ୍ୟେକ ମଣିଷର କାମ୍ୟ ହେବା ଉଚିତ । ସମୁଦ୍ର ହୀନତାର ପରିଚୟ ମିଳେ ମୃତନଦୀ, ଓଟ ଓଏସିସ୍‌ର ରାତି, ଗ୍ରୀଷ୍ମ, ବୃଦ୍ଧାଲୋକ, ଗ୍ରୁଇଙ୍କ କବର ପ୍ରଭୃତି କବିତାରେ ସମସ୍ତର ଚକ୍ରବ୍ୟୂହ ଭିତରେ ନୂଆ ପୁରୁଣା ଛନ୍ଦାଛନ୍ଦି ହୋଇ ଗୋଟିଏ ସତ୍ୟକୁ ହିଁ ଧ୍ୱନିତ କରୁଥାନ୍ତି ତାହା ହେଉଛି ନିଃସଙ୍ଗ ଯନ୍ତ୍ରଣା, ସମୁଦ୍ରହୀନତା ଏବଂ ସମ୍ପର୍କ ହୀନତା ଏଇ ସୂର୍ଯ୍ୟ ଆଉ ଗ୍ରୀଷ୍ମ ଋତୁରେ ଯେତେସବୁ ଗ୍ରୁଇଙ୍କ କବର ତଳେ ମଣିଷ ନିଜକୁ ଏକାନ୍ତ ନିଃସଙ୍ଗ ମନେକରେ । "ରାଗିବାକୁ, ଗର୍ଜନ କରିବାକୁ / ଅଭିମାନ କରିବାକୁ' କାନ୍ଦିବାକୁ/ ଆଖିରେ ଅଦ୍ଭୁତ ଇସାରା ଦେବାକୁ / ହସିବାକୁ ପାଗଳ ସମୁଦ୍ରଟା ନାହିଁ ।" ଏହି ନିର୍ଜନ ଜ୍ୱଳନ ଭିତରେ ମଧ୍ୟ ସେ ବର୍ଷାର ଶୀତଳ ସ୍ପର୍ଶକୁ ଅନୁଭବ କରୁଥାଏ । "ବର୍ଷା କାହିଁ ଯେ କେତେ ଦୂରରେ ଥାଏ କିନ୍ତୁ / ମୋ ରକ୍ତରେ ଇନ୍ଦ୍ରଧନୁ ଅସ୍ତଗଲା ପରେ / ବନିଗ୍ଧର ଚଲା ରାସ୍ତାରେ / ଗ୍ରୀଷ୍ମ ଶେଷ ସୁରଭି କାନ୍ଦି କାନ୍ଦି ଫେରେ ।" ଏହି ହୃଦୟଙ୍ଗମ ଓ ସହନଶୀଳତା ପରେ ପରେ ଆସିଛି ସମୁଦ୍ରର ପରିଚୟ ଏବଂ ତା' ସହ ଏକାନ୍ତ ହେବାର ବ୍ୟାକୁଳତା । ନୂଆ ସମ୍ପର୍କର ସନ୍ଧାନ ମିଳିଛି । 'ସମୁଦ୍ର ଆସିଛି ତା'ର ଲକ୍ଷ୍ମୀ ପାଦ ପକେଇ ପକେଇ' ତା'ର ନୀଳ ଶୃଙ୍ଖଳା ସହ । "ଗ୍ରୁସ୍ୱାହୀନ ମୋ ପାପୁଲିରେ / ସମୁଦ୍ରର ଅଳସ ଦ୍ୱେଷ ନାଚପାଏ / ଅଦ୍ଭୁତ ଏକ ଚୁପ୍‌ଚୁପ୍ ଶାନ୍ତ ଓହ୍ଲେଇ ଆସି/ ମୋ ଭିତରର ସବୁ ବିକଳ ଚେତନାକୁ ବୁଡେଇ ଦିଏ ।" ସମୁଦ୍ର ଆସିଛି ଗୋପୀନାଥଙ୍କ ପରି ଭକ୍ତର ଅନୁରୋଧ ଏଡ଼ି ନ ପାରି ।

"ଜାଣିଛୁ ଆସୁଛ ତମେ ମୋ ପଛରେ / ଲକ୍ଷ୍ମୀ ପାଦ ପକେଇ ପକେଇ/ ମୋ ଭରସା ମୋ କାହୁଅ ମୋର ସ୍ୱପ୍ନ ମୋର ଭୟ / ଦୁହିଁଙ୍କି ବଞ୍ଚେଇ ରଖି / ଦୁଇ କଳାଡୋଳାରେ ହସାଇ / ଶୂନ୍ୟରେ ତରଙ୍ଗ ଛବି ଆଙ୍କିବା ଖାଲି ମୋ କାମ / ମରଣର ସୁଗନ୍ଧରେ ଭରପୂର ଅନ୍ଧାର / କୋଟି ଜନ୍ମ, କୋଟି ମୃତ୍ୟୁ ଡେଇଁ ।" (ସମୁଦ୍ର)

'ପରିଚୟ' ପର୍ବ ପରେ ସମୁଦ୍ର କବିଙ୍କ ଆଗରେ ପ୍ରତିବେଶୀ ରୂପେ ଆସି ଛିଡ଼ାହୁଏ । ସମୁଦ୍ର ଏଠାରେ ଭଗବାନ୍, ସେ ଉଦାର, ସେ ମହାନ୍ । ଏହା କିନ୍ତୁ ଏକ ଜଟିଳତାର ପ୍ରତୀକ । ଇଂରେଜୀ କବି ଶଲ୍‌ଙ୍କେଙ୍କ 'Angel' ରୂପୀ ସମୁଦ୍ର ପରି ସୀତାକାନ୍ତଙ୍କ ସମୁଦ୍ରର ସ୍ନେହ ଏଇମିତି ଭୟଙ୍କର ଆଉ ମୃତ୍ୟୁ ପରି ନୀଳ । ତା' ନିକଟରେ ସବୁକଥା ଯେମିତି ଭିନ୍ନ ବାଗରେ ଅଭିବ୍ୟଞ୍ଜିତ ହୁଏ । "ଏଠି ସବୁ ମିଶାମିଶି / ପାଗଳଙ୍କ ପରି ହସ, ମଣ୍ଟ ଲୋକ ପାଇଁ କାନ୍ଦ / ଇଚ୍ଛା ହୁଏ ଚୁପ୍‌ଚାପ୍ ମରି ଶୋଇବାକୁ / ଇଚ୍ଛା ହୁଏ ଧାଇଁବାକୁ ମୃଗନାଭି କସ୍ତୁରୀ ହରିଣ ପରି କୂଳେ କୂଳେ / ଇଚ୍ଛା ହୁଏ ମଣ୍ଟ କଙ୍କଡ଼ାଟି ପରି ଶୋଇବାକୁ ଖାଲି ବାଲିଶାରେ ।" (ସମୁଦ୍ର ସାମୁଦ୍ରିକ)

ସମୁଦ୍ର ପାଖରେ ହୁଏତ ଆତ୍ମାଟି ଅଳିକରି କହିପାରେ—"ଦୟା ମୁଁ ମାଗୁନାହିଁମ / କରୁଣା ମାଗୁନି / ମାଗୁଣି ଖାଲି ଏତିକ / ମୋ ବେଢ଼ଙ୍ଗ ବଙ୍କା ପାସୁଲିରେ / କ୍ଷୀଣ ସ୍ମିତ ଆଲୋକିତ ମୁହଁ ତା'ର / ଭରି ଆସୁ କଳାକାହ୍ନୁ ହୋଇ ।" (ସମୁଦ୍ର : ନାମକରଣ)

ଏହି ଅଳିରେ ଆନ୍ତରିକତା ଅଛି । ସମୁଦ୍ର ଯେତେ ଭୟଙ୍କର ରୁଦ୍ର ହେଲେ ବି ତା'ର ସୁନ୍ଦର ମୁହଁଟି କଳାକାହ୍ନୁ ପରି ପ୍ରିୟ ଆଉ ଆଦରଣୀୟ । 'କଳା', 'ଅନ୍ଧାର' ଦୁଇଟି ରହସ୍ୟମୟତା ଭୟଙ୍କରର ସୂଚକ ହେବା ସଙ୍ଗେ ସଙ୍ଗେ ଅତି ପ୍ରିୟ ଆପଣାର 'କାହ୍ନୁ'ର ପ୍ରତୀକ ହୋଇ ପ୍ରତିବେଶୀ ସହ ସମ୍ପର୍କର ଗଭୀର ଜଟିଳତାର ସୂଚନା ଦିଏ । ସେହି ପ୍ରିୟ କାହ୍ନୁ ଜୀବନର ଅସହାୟ ମୁହୂର୍ତ୍ତରେ ସାହାଯ୍ୟ କରିବାକୁ ଓହ୍ଲାଇ ଆସେ,–"ଓଠ ଶୁଖି- ଥାଏ ଖିଏ ବି ଜାଲି ବୁଣି ହୁଏନି / ଛିଣ୍ଡା ଜାଲରେ ଥରୁଥିବା ମୁକ୍ତା ପରି ଝଲଝଲ / ବର୍ଷାଟୋପା / ହଠାତ୍ କଗାକାଳିଆ ଆଖି ହୋଇ / ମତେ ଗ୍ରାସି- ନିଏ ।" ଏହା ହିଁ ତ ପ୍ରତିବେଶୀ ସମୁଦ୍ରର ରୂପ, ଅରୂପ ରୂପର ମିଳନ, ଭଙ୍ଗାଗଢ଼ାର ଏକୀଭୂତ ସମନ୍ୱୟ । ସେହି ମୃତ୍ୟୁ ପୁଣି କାହ୍ନୁ ପରି ଶୀତଳ ତଥା ସ୍ପର୍ଶିତ ହୋଇ ସମଗ୍ର ଚେତନାକୁ ଅଧିକାର କରିନିଏ । ଏହା ହିଁ ଜଟିଳ

ବାସ୍ତବତା ସମୁଦ୍ରର । ସେ ଏକାଧାରରେ ଜଟିଳ ଆଉ ଦୁର୍ବୋଧ୍ୟ । ତୃତୀୟ ବିଭାଗ 'ପରିଣାମ'ରେ ଏହି ଦୁଇ ବିଭାଗର ପରିଣତି । ଏହି ବିଭାଗର କବିତା-ଗୁଡ଼ିକରେ ବାସ୍ତବତାର ସ୍ୱର ଅନୁଭବ କରିହୁଏ । ଚିରନ୍ତନ ସତ୍ୟ ଜନ୍ମ ମୃତ୍ୟୁ ଓ କାଳ ପ୍ରଭାବରେ ମଣିଷର ସ୍ଥିତି ସମ୍ପର୍କରେ କବିଙ୍କର ଭବିଷ୍ୟତ ବାଣୀ 'ପରିଣାମ' ପର୍ଯ୍ୟାୟର କବିତାଗୁଡ଼ିକୁ ସାର୍ଥକ କରିଛି । 'ସମୁଦ୍ର' ନିକଟରେ ପ୍ରାର୍ଥନା କିନ୍ତୁ ଶେଷକଥା ନୁହେଁ । ହୁଏତ ସମୁଦ୍ର ପାଖରେ ଶେଷ କିଛି ମିଳି ପାରେନା । କେବଳ ପ୍ରାର୍ଥନା କରିଯାଇପାରେ । —"ବର ମାଗ ହେ ପ୍ରତାପୀ ସମୁଦ୍ର / ନିଷ୍ପ୍ରଭ ଆଲୁଅରେ ନିଦ ଭାଙ୍ଗିବା ରାତ୍ରିରେ / ତୁମକୁ ହିଁ ସ୍ୱପ୍ନ ଦେଖିବ ସଦାବେଳେ / ତମେ ହେବ ତା'ର ଶରତର ନଦୀ / କାଶ ଫୁଲରେ କ୍ଷୀଣ ଦୁର୍ବଳ ।" 'ସମୁଦ୍ର' ଭିତରେ ବି ସମୁଦ୍ରହୀନତା, ତଥାପି ଏ ଅସହାୟ-ତାରେ ଜୀବନ୍ତ ସ୍ୱପ୍ନ ସହ ମୃତ୍ୟୁର ଐନ୍ଦ୍ରିକ ଧାରା ପ୍ରବାହିତ ହେଉଥାଏ ଏବଂ ସମୁଦ୍ର ସହ ନିବିଷ୍ଟ ହେବାର ଜ୍ୱଳନ୍ତ ବାସନା ଜାଗ୍ରତ ହେଉଥାଏ । ଏହା ହିଁ ସମୁଦ୍ରର ପରିଣତି । Eliotଙ୍କ 'ମେରିନା' କବିତାର ପ୍ରଥମ କେତେଧାଡ଼ି ମନକୁ ଆସିଯାଏ । ଯେଉଁଠାରେ ନୂଆ ଅନୁଭୂତିରେ ପୃଥିବୀ ଝଲସି ଉଠୁଛି । କୁହୁଡ଼ି କଟିଯାଉଛି । ଦୂର ପାହାଡ଼ ଦିଶିଲାଣି । ସମୁଦ୍ର, ଅହଂ ଏବଂ ପରିବେଶ ସବୁ ଏକାକାର ହୋଇଯାଏ । ସମୁଦ୍ର ଆଉ ଦୂର ନୁହେଁ ତାହା ଆଉ ରହସ୍ୟ ହୋଇ ରହିନାହିଁ । —"ସମୁଦ୍ରର ବାସ୍ନା ଅଛି / ମୋ ମାଆ ଭଉଣୀ ମୋର / ପ୍ରେମିକାର କଥା କଥାକରେ / ମୋର ଧର୍ମପତ୍ନୀଙ୍କର ଆଖିତଳ ଶୀତଳ ଗ୍ଲାଇରେ / ସମୁଦ୍ରର ଅଶାନ୍ତ ଲହଡ଼ି ଅଛିରେ ହୃଦୟ / ମୋ ଦେହର କାଦୁଅ ଓ ଚକ୍‌ଚକ୍ ପାଣି ଅଗ୍ନିରେ ।" ଏହି ଅନୁଭୂତି ଗୋଟିଏ ମୁହୂର୍ତ୍ତର; ମାତ୍ର ଏଥିରେ ଚିରନ୍ତନର ପରିଚୟ ଅଛି । ନିଜର ଏହି ପ୍ରଭୁ ହେବା ହିଁ ସମୁଦ୍ର ଚେତନାର ପରିଣତି । କାରଣ ସମୁଦ୍ର ପରିଚୟରୁ ଆରମ୍ଭ ହୋଇ ନିଜ ପରିଚୟ ପାଇବାରେ ଏହାର ସମାପ୍ତି ଘଟେ । କବି ଏହି ସମୁଦ୍ର ମନ୍ଥନରୁ ନିଜର ଆତ୍ମ ପରିଚୟ ଖୋଜି ପାଇଛନ୍ତି । ଏହା ହିଁ ସମୁଦ୍ରର 'ଶେଷଶବ୍ଦ' । ଏହା ମୃତ୍ୟୁ, ଜୀବନ, ଯନ୍ତ୍ରଣା, ଜ୍ଞାନ ସବୁକିଛିର ପାଣ୍ଡୁଲିପି । ଏହା ଯେମିତି ପ୍ରସିଦ୍ଧ ଚିତ୍ରଶିଳ୍ପୀ ହୋମରଙ୍କ ଶେଷଚିତ୍ର । ସେ ଚିତ୍ରଟିରେ ସମୁଦ୍ରର ଢେଉ ଭିତରୁ ଗୋଟିଏ କାଠ ଗଣ୍ଡିକୁ ସଂଗ୍ରହ କରୁଛନ୍ତି । ଯିଏ ସାରା ଜୀବନ ସମୁଦ୍ରର ବିଭିନ୍ନ ରୂପ ବିଭବକୁ ରଙ୍ଗ ଦେଇଗଲା । ଠିକ୍ ସେହିପରି ସୀତାକାନ୍ତ ସମୁଦ୍ରର ଯେଉଁ ଦାରୁଟିକୁ ସଂଗ୍ରହ କରିଛନ୍ତି ସେ ହେଉଛି ନିଜର ଅହଂ । ଏହି ଭିତରେ ଯେତେ ଯନ୍ତ୍ରଣା, ଯେତେ ସୂର୍ଯ୍ୟପୂଜା, ଚକଚକ ଜ୍ୱଳନ୍ତ ଦିଗନ୍ତକୁ ପିଇବା ହିଁ

ଆନନ୍ଦ । କାରଣ ଆନନ୍ଦ ହିଁ ଯନ୍ତ୍ରଣାର ଅନ୍ୟରୂପ । ଯଥା—"ମନେରଖ ଆନନ୍ଦ ଆଉ କିଛି ନୁହେଁ / ଆନନ୍ଦ ଖାଲି ଦରଦଶ୍ୱାନ ପବନରେ / ପତ୍ରପର ତଳକୁ ଖସୁଥିବା ଚଢ଼େଇଙ୍କ ଡେଣା / କେଉଁ ପରିତ୍ୟକ୍ତ ହ୍ରଦ କୂଳରେ / ଧୀରେ ଧୀରେ ମରି ଆସିଥିବା ଦିନର ଶେଷ ଆଲୁଅ ।"

ସୀତାକାନ୍ତଙ୍କ କାବ୍ୟ ଚେତନାରେ 'ସମୁଦ୍ର' ତେଣୁ ଏକ ବାହ୍ୟ ଅବସ୍ଥିତି ନୁହେଁ ବରଂ ଏହା ଏକ ଅନ୍ତର୍ଗତ ଚେତନା । ତାଙ୍କର 'ଦୀପ୍ତି ଓ ଦ୍ୟୁତି' ଗ୍ରନ୍ଥରେ ଏହି ଚେତନାର ଯେଉଁ ସୂଚନା ମିଳିଥିଲା 'ଯୋଲ୍ନେଷ୍'ରେ ତାହାର ମୁକ୍ତପ୍ରସ୍ୱାସ ହୋଇଛି । 'ଶବ୍ଦର ଆକାଶ'ରେ କବି ନିଜ ଭିତରେ 'ଶୃଙ୍ଗ ପାହାଡ଼'ର ସନ୍ଧାନ ପାଇଥିଲେ । 'ସମୁଦ୍ର' କାବ୍ୟ ସଙ୍କଳନର ସ୍ୱର ଅନ୍ୱେଷଣ ଓ ପ୍ରାପ୍ତି । ଜୀବନର ରହସ୍ୟ ଏବଂ ବାସ୍ତବତାକୁ ଶବ୍ଦ ଜରିଆରେ ସମୁଦ୍ର ଭିତରେ ଖୋଜିବା ହିଁ କବି ଜୀବନର ଶ୍ରେଷ୍ଠ ସାଧନା । ଶବ୍ଦ ତେଣୁ କବି ଚେତନାର ବିଭବ । ସମୁଦ୍ର ଏହି ଚେତନାର 'ଉତ୍ସ' ହେଲେ ଶବ୍ଦ ଏହାର ବିଭିନ୍ନ ପ୍ରତିବିମ୍ବ ।

## ହୃଦୟର ଶେଷ ସରଳତା ଆଡ଼କୁ ଯନ୍ତ୍ରଣାର 'ଚିତ୍ରନଦୀ' ମୁହାଁଇଥାଏ—

'ଚିତ୍ରନଦୀ' କବି ଶ୍ରୀ ସୀତାକାନ୍ତ ମହାପାତ୍ରଙ୍କ ପଞ୍ଚମ କବିତା ସଙ୍କଳନ । ଏଥିରେ ସନ୍ନିବେଶିତ କବିତାଗୁଡ଼ିକ ଆଲୋଚନା କଲେ ମୁଖ୍ୟତଃ ତିନୋଟି ବିଷୟ ସମ୍ପର୍କରେ ପାଠକ ସଚେତନ ହୋଇଥାନ୍ତି । ପ୍ରଥମତଃ ସୀତାକାନ୍ତ ଜଣେ ସଚେତନ ଦ୍ରଷ୍ଟା । ଦ୍ୱିତୀୟତଃ ପାଠକ ପାଇଁ ଏକ ସମ୍ପର୍କର ପ୍ରୟୋଜନ ସେ ସର୍ବଦା ଅନୁଭବ କରନ୍ତି । ଶେଷରେ ଛନ୍ଦ ଓ ଭାବ ବିନ୍ୟାସରେ କିଛି ପରିମାଣରେ ସଜୀବ ନୂତନତା ଆଣିବାକୁ ଚେଷ୍ଟା କରିଥାନ୍ତି । ଏହି ସଫଳତା ପୂର୍ଣ୍ଣାଙ୍ଗ ହୋଇନି ବରଂ ନୂତନ ଦିଗନ୍ତ ଉନ୍ମୋଚନ ନ କରିପାରେ ବୋଲି କବିତାଗୁଡ଼ିକ ପ୍ରତିଶ୍ରୁତି ଦିଅନ୍ତି । ଚିତ୍ରରୂପମୟତା ସୀତାକାନ୍ତଙ୍କ କବିତାର ଅନ୍ୟତମ ବୈଶିଷ୍ଟ୍ୟ ।

ଏଠାରେ ସେ ଦର୍ଶାଇବାକୁ ଚାହିଁଛନ୍ତି ନଦୀ ଏକ ବିଶ୍ୱଗତ ମେଟାଫର । ବ୍ୟକ୍ତିଗତ ଜୀବନକାଳ ଅର୍ଥରେ ତାହା ସବୁ ଦେଶରେ ସବୁ ସାହିତ୍ୟରେ ପ୍ରଯୁକ୍ତ ଯେମିତି । "The river is with us, the seer is all about us ।" ହେତୁ ବିଶ୍ୱଗତ ପ୍ରତୀକର ସ୍ୱଭାବାନୁସଙ୍ଗରୁ ଯେଉଁସବୁ ସ୍ମୃତି, କଳ୍ପନା ଓ ଆବେଗ ଜାଗ୍ରତ ହୋଇଛି ସେଥିରୁ ସେ ଯେଉଁ ବ୍ୟଞ୍ଜନା ପ୍ରକାଶ କରୁଛନ୍ତି

ତାହାର ସାହାଯ୍ୟରେ 'ଚନ୍ଦନଦୀ'ର ନିଜସ୍ୱ ପ୍ରତୀକ ଜଗତ ରଚିତ ହୋଇଛି । ଯେଉଁସବୁ ପରସ୍ପର ବିରୋଧୀ ଧାରଣା ସମ୍ବେଦନ ଓ ଅନୁଭୂତି କାଳକ୍ରମେ କବିଙ୍କ ସୃଜନୀ ଚିତ୍ତରେ ଅତ୍ୟନ୍ତ ସଂଗୋପନରେ ଗଚ୍ଛିତ ଥିଲା ତାହା ଶିଳ୍ପରୂପ ନେଇ ପ୍ରତୀକଟିରେ ଆତ୍ମପ୍ରକାଶ କରିଛି । ଜର୍ଜ ହୋଏଲ ପ୍ରତୀକକୁ 'focus of relationship' ବୋଲି କହନ୍ତି । 'A symbol like a metaphor does not stand for an ideas it is focus of relationship ।' ଜଟିଳ ଓ ପରସ୍ପର ସଂଯୁକ୍ତ ଭାବାଦର୍ଶ ବ୍ୟକ୍ତ ହୋଇଥାଏ ପ୍ରତୀକର କେନ୍ଦ୍ରୀୟ ଭାବନାରେ । ଉଭୟ ତଟରେ ପ୍ରବହମାନ ଚନ୍ଦନଦୀ ଯେବେ କବିଙ୍କ ଜୀବନାନୁଭୂତିର ପ୍ରତୀକ ହୁଏ ତେବେ ତା'ର ସେହି ଦୁଇତଟ ହୋଇ ପାରନ୍ତି ଯଥାକ୍ରମେ ଚିହ୍ନା ମାଟି ଓ ଅଚିହ୍ନା ଆକାଶ, ହୋଇ ପାରନ୍ତି ବ୍ୟକ୍ତିଗତ ଇନ୍ଦ୍ରିୟ ସର୍ବସ୍ୱ ଜୀବନ ଓ ସଚ୍ଚିଦାନନ୍ଦ ଆତ୍ମସ୍ୱରୂପ, ହୋଇ ପାରନ୍ତି ଗାଁ ଭୂଇଁର ପାର୍ଥିବ ପରିବେଶ ଓ ଦୂର ବିଧିତ କଳ୍ପନାର ସାଗର ସଙ୍ଗମ, ହୋଇ ପାରନ୍ତି ସ୍ୱପ୍ନ ଓ ସ୍ୱପ୍ନଭଙ୍ଗ ଅଥବା ହୋଇ ପାରନ୍ତି ମଧ୍ୟ ଜୀବନ ମୃତ୍ୟୁର ନୈରାଶ୍ୟ ବେଦନା ତଥା ମୁକ୍ତ ସ୍ୱପ୍ନର ବିସ୍ମୟ ଆନନ୍ଦ । ଦୁଇତଟ ବାନ୍ଧି ବୋହୁଛି ଦୁଇ ସ୍ରୋତ । କବି ନିଜ ଭାଷାରେ ହୃଦୟର ଆବେଗକୁ ବୁଝାଇବାକୁ ଯାଇ କହନ୍ତି । —"ଦୁଇ କୂଳ ଦୁଇ ସ୍ରୋତ / ଦୁହେଁ ଆପଣାର ଦୁହେଁ ଅନ୍ତରଙ୍ଗ / କାହାକୁ ଛାଡ଼ି କାହାକୁ ନିଜର କରି ପାରିବନି / ବୁଝିବ କେତେ ଯନ୍ତ୍ରଣାଦାୟକ ସେ ଅଙ୍ଗୀକାର / ସେ ପରିଗ୍ରହଣ ଓ ପ୍ରତ୍ୟାଖ୍ୟାନ ।"

ଏଥିରୁ ଚନ୍ଦନଦୀ ନାମକରଣର ସାର୍ଥକତା ସମ୍ବନ୍ଧରେ ବୁଝିହୁଏ । ଦଗ୍ଧ-ଭୁଲ ଶୋକ କବିତାଟି ରୋମାଣ୍ଟିକ୍ ଅନୁଭବକୁ ନେଇ ପୁଷ୍ଟଳ ହୋଇ ଉଠିଛି । ବାସ୍ତବତାକୁ ପରଖିବାର ଅନୁସିନ୍ଧାନ୍ତକୁ ନେଇ କବିଙ୍କ ସ୍ୱକୀୟ କାବ୍ୟିକ ବ୍ୟକ୍ତିତ୍ୱ ଦ୍ୱିଧା ବିଭକ୍ତ ହୋଇ ପଡ଼ିଛି । କବି ଯେତେବେଳେ ପଚାରନ୍ତି ।—"ସିଏ କ'ଣ ସନ୍ଦୀପ୍ତ ଅଗ୍ନି ପ୍ରତିମା ପଦ୍ମଟିଏ / ପ୍ରଜ୍ୱଳିତ ନିଃସଙ୍ଗତା ବଉଦ ଭେଳାରେ / ସାନ୍ଧ୍ୟ କ'ଣ ଜଳୁଥିଲା ସ୍ୱା ହୁତାଶେ / ତା' ରୂପା କାନ୍ଦର ଶୂନ୍ୟ ହୋମ ଅନଳରେ ?"

(ଦଗ୍ଧ୍ଭୁଲ ଶୋକ)

ପାଠକ ଅନୁଭବ କରେ ମାନବ ଜୀବନର ବ୍ୟାଧିତ ଶୋକତପ୍ତ ପ୍ରାଣର ଗଭୀର କ୍ଷତକୁ । ମାତ୍ର କବିତାଟିର ପରବର୍ତ୍ତୀ ବିକାଶ ଭିତରେ ଏଇ ଯନ୍ତ୍ରଣାର କୌଣସି ସ୍ପଷ୍ଟ ରୂପ ମିଳେନାହିଁ । ବୃହତ୍ତର ପରିପ୍ରେକ୍ଷୀରେ ଜୀବନର ଦୁଇଟି

ଢଙ୍ଗକୁ ନେଇ କବିତାଟି ତା'ର ବକ୍ତବ୍ୟ ପ୍ରକାଶ କରେ । ଅବଶ୍ୟ ପ୍ରତ୍ୟେକ ଏହି କଥାଟି ସ୍ୱୀକାର କରିବେ ଯେ ମିଥ୍ ଓ ରୂପକଳ୍ପ ପ୍ରୟୋଗରେ ସୀତାକାନ୍ତୀୟ ପ୍ରତିଭା ସର୍ବସ୍ୱୀକୃତ । ତେଣୁ ମିଥ୍ ଏବଂ ପରମ୍ପରା ସହିତ ଏକ ଅପୂର୍ବ ଯୋଗସୂତ୍ର ସେ ତାଙ୍କ କାବ୍ୟ ଜଗତରେ ରଖିଥାନ୍ତି । ସୀତାକାନ୍ତୀୟ କବିତାର ଏକ ପରମ ବୈଶିଷ୍ଟ୍ୟ ଯେ ତାଙ୍କର କେତେକ ତାତ୍ପର୍ଯ୍ୟପୂର୍ଣ୍ଣ ବେଦନାକୁ ସେ ସାମଗ୍ରିକ ଅନୁଭୂତ ଦେବାକୁ ଚାହାନ୍ତି । ଏଥିପାଇଁ ପାଠକ ପ୍ରତି ଏକ ପ୍ରଚ୍ଛନ୍ନ ଆନୁଗତ୍ୟ ମଧ୍ୟ ଅନୁଭବ କରନ୍ତୁଏ । 'ବିଦାୟ ମୁହୂର୍ତ୍ତି' କବିତାରେ ଏହି ଭାବ ଦୋଳନକୁ ସ୍ପଷ୍ଟ ଉପଲବ୍ଧି କରାଯାଇପାରେ । ପ୍ରଥମରୁ କେତୋଟି ଇଭୋକେଟିଭ୍ ଇମେଜ ଦେଇ ବିଦାୟର ବହୁମୁଖୀ ଅନ୍ୱୟ କରାଯାଇଛି । ସ୍ୱପ୍ନ, ସ୍ନାୟୁ ସତ୍ତା ଓ ସ୍ମୃତି ସବୁର ସୂଚନା ମିଳେ ବିଦାୟ ଭିତରେ । 'ସମୁଦ୍ର', 'ଚଳ', ମାୟା ସହର, ନୀଳଆକାଶ, 'ରାଜପଥ ଓ ଗେଣ୍ଡାଳିଆ', ସୀତାକାନ୍ତୀୟ ଇମେଜ୍ ପୁଞ୍ଜି ଭିତରେ କବି ଯାହା ଖୋଜି ବୁଲୁଛି ତାହାହେଲା ବିଦାୟର ପରମାର୍ଥ । ହିନ୍ଦୁ ତତ୍ତ୍ୱ ଦର୍ଶନର ସନ୍ଧାନ ପରି କବିତାଟି ଅତି ସୁନ୍ଦରଭାବେ କେତେକ ଦାର୍ଶନିକ ପ୍ରଶ୍ନ ଉତ୍ଥାପନ କରିଛି । ସ୍ୱେଚ୍ଛେସ୍ ଭଙ୍ଗୀରେ ବିଦାୟ ପ୍ରତି ଆକର୍ଷଣ ଓ ବିଦାୟଠାରୁ ଦୂରତ୍ୱ ଏକା-ବେଳେକେ କବିଙ୍କ କାବ୍ୟାନୁଭୂତିରେ ଲକ୍ଷ୍ୟକରୁ । ଶେଷରେ କେଉଁଠିର ସମାଧାନ ନାହିଁ । ମାତ୍ର ଭାବ ଜଟିଳତା ଭିତର ଦେଇ କାବ୍ୟନିଷ୍ଠା ପ୍ରତିଷ୍ଠିତ ହୋଇ ସାରିଛି । ଶେଷ ପଂକ୍ତି ମାନଙ୍କରେ ଅବିଚଳିତ, ଅ-ବିମୂଢ଼ ଏକ ଆବେଗିକ ସ୍ତବ୍ଧତା ଦେଖିବାକୁ ମିଳେ । —"ଅପ୍‌ରାହ୍ନ ସରିଆସେ / ଗେଣ୍ଡାଳିଆ ଉଡ଼ି-ଯାଏ ଝାଡ଼ି ଦେଇ ପର / ରାଜକେମା ବସି କାନ୍ଦେ / ଚଉପାଶେ ମୁହଁ ସଞ୍ଜ / ଅସତ୍ୟ ସହର ।" (ବିଦାୟ ମୁହୂର୍ତ୍ତି : ଚତନଦୀ)

"କଟକ ପରି ଏକ କବିତାରେ ଆଧୁନିକ ଜୀବନ ଯନ୍ତ୍ରଣାର ଏକ ବର୍ତ୍ତିଳ ଭାବବୃତ୍ତ ଅଙ୍କା ଯାଇଛି । ଆଧୁନିକ ମଣିଷର ନିଃସଙ୍ଗତା, ବେଦନା ବିବିକ୍ତ ସମସ୍ୟାନୁଭବ ପୁଣି ଆଶା ଭଗ୍ନତାର ଇମେଜ୍ ଆଙ୍କିବାବେଳେ କବି ସ୍ଥାନୀୟ ବାସ୍ତବତାକୁ କାବ୍ୟାନୁଭୂତିରେ ପର୍ଯ୍ୟବେସିତ କରିଛନ୍ତି । —"କାହାର ଅଭି-ଶାପରେ ଗେରୁବସ୍ତ ନାମାବଳୀ / ହୋଇଯାଏ ଲକ୍ଷ ଲକ୍ଷ ଯୋନି ଆଉ ଭ୍ରୂଣ / ରାସ୍ତାସାରା କୁଷ୍ଠୀ ଶାମ୍ବ / କୁବ୍‌ଜା ଆଉ ପଳାତକ ଦୁର୍ଯ୍ୟୋଧନ ।"

(କଟକ-ଚତନଦୀ)

ଏହି ପଂକ୍ତିଗୁଡ଼ିକ ମହାଭାରତର ଉପାଖ୍ୟାନ ଓ ଇମେଜ୍‌କୁ ନେଇ ପାଠକ ଆଗରେ ଦେଖାଇବାକୁ ଚେଷ୍ଟା କରିଛି ସହରର ଜୀବନର ଅସତ୍ୟ, ପ୍ରବଞ୍ଚନା

ମସ୍ତ ଜୀବନ ଧାରକୁ; କିନ୍ତୁ ମିଥ୍‌ର ଏହି ପ୍ରୟୋଗଟି ପ୍ରସଙ୍ଗ ପୂର୍ବକ ସମର୍ଥିତ ହେବା-ପରି ମନେହୁଏ ନାହିଁ । ହୁଏତ କାବ୍ୟିକ parody ଏହାର ଉଦ୍ଦେଶ୍ୟ ହୋଇ-ପାରେ । ମାତ୍ର ମିଥ୍‌ପ୍ରବଣତା ମିଥ୍ ସଚେତନତା ନୁହେଁ । ମନେହୁଏ ସୀତାକାନ୍ତଙ୍କ କବିତାରେ ଏପର୍ଯ୍ୟନ୍ତ transition ର ବେଳା ସମାପ୍ତ ହୋଇନାହିଁ । କବିତାକୁ ଯଦି ସମନ୍ୱିତ ବୋଲି କୁହାଯାଏ ତେବେ ଏଇ ପ୍ରସଙ୍ଗରେ କାବ୍ୟିକ ନିଷ୍ଠା ସମ୍ପୂର୍ଣ୍ଣ ନୁହେଁ । କାରଣ ମିଥ୍ ଓ ସମସାମୟିକ ଚେତନାର ଯୋଗସୂତ୍ର ହୋଇଛନ୍ତି କବି । ଏହାସତ୍ତ୍ୱେ କବିତାଟିର ମୁଖ୍ୟ (theme) 'ଥୀମ୍'ଟି ଏଥିରେ ବ୍ୟାହତ ହୋଇନାହିଁ । ସାଧାରଣତଃ ଲିରିକ କବିତାରେ ଭାବ ବଳୟ ସ୍ୱଭାବତଃ କୁହେଳିକାମୟ । ଏତେ ବିଶଦ ନୁହେଁ । ସୀତାକାନ୍ତଙ୍କ structureରେ କଥାବସ୍ତୁର ଯୌକ୍ତିକ ଉପସଂହାର ପାଇଁ ବିଶେଷ ଅବକାଶ ନ ଥାଏ । ଯେପରି ଅସ୍ପଷ୍ଟ ଦୁଃଖବାଦ ଏବଂ ଅତୃପ୍ତ ଆତ୍ମଦହନ ଭିତରେ ଉଦ୍ଧୃତ କବିତାଟି ଜୀବନ ହରେଇ ଦେଲା ପରି ମନେହୁଏ ।

ଷାଠିଏ ଦଶକରୁ ସୀତାକାନ୍ତ ଓଡ଼ିଆ କବିତାରେ ସକ୍ରିୟ ଭାବରେ ନିଜର ଲେଖନୀ ଚାଳନା କରି ଆସୁଛନ୍ତି । ଭାବାତ୍ମକ ପରିଶୀଳନ, ବୌଦ୍ଧିକ ଅନୁବୋଧନ ଏବଂ ଛନ୍ଦ ପରିଶୀଳିତ ଆଙ୍ଗିକ ବିନ୍ୟାସ ଦେଇ ତାଙ୍କ କବିତା ଏକ ଅନନ୍ୟ ପରିପକ୍ୱତାର ସୂଚନା ଦେଇ ଆସିଛି । 'ଘାସଫୁଲ' ପରି ଏକ ନିତ୍ୟ ପରିଚିତ ଥୀମ୍ (theme) ଭିତରେ ଅନ୍ତରଙ୍ଗ ଭାଷା ଓ ବ୍ୟକ୍ତିତ୍ୱର ପ୍ରତିଫଳନ ଦେଖିଲେ ଏହା ସ୍ପଷ୍ଟ ହୃଦୟଙ୍ଗମ କରିହୁଏ । ଫୁଲର ବିକାଶ ଭିତରେ ଆକାଶ ଓ ପୃଥିବୀ ସବୁ ମିଳିତ ହୋଇଛନ୍ତି । ରବୀନ୍ଦ୍ରନାଥଙ୍କ ଅନୁଭବ ମଧ୍ୟ ଅନେକାଂଶରେ ଏହିପରି । ଭାରତୀୟ ମାନବିକତାର ଏହା ଏକ ନାତିକ୍ଷୁଦ୍ର ଉଦ୍‌ଘୋଷଣା । ବ୍ରହ୍ମ ଦର୍ଶନ ପ୍ରତି କବିଙ୍କ ଆନୁଗତ୍ୟ ମଧ୍ୟ ଏଥିରୁ ସୂଚିତ ହୁଏ । ନାନାବାୟା ଗୀତ ଛନ୍ଦରେ କବିତାଟି ଶେଷ କଲବେଳେ ଭାଷା ଓ ଭାବ ଦୃଷ୍ଟିରୁ ଅନୁଭବ ସଂପ୍ରସାରିତ ହୋଇଉଠେ । ସଂସ୍କୃତି ପରିପ୍ରେକ୍ଷୀରେ ଏଇପରି ଏକ କବିତାର ଅବଦାନ ଅନସ୍ୱୀକାର୍ଯ୍ୟ । 'ତାକୁ ଭେଟିବାକୁ' କବିତାଟି କାବ୍ୟାଭିମୁଖ୍ୟର ମୁଖ୍ୟାଂଶ ଆଡ଼କୁ ନେଇଯାଏ । ସମୀଚୀନ ଅଭିବ୍ୟକ୍ତି, ସୁସଂଯୋଜିତ ଛନ୍ଦ ବିନ୍ୟାସ ଓ ପଂକ୍ତିମାନଙ୍କର ଶୃଙ୍ଖଳିତ ଯୋଜନା ସବୁ ଭିତର ଦେଇ କବିତାଟି ଏକ ସ୍ୱୟଂସମ୍ପୂର୍ଣ୍ଣ ପରି ପ୍ରତୀୟମାନ ହୁଏ । ଭୌତିକ, ଆଧିଭୌତିକ, ଚେତନ-ଅବଚେତନ, ଇତିହାସ-ମନ୍ୱନ୍ତର, ମାନବିକତା-ଅତିମାନବୀୟ ରହସ୍ୟ ବୋଧ ସବୁଥିରେ ପ୍ରାଣବନ୍ତ ମିଥ୍‌ମାନଙ୍କୁ ନେଇ ସମସ୍ତର

ରୂପାଙ୍କନ କରାଯାଇଛି । 'ସୂର୍ଯ୍ୟରଥ'କୁ ସାତଟି ଘୋଡ଼ା ଟାଣିବା ପଛରେ ପୁରାଣକୁ କେବଳ ସ୍ମରଣ କରାଯାଇ ନାହିଁ, ବରଂ ସମସ୍ତର ସମସାମୟିକ ବିତର୍କକୁ ଏକ କାବ୍ୟାନୁଭବ ଦିଆଯାଇଛି । ହୁଏତ ପରିଣାମରେ କବିତାଟି ମଧ୍ୟ ଭାଗରେ କାଚ୍ଛଟା ଅସ୍ଥିର, ନିଷ୍କାମ ହୋଇ ରହିଯାଇଛି । ଏହି ପ୍ରସଙ୍ଗରେ କୁହାଯାଇ ପାରେ ଯେ ସୀତାକାନ୍ତଙ୍କର ଏକ ପ୍ରଚ୍ଛନ୍ନ ରୋମାଣ୍ଟିକ୍ ଚେତନା ରହିଛି । 'ଅନ୍ଧାର ସମୁଦ୍ର' କବିତାରେ କବିଙ୍କର sensual ଆଭିମୁଖ୍ୟ ଅପରିବର୍ତ୍ତିତ ରହିଛି । ଆଦିବାସୀ ଭାଷା ଓ ସଂସ୍କୃତି ଅଧ୍ୟୟନରୁ ହୁଏତ ଏଇ ପୃଥିବୀ ପାଇଁ କବି ଏପରି ଏକ ମମତାବୋଧ ଲାଭ କରିଛନ୍ତି ଯାହା ସମକ୍ଷରେ ସାମ୍ପ୍ରତିକ ଯନ୍ତ୍ରଣାସିକ୍ତ ନାସ୍ତିବାଦ ତୁଚ୍ଛ ମନେହୁଏ । ମଣିଷର ଜନ୍ମ, ବୃଦ୍ଧି ଓ ମୃତ୍ୟୁ ସବୁ ଭିତରେ କବିଙ୍କ ସନ୍ଧାନୀ ଆଖି ଅମ୍ଭାର ସତ୍ତା ଖୋଜି ବୁଲୁଛି । ମଣିଷ ଓ ଆର୍ଟିଷ୍ଟ ଭିତରେ ଯେଉଁ ଦ୍ୱନ୍ଦ୍ୱ ରହିଛି କଳା ସୃଷ୍ଟି ଓ ବାସ୍ତବତା ଭିତରେ ଯେଉଁ ସୂକ୍ଷ୍ମ ବ୍ୟବଧାନ ରହିଛି ତା'ର ଅଧ୍ୟୟନ କଲାବେଳେ ସୀତାକାନ୍ତୀୟ କବିତାର ଏଇ ପ୍ରସଙ୍ଗ ଏକ ଉର୍ବର କ୍ଷେତ୍ର ଯୋଗାଇ ପାରେ । କବି ରମାକାନ୍ତଙ୍କ ମୃତ୍ୟୁ ଚେତନାରେ ସ୍ୱୀକୃତି ଓ ସମାପ୍ତିର ସ୍ମରଣ ଦେଖିବାକୁ ମିଳେ ଅଥଚ ସୀତାକାନ୍ତ ମୃତ୍ୟୁ ଅନୁଭବ ଅସ୍ପଷ୍ଟ, ଅନାଲୋକିତ ଚେତନା ପରି କେବଳ ପାଠକକୁ ଆଚ୍ଛନ୍ନ କରି ରଖେ । କ୍ଳାନ୍ତ ମାନବାତ୍ମା ପାଇଁ ରମାକାନ୍ତଙ୍କ ଶ୍ରୀରାଧା ମାନବୀୟ ସ୍ଥିତିର କଳାତ୍ମକ ପର୍ଯ୍ୟାକରଣ କଲାବେଳେ ସୀତାକାନ୍ତଙ୍କ ମୃତ୍ୟୁ କଥନ ସମସ୍ତ, ଜୀବନ ଓ ଯୌବନର ଆଲୋଚନାରେ ପର୍ଯ୍ୟବସିତ ହୋଇଛିଠେ । ଦର୍ଶନକୁ ନେଇ ରମାକାନ୍ତଙ୍କ କବିତା ଗତିମୁଖର ହୋଇ ଉଠିଛି । ମାତ୍ର ସୀତାକାନ୍ତଙ୍କ ଭାବାବେଗ ମୁଖ୍ୟ ଦର୍ଶନର ସ୍ଥାନ ସେଠାରେ ଗୌଣ । ମାତ୍ର ଏଇ ଦୁଇ ପ୍ରତିନିଧି ସ୍ଥାନୀୟ କବି କେବେ ନା କେବେ ସମସ୍ତ ଓ ମୃତ୍ୟୁକୁ ଭେଟିବା ନିତାନ୍ତ ସ୍ୱାଭାବିକ । ଦୁହେଁ ସାଧାରଣ ଶବ୍ଦର ପ୍ରୟୋଗ ଭିତରେ ଅସାଧାରଣ ଅର୍ଥ ଖୋଜିଛନ୍ତି । ମାତ୍ର ସୀତାକାନ୍ତ ଇମେଜ୍ ପ୍ରୟୋଗ କଲାବେଳେ ମଧ୍ୟ ଭାଷା ସମ୍ବନ୍ଧରେ ନିଜର କୌତୂହଳ ସମ୍ବରଣ କରିପାରି ନାହାନ୍ତି । ଅଥଚ ରମାକାନ୍ତଙ୍କ କବିତା ଆତ୍ମା ଓ ସତ୍ତାକୁ ନେଇ ନିଜେ ପ୍ରଶ୍ନାୟିତ । ସେ ସୃଷ୍ଟି ସମ୍ବନ୍ଧୀୟ ମୌଳିକ ସମସ୍ୟା ଉଠାଇବାର ପ୍ରତ୍ୟକ୍ଷ ଅବକାଶ ପାଇନାହାନ୍ତି । 'ଚନ୍ଦନଦୀ'ର 'ପରକୀୟା' କବିତାଟି ଅନ୍ୟତମ ଆକର୍ଷଣ ଭାବରେ କଥିତ ହୁଏ ।

ରବୀନ୍ଦ୍ରନାଥଙ୍କ 'ମରଣ' କବିତାକୁ ଆଖି ଆଗରେ ରଖି 'ପରକୀୟା' ବ୍ୟଙ୍ଗ କରିଛି । ସୀତାକାନ୍ତଙ୍କ ପାଇଁ ମୃତ୍ୟୁ ଏଠାରେ ବଡ଼ ବୀଭତ୍ସ ଓ ଭୟାବହ । 'ପରକୀୟା'ର ପ୍ଲଟ ସ୍ୱୟଂସମ୍ପୂର୍ଣ୍ଣ ମେଟାଫରଟିଏ । ଯାହା ମଝିରେ ଗ୍ରାମ୍ୟ

ବଧୂଟିଏ ଠିକ୍ ରାଧା ସମାନ ମଞ୍ଚକୁ ଉଠିଯାଇ ନାଚୁଆ ଶ୍ୟାମକୁ ଆଲିଙ୍ଗନ କରିଛି । ସ୍ୱାମୀ ଗୋପର ଗୁଆଳ, ଶ୍ୟାମ ଜନ୍ମ ଜନ୍ମାନ୍ତରର ଦୋସର । ମିଳନ କିନ୍ତୁ ମୁହୂର୍ତ୍ତିକେ ବଡ଼ମ୍ଭିତ ହୋଇଛି । ବଧୂଟି ଦର୍ଶକମାନଙ୍କ ଅସହ୍ୟ ଟାହିଟାପରି ଓ ଅଶ୍ଳୀଳ ଇଙ୍ଗିତ ତଳେ ନିଜକୁ ଅବିଷ୍କାର କରି ଅସହ୍ୟ କ୍ଷୋଭ ଅପମାନରେ ଭାଙ୍ଗି ପଡ଼ିଛି । ଆତ୍ମହତ୍ୟା ଉଦ୍ୟମ ତା'ର ବ୍ୟର୍ଥ ହୋଇଛି, ଜୀବନ ରାଧା ମୃତ୍ୟୁ ଶ୍ୟାମଙ୍କ ଆଲିଙ୍ଗନରେ ଚାହିଁ ସଂସାର ଜ୍ୱାଳା ଭୁଲିବାକୁ ଚାହିଁଥିଲି; ତଥାପି ସଂଗୋପନରେ ତା' ପ୍ରାଣରେ ଗୃହ ସଂସାର ପ୍ରତି ଯେଉଁ ମମତା ଥିଲି ତାହା ତାକୁ ଫେରାଇ ଆଣିଛି । ଯାହାକୁ ସେ ଶ୍ୟାମ ଭାବି ଆଲିଙ୍ଗନ କରିଥିଲି ତାକୁ ଗ୍ରାମ୍ୟ ବଧୂଟି ଏବେ ମନ୍ଦିର ବେଢ଼ାରେ ଶୋଇଥିବାର ଦେଖିଛି । "ପରିଧାନ ଚିରା ଗେଞ୍ଜି / ଶିଏ କଣା, ସାବଜ ଲୁଙ୍ଗି / ପାଉଡ଼ର ରଙ୍ଗବୋଳା କଳାମୁହଁ କୁଞ୍ଚିତ ବିକଳ ।" (ପରକୀୟା)

ତାଙ୍କର ଅଧ୍ୟାତ୍ମିକ ଅସ୍ପୃହା ଅଭିବ୍ୟକ୍ତ ହୋଇଛି 'ଚଢ଼େଇ' ଓ 'ଆରଜଣକେ' କବିତାରେ । 'ଚଢ଼େଇ' ବିଶୁଦ୍ଧ ଚୈତନ୍ୟର ପ୍ରତୀକ ମଣିଷର ଆତ୍ମପୁରୁଷ (essential self) ଊର୍ଦ୍ଧ୍ୱ ଅନ୍ତରୀକ୍ଷକୁ ଉଡ଼ିଯିବା ତା'ର ପ୍ରକୃତି । କବି ତାହାକୁ ପ୍ରତ୍ୟକ୍ଷ ଉପଲବ୍ଧିରେ ପାଆନ୍ତି ନାହିଁ । ସେ ଆଖି ଆଗରେ ଦେଖାଦେଇ ମୁହୂର୍ତ୍ତିକେ କେଉଁଆଡ଼େ ଉଡ଼ିଯାଏ । 'ଜମିଦାରଙ୍କ ସଲିଲକ'ରେ ମାନବାତ୍ମାର ସେହି ଆତ୍ମୋପଲବ୍ଧି ଅକ୍ଷମତା ଓ ଅଧ୍ୟାତ୍ମିକ ପଙ୍ଗୁତା ଅଭି-ବ୍ୟଞ୍ଜିତ । ମଣିଷ ଗୋଟିଏ ଅରକ୍ଷ ଜମିଦାର, ଚନ୍ଦନଦୀର 'ଅଳସ କନ୍ୟା'ରେ ଏକ ବ୍ୟତିକ୍ରମ ପରିଲକ୍ଷିତ ହୁଏ । ନାରୀ ବନ୍ଦନା ଥିଲି ଓଡ଼ିଆ କବିତାର ପ୍ରାଣ । ସୀତାକାନ୍ତଙ୍କ କବିତାରେ ନାରୀ ମଧ୍ୟ କିଛି କମ୍ ମହିମାମୟୀ ନୁହେଁ । ଯଦିଓ ନାୟିକା ଭାବରେ ତାହାର ଭୂମିକା ଅନେକାଂଶ ଅନୁଗ୍ର । ଅନୁଗ୍ର ବୋଲି ତ ରୁଚିବନ୍ତ ଓ ମର୍ଯ୍ୟାଦାବନ୍ତ । 'ଅଳସ କନ୍ୟା'ରେ କିନ୍ତୁ ନାରୀ ପ୍ରତି କବିଙ୍କର ମହନୀୟ ଆସକ୍ତି ଅତ୍ୟନ୍ତ ସ୍ପଷ୍ଟ ଭାବରେ ପ୍ରକାଶ ପାଇଛି ଯାହା ଅନ୍ୟତ୍ର ଦୁର୍ଲ୍ଲଭ । ନାରୀ ରାଜରାଣୀ ମନ୍ଦିରର ଅଳସ କନ୍ୟା ପରି ଯୁଗେ ଯୁଗେ ନିଜ ଅଙ୍ଗ ଲାବଣ୍ୟକୁ ବିକଶିତ କରି ଚାଲିଛି । ସେହି ନାରୀ ତା'ର ପ୍ରେମ ସହିତ ମାନବାତ୍ମାର ଏକ ଐତିହାସିକ ସ୍ମୃତିରୁ ଅସ୍ପଷ୍ଟ ପରିଚୟ ଜଡ଼ିତ ରହିଛି ଯାହାକୁ ଠିକ୍ ଚିହ୍ନି ହୁଏନାହିଁ ଅଥଚ ବିଶ୍ୱାସ କରିହୁଏ । ଶେଷ ପର୍ଯ୍ୟନ୍ତ ନାରୀ ଓ ସୌନ୍ଦର୍ଯ୍ୟର ପ୍ରତିମା ହୋଇ ରହିନାହିଁ । ସେ ସନ୍ନ୍ୟାସିନୀ ହୋଇ ସଂସାରର ଅସାରତା ସୂଚାଇଛି, ଚଣ୍ଡୀ ରୂପେ ମଣିଷକୁ ମୃତ୍ୟୁ ପଥକୁ ଟାଣିଛି । ପତ୍ନୀ, କନ୍ୟା

ଓ ଭଗ୍ନୀ ରୂପରେ ଜୀବନର ଶୂନ୍ୟତା ଅନ୍ଧକାରକୁ ଆଲୋକରେ ଭରୁଛି । 'ଝଡ଼' ଏକ ଅନନ୍ୟ ସୃଷ୍ଟି ଏହି ସଙ୍କଳନର । ଛନ୍ଦ ପ୍ରୟୋଗ ଦୃଷ୍ଟିରୁ ଅସମାପିକା ଓ ସମାପିକା କ୍ରିୟାମାନଙ୍କର ପ୍ରଲମ୍ବିତ ବିସ୍ତୃତି ଝଡ଼ର ବିରାମହୀନ ବ୍ୟାପ୍ତିର ସୂଚକ । ଅପର ପକ୍ଷରେ ମିଥ୍ ଓ ବାସ୍ତବତାର ମିଳନ ଅତ୍ୟନ୍ତ ସ୍ୱାଭାବିକ ହୋଇଛି । କୃଷ୍ଣଙ୍କ ବଂଶୀ ବାଦନରେ ଗୋପୀମାନଙ୍କର ଚିତ୍ତ ହରଣ ଓ ସଂସାର ତ୍ୟାଗଠାରୁ ଫୁଲର ନିରୁତ୍ସବ ଫସଲ ଉତ୍ପାଟନ ଦେଇ ପକ୍ଷୀ, ମଣିଷ ଏବଂ ବୃକ୍ଷଜଗତର ମୌଳିକ ବିଳୟ ପର୍ଯ୍ୟନ୍ତ ସବୁଠାରେ ଝଡ଼ର ଯୁଗାନ୍ତକାରୀ, ବୈପ୍ଳବିକ ସାର୍ବଭୌମ ବର୍ତ୍ତିମାନନ୍ତି । ଗାନ୍ଧୀଙ୍କ ଉପରେ ରଚିତ କବିତାଟିରେ ସାମ୍ପ୍ରତିକ ମଣିଷର ନ୍ୟୂନତା ସମ୍ବନ୍ଧରେ କବି ସୂଚନା ଦେଇଛନ୍ତି ସତ; କିନ୍ତୁ କବିତା ମର୍ମରେ ଏହା 'ଝଡ଼' ପରି ସଫଳ ନୁହେଁ । ସଙ୍କଳନର ମୁଖବନ୍ଧଟି ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ । ଚିତ୍ରକଳ୍ପ ପ୍ରୟୋଗରେ (ମେଟା ଫିଜିକାଲ୍ ଢଙ୍ଗରେ ହେଉ ଅଥବା ଓ୍ୱାର୍ଡ଼ସ୍‌ଓ୍ୱାର୍ଥୀୟ ଢଙ୍ଗରେ ହେଉ ନଚେତ୍ ଇଲିୟଟୀୟ ନ୍ୟାୟରେ ହେଉ) ତାଙ୍କର ନିପୁଣତା ଅବଶ୍ୟ ସ୍ୱୀକୃତ । ସୀତାକାନ୍ତ ସୃଷ୍ଟି ନେପଥ୍ୟରେ ରହିଛି ଓଡ଼ିଆ ଓ ଭାରତୀୟ ମାନବିକତାର ଗଭୀର ଐତିହାସିକତା, ପୁଣି ଉଦ୍ଦୀପ୍ତ ଓ ଜଟିଳ ମନସ୍ତତ୍ତ୍ୱ, ଭଞ୍ଜ, ରାଧାନାଥ ଓ ଭକ୍ତଚରଣଙ୍କ ରାସ୍ତା ଦେଇ ମିଥ୍ ପାଖକୁ ଫେରିଲାବେଳେ ସୀତାକାନ୍ତ ଯେଉଁ ପ୍ରଶ୍ନ ପଚାରିଛନ୍ତି ତା'ର ଗୁରୁତ୍ୱ ସମସ୍ତ ଓ ସମ୍ପ୍ରଦାୟ ନିର୍ବିଶେଷରେ ସମସ୍ତେ ଅନୁଭବ କରିବେ । —"ଏ ହାଡ଼ୁଙ୍କ ପଞ୍ଜୁରିରେ କାନ୍ଦେ ବସି / ଶୁକପକ୍ଷୀ ଶାବକଟି / ତମେ କି ଚହ୍ନିବ ତା'ର ସୂର୍ଯ୍ୟ କ୍ଷୁଧା / ତମେ କି ବୁଝିବ ତା'ର ଆକାଶର ଶେଷ ?"

(ବୃନ୍ଦାଶିକାଗ୍ନି—ଚକ୍ରନଦୀ)

## 'ଆରଦୃଶ୍ୟ'ର ଦୃଶ୍ୟ ବଦଳ—

'ଆରଦୃଶ୍ୟ' ସୀତାକାନ୍ତ ମହାପାତ୍ରଙ୍କ ଷଷ୍ଠ କବିତା ସଙ୍କଳନ । ଏଠାରେ ଏକ ଭିନ୍ନ ପରିଚୟ ମିଳେ ତାଙ୍କ ନିଜସ୍ୱ ବ୍ୟକ୍ତିତ୍ୱର । "ଦୃଶ୍ୟରୁ ଦୃଶ୍ୟାନ୍ତର / ଘଟରୁ ଘଟାନ୍ତର ଘଟି ଚାଲିଥିବ ସିନା / କିନ୍ତୁ ସେ ଆକୁଳ ଅର୍ଥ ଖୋଜାର / ସେ ଅଥୟ ସନ୍ଧାନର ଶେଷ ହେବନି ।" (ଆରଦୃଶ୍ୟ ମୁଖବନ୍ଧ)

ମୁଖବନ୍ଧରେ କବିଙ୍କର ଏହି ବକ୍ତବ୍ୟ ସମଗ୍ର ସଙ୍କଳନଟିର ମର୍ମବାଣୀ ଉଦ୍‌ଘାଟିତ କରିଥାଏ । ଯଶୋଦାଙ୍କର ଶିଶୁ କୃଷ୍ଣଙ୍କ ମୁଖ ଗହ୍ୱରରେ ବିଶ୍ୱ ଦର୍ଶନ ହିନ୍ଦୁ ଚିନ୍ତାର ଏକ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ଅଧ୍ୟାୟ । ଶ୍ରୀକୃଷ୍ଣ କେବଳ ନିଜର ପୁଅ ନୁହନ୍ତି, ପରନ୍ତୁ ଚରାଚର ସୃଷ୍ଟିର ପରମ ରୂପାୟନ ଏବଂ ଏକାନ୍ତ ଅବତାର ଏଇ ସତ୍ୟର ଆଭାସ ପାଇଥିଲେ ନିଜେ ଜନନୀ ଯଶୋଦା । କବି

ହୃଏତ ଜୀବନର ହତାଶା, ସ୍ୱପ୍ନଭଗ୍ନ ଓ ମଗ୍ନ ଚୈତନ୍ୟ ମଧ୍ୟରେ ଏପରି ଏକ ଆଘାତ ପାଇଛନ୍ତି ଯାହାକୁ ଚିହ୍ନାସ୍ତନ କରିବାକୁ ଗଲାବେଳେ ଠିକ୍ ଯଶୋଦାଙ୍କ ପରି ଅବସ୍ଥା ଘଟିଛି ତାଙ୍କର ସୃଜନୀ ଆତ୍ମା'ର । ତେବେ 'ଆରଦୃଶ୍ୟ' କବିତା ସଂଗ୍ରହଟିରେ କବି କେତେ ମାତ୍ରାରେ ସଫଳ ହୋଇଛନ୍ତି ତାହା ଦେଖିବାର କଥା । 'ଆରଦୃଶ୍ୟ' ଶୀର୍ଷକ କବିତାଟିରେ ଯଶୋଦାଙ୍କର ବେଦନା ଜର୍ଜରିତ ଆତ୍ମାର ବିଳାପ ଶୁଣିବାକୁ ମିଳେ—"ସଭିଙ୍କୁ ଅଜଣା ଏଇ ଘନକୃଷ୍ଣ ଅନୁଭବ / ଚୁପ୍‌ଚାପ୍ ନଦୀର ଗୁଳ୍ମ ତଳେ ଛପିରହି / ମୋ ସାଙ୍ଗରେ ଶ୍ମଶାନକୁ ଯିବ ।" ଇଲିୟଟ୍‌ଙ୍କ 'Journey of the Magi' କବିତାଟିର ଅନୁଭବ ପରି ଯଶୋଦା ଦୁଇଟି ଜୀବନ ଭିତରେ ଦୁଇ ପୃଥକ୍ ସତ୍ତା ମଧ୍ୟରେ ବିଭାଜିତ ହୋଇ ପଡ଼ିଛନ୍ତି । ଏକ ପକ୍ଷରେ କେହି ତାଙ୍କ କଥା ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହନ୍ତି ଯେ ଶିଶୁ କୃଷ୍ଣଙ୍କ ମୁଖରେ ସେ ବିଶ୍ୱରୂପ ସନ୍ଦର୍ଶନ କରିଛନ୍ତି । ଅନ୍ୟ ପକ୍ଷରେ ସେ ନିଜେ ତ ଜଣେ ସାଧାରଣ ମାନବୀ । ତେଣୁ ପାର୍ଥିବ ଲୀଳାଖେଳାର ଶୃଙ୍ଖଳା ଭିତରେ ଏହି ଅନୁଭବ ସତରେ ବିରଳ ଏବଂ ଅସମ୍ଭବ ପ୍ରାୟ । କ୍ଷଣକର ସେହି ଦୃଶ୍ୟ ଯଶୋଦାଙ୍କ ପାଇଁ ଚହଲା ପାଣିର ଏକ ଇମେଜ୍ ପରି । ସର୍ବୋପରି ଇଲିୟଟୀୟ କାବ୍ୟ ନାୟକ ବା ନାୟିକାଙ୍କ ପରି ସୀତାକାନ୍ତଙ୍କ ଯଶୋଦା ବିବଦମାନ ଏକ ସ୍ଥିତିରେ ବର୍ତ୍ତମାନ ଯେଉଁଠି ସତ୍ତାର ଅଖଣ୍ଡ ପୂର୍ଣ୍ଣାଙ୍ଗ ବିଶ୍ୱାସ ବିଭକ୍ତ ହୋଇ ପଡ଼ିଛି । ଆତ୍ମିକ, ଆଧ୍ୟାତ୍ମିକ ଓ ଆଧିଭୌତିକ ଜୀବନକୁ କୌଣସି ଏକ ଅଭାବନୀୟ ମୁହୂର୍ତ୍ତରେ ସେ ଦେଖି ସାରିଲା ପରେ ଯଶୋଦାଙ୍କ ନିତି-ଦିନିଆ ଜୀବନ ବିପର୍ଯ୍ୟସ୍ତ ହୋଇ ପଡ଼ିଛି । ସେହି ଅଦ୍ଭୁତ 'କଳାଦୃଶ୍ୟ'କୁ ସେ ଭୁଲିପାରି ନାହାନ୍ତି । —"ଅଦ୍ଭୁତ କଳା ସମୁଦ୍ର ଉଜାଣି ଲହରୀ / ମାଡ଼ିଆସେ ଏବଂ ତା'ର କଳାମେଘୀ ଅନ୍ଧାର ଜାଲରେ / ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ତାରା, ପାହାଡ଼ ଓ ବଣ / ମାଛ ପରି କିଲିବିଲି ହାଉଯାଉ ହେଉଥାନ୍ତି / ଅଘଟଣ ଯେଉଁପରି ଦେଖିଥିଲି ତା' ପାଟିରେ ସେ କଳା ଦିନରେ ।"

'ଅଷ୍ଟପଦୀ'ରୁ 'ସମୁଦ୍ର' ଦେଇ 'ଚିତ୍ରନଦୀ' ପର୍ଯ୍ୟନ୍ତ ସୀତାକାନ୍ତ ବାରମ୍ବାର ଈଶ୍ୱର ଓ ଅତୀନ୍ଦ୍ରିୟ ଜଗତକୁ 'ନୀଳବର୍ଣ୍ଣ'ରେ ବର୍ଣ୍ଣାୟିତ କଲାବେଳେ ଶଂସିତ ଉକ୍ତିଟିରେ 'କଳା ସମୁଦ୍ର' କହିବାରେ ସମସ୍ତ ଓ କାବ୍ୟାନୁଭବ ସଙ୍ଗତିର ଏକ ବିଶେଷ ଅଘଟଣ ହିଁ ଘଟାଇଛନ୍ତି । 'ଚିତ୍ରନଦୀ' ସଙ୍କଳନରେ ଆଙ୍ଗିକର ଦୁର୍ବଳତା ଲକ୍ଷ୍ୟ କରାଯାଇ ପାରେ । 'ଆରଦୃଶ୍ୟ'ରେ ଏହି ଦୁର୍ବଳତା ସ୍ପଷ୍ଟତର ହୋଇଉଠେ କାରଣ ଆଧ୍ୟାତ୍ମିକ ବିଶ୍ୱାସ ଓ କାବ୍ୟିକ ପ୍ରତ୍ୟୟ ମଧ୍ୟରେ ବାଞ୍ଛିତ ସମୀକରଣ ଆଣିବା

କବି ପକ୍ଷରେ ଦୁରୂହ ହୋଇ ପଡ଼ୁଛି । ବସ୍ତୁତଃ ଓଡ଼ିଆ କବିତାର ବାସ୍ତବତାକୁ ସାମ୍ନା ନ କରି ମିଷ୍ଟିକ୍ ଢଙ୍ଗରେ ଅତୀନ୍ଦ୍ରିୟ ସତ୍ୟ ସମ୍ବେଦନ କ୍ରମଶଃ ଏକ ବ୍ୟାଧିରେ ପରିଣତ ହୋଇଚାଲିଣି । ମିଥ୍ ସଙ୍କଳନ ଓ ମିଥ୍ ଚେତନା ଭିତରେ କଣ୍ଟିତ ରୂପେ ଏକ ପାର୍ଥକ୍ୟ ରହିଛି । 'ଶ୍ରୀକୃଷ୍ଣଙ୍କ ମୃତ୍ୟୁ' କବିତାଟିର ସଂଗଠନ ମିଥ୍ ଚେତନା ପରିପ୍ରେକ୍ଷୀରେ ଅଧିକ ଶକ୍ତିଶାଳୀ ଏବଂ ବାସ୍ତବମୁଖୀ ହୋଇ ଉଠିଛି; କିନ୍ତୁ ଉପସଂହାରଟି କିଛି ପରିମାଣରେ କଥାବସ୍ତୁ ଓ ପ୍ରସଙ୍ଗ ଦୃଷ୍ଟିରୁ ଅବାନ୍ତର ମନେହୁଏ । ଜାରା ଶବର ଅଜ୍ଞାତରେ ଶ୍ରୀକୃଷ୍ଣଙ୍କୁ ତୀର ନିକ୍ଷେପ କରିଛି । "ବିଧି ନିର୍ଦ୍ଦିଷ୍ଟ ମନ୍ତ୍ରପୂତ ତୀରଟି ଅବଶେଷରେ / ତା'ର ଲକ୍ଷ୍ୟ ସ୍ଥଳରେ ପହଞ୍ଚିଲା ।" ଏହି ଅନନ୍ୟ ମୁହୂର୍ତ୍ତ ଓ ଘଟଣାଟିର ବିସ୍ମିତ ଜାରା ଓ ପାଠକର ସମୀକୃତ ଅବସ୍ଥା ମଧ୍ୟରେ ପରିଲକ୍ଷିତ ହୋଇଛି । ଶବ୍ଦ ଯୋଜନାରେ ସ୍ୱର ବର୍ଣ୍ଣର ସାମ୍ୟ ତଥା ମେଳ ଦେଖିବାକୁ ମିଳେ । 'ଆଖ୍ୟାୟିକା', 'ଆରେଣ୍ୟ'ର ଏକ ଦୁର୍ବଳ କବିତା ଏଥିରେ ଅନ୍ତରର ସଲାପ ଅପେକ୍ଷା ପ୍ରସ୍ତାବ ସାଧ୍ୟ ବକ୍ତବ୍ୟଙ୍କ ଚାଲିବୁଲି ଖୁବ୍ ବେଶୀ ମନେହୁଏ । ଆଖ୍ୟାୟିକା, ଅବାକ୍ ମୁହୂର୍ତ୍ତ, ଚଢ଼େଇ (୧), ଚଢ଼େଇ (୨), ଭେଟ ଗ୍ରହଣ କେନ୍ଦ୍ରରେ ସକାଳ ଆସିଲେ, ସାଓଁତା ଇତ୍ୟାଦି କବିତାଗୁଡ଼ିକର ଅନେକ ଧାଡ଼ିରେ କ୍ଷୟିଷ୍ଣୁ ଓ ପୀଡ଼ିତ ଜୀବାତ୍ମାର ଆଲେଖ୍ୟ ଉଙ୍କିମାରେ । "ଜୀବକୋଷ ସବୁ ଥରହର / ଯେମିତି ସବୁ ଶବ୍ଦ ହଳଦିଆ ପତ୍ର ହୋଇ ଝରେ / ଫୁଙ୍ଗାଗଛ ଏଇ ଦେହ ଗୋଧୂଳିର ଯନ୍ତ୍ରଣାରେ ଜଳେ ।" 'ସାଓଁତା' ଏକ ସଙ୍କଳନର ଅନ୍ୟତମ ଶକ୍ତିଶାଳୀ କବିତା । ଗହନ ଅରଣ୍ୟ ପ୍ରାଣ ପ୍ରାଚୁର୍ଯ୍ୟରେ ଶୋଭିତ ଗୋପୀନାଥ ମହାନ୍ତିଙ୍କ 'ଅମୃତର ସନ୍ତାନ'ର ଏଇ ବଳିଷ୍ଠ ଚରିତ୍ରଟି ମାପି ଦେଖୁଛି 'ଜଙ୍ଗଲର ହିଂସ୍ର ଜନ୍ତୁଙ୍କଠୁଁ ସହରର ଅନ୍ୟ ହିଂସ୍ରତାକୁ' । ଏଠାରେ ପ୍ରକୃତିର ଅସୀମ୍ବ ସ୍ପର୍ଶ ବୋଧ ହୁଏ । ସଙ୍କଳନର ଦ୍ୱିତୀୟାର୍ଦ୍ଧ 'ଅବେଳବେଳ'ରେ ଏଇ ଶୀର୍ଷକ କବିତାରେ ସମଧର୍ମ ପ୍ରତିଛବି-ମାନଙ୍କୁ କବି ବେଶ୍ ସୃଷ୍ଟି ପାରିଛନ୍ତି । କାଳ ଆଗରେ କ୍ଷୁଦ୍ରାଦପିକ୍ଷୁଦ୍ର ମଣିଷଟି ମୁଣ୍ଡ ନୋଇଁବାକୁ ବାଧ୍ୟ । ଯେମିତି—"ଆରସିରେ ମୁହଁ ଦେଖି ଚମକିଲି ମୁଣ୍ଡରେ ପାଚିଲା ବାଳ ଏଠିସେଠି / ହୃଦୟର ଆକାଶରେ ନଇଁଲାଣି ବେଳ ।"

(ବେଳ ଅବେଳ)

'ଝରାବେଳ'ର ଚମତ୍କାର ବର୍ଣ୍ଣନାଟିଏ । ଝାଁ । ଝାଁ । ଝରାବେଳ ଧକେଇଚି କୁକୁର ଜିଭରେ । ସାବଲୀଳ ବର୍ଣ୍ଣନାର ଅନ୍ୟ ଏକ ଝଲକ ହେଉଛି, "ପାଣି ଟିକେ ଦେବାକୁ କେହି ନାହାନ୍ତି, ମୁହଁ ଜଳି ଯାଇଥିବ ଏ ଝାଞ୍ଜି

ଖବରେ ।" ସେଇ ଗେଞ୍ଜି ବା ପାଇଜାମା ପିନ୍ଧି ଦୁଇ ବନ୍ଧୁ ହାତ ଧରାଧରି ହୋଇ ଡଗଡଗ ଖବରେ ସହରକୁ ଫେରିଯିବେ । ବେଳ ହେଉ ବା ଅବେଳ ହେଉ ବ୍ୟକ୍ତିବିଶେଷର ବିଳୟରେ ପ୍ରିୟ ପୃଥିବୀର କିଛି କ୍ଷତି ହେବନି । ପୁଣି ମୂଳପରି ସକାଳ, ସଞ୍ଜ, ଉଦୟ, ଅସ୍ତ ଲାଗି ରହିବ । 'ମାରବଡାରେ କବି' କବିତାଟି ବୋଧହୁଏ ସବୁଠାରୁ ଲୋଭନୀୟ ଅଭ ପ୍ରାଣବନ୍ତ ଇମେଜ୍ ସୃଷ୍ଟି କରେ । ଏଇ ପୃଥିବୀ, ସମୁଦ୍ର, ଆକାଶ ବା ମାଟି ପାଣିପବନ କେତେ ଭାବରେ ତାଙ୍କ ଅନୁଭବକୁ ସ୍ପନ୍ଦିତ କରନ୍ତି ଏଇମାନଙ୍କୁ ନେଇ କେତେ ଶବ୍ଦ ଯୋଡ଼ାହୁଏ, କେତେ କବିତା ସୃଷ୍ଟି ହୁଏ । ମୃତ୍ୟୁର ନିଶ୍ଚିତତା ସତ୍ତ୍ୱେ ତଥାପି ଏଠି ଜନ୍ମର ମଧୁର କୁଆଁ କୁଆଁ ରବ ଶୁଭେ ।

"ସେ ଖୋଜେ ଧୂଳି ଧୂସର ଦୋ ଦୋ ଛାୟା ସ୍ଥାନ ଇଲାକାରେ / କେତୋଟି ପ୍ରଥମ ଶବ୍ଦ ଯିଏ କେବେ ମଉଳା ପଡ଼େନି / ଆଲୁଅରେ ଆଖିଯ ଯା' ଅନ୍ଧାରକୁ ବାତିଲ କରେନି / କୁଆଁ କୁଆଁ ରବ ଯିଏ ମୃତ୍ୟୁକୁ ପିଠି ବୁଲେଇ / ଛଳନାରେ ମୁହଁ ଲୁଚଏନି / ସାରା ଆକାଶ ଶବ୍ଦଙ୍କର ସେଇ ଫୁଲରେ / ବସନ୍ତର ଫୁଲବନ / ଲୋଡ଼ନ୍ତି ଗୋଟିଏ ସହାନୁଭୂତିଶୀଳ କବି ମନ । 'ମାରବଡାରେ କବି' ବହୁ ପରିମାଣରେ ଇଲିୟଟ୍‌ଙ୍କ 'ଫୋର କ୍ୱାର୍ଟେଟ୍‌ସ'ର ସତ୍ତା ସହିତ ମିଶିଛି । ହୁଇଟ୍‌ମ୍ୟାନଙ୍କ ବିଶ୍ୱ ଉତ୍‌ପ୍ରେକ୍ଷା ତଥା କବିଙ୍କ ନିଜ ଜୀବନର ଜୈବିକ ସ୍ମୃତି ନିଗଡ଼ି ପଂକ୍ତିଗୁଡ଼ିକ ଗୀତିମୁଖର, ସରଳ ସଙ୍ଗୀତରେ ଭରପୂର ପୁଣି ପଦଯୋଜନା ଭଗବତମାଳି ପ୍ରବଚନ ଗାଥାର ଢାଞ୍ଚା ନେଇ ପ୍ରବନ୍ଧ-ମାନ । "କବି ତମ କବିତାର ଦ' ଧାଡ଼ି ମନେ ପଡ଼ୁଛି / ପୁନେଇଁ ଜହ୍ନ ଉଇଁଲା ବେଳକୁ / ସଞ୍ଜବତୀଟି ଜାଳିଲା ବେଳକୁ / ଲୋକଟି ଘରେ ପାଦ-ଦେଲା ।" ଆଧୁନିକ ଓଡ଼ିଆ କବିତାରେ ପରମ୍ପରା ପ୍ରତି ପୁନଶ୍ଚ ବିଶ୍ୱାସ ଆମ କବିତାରେ ପୁନଶ୍ଚ ମୂଳଖୋଜା (back to the roots) ବୋଲି କୁହାଯାଇ ପାରେ । ଏଇ କ୍ରମରେ କବି ମଧ୍ୟ ତା'ର ଭାବନାର ଅଧିକ ସ୍ୱଚ୍ଛ ଓ ସ୍ପଷ୍ଟ ହେଉଛି । ସୀତାକାନ୍ତଙ୍କ କବିତା ସମ୍ପର୍କରେ ଡେଭିଡ୍ କବି ଓ ସମାଲୋଚକ ଏରିକ୍ ଯାହା କହିଛନ୍ତି ତାହାକୁ ଉଦ୍ଧାର ନ କରି ରହି ପାରୁନି—"ଏ କବିତା-ଗୁଡ଼ିକ ଉଭୟ ବିକ୍ଷୁବ୍ଧ ଓ ଶାନ୍ତ ଯନ୍ତ୍ରଣାରେ କୁଡ଼ୁବୁଡ଼ୁ ଅଥଚ ଉଦାର ଓ ହସହସ । ସ୍ନେହ ଓ ମୃତ୍ୟୁଭୟ ଏଠାରେ ପରସ୍ପରର ପଡ଼ୋଶୀ ଓ ସ୍ୱପ୍ନ ଇତିହାସଠୁଁ ଅଧିକ ବାସ୍ତବ । ସରଳ ପ୍ରଶ୍ନ ଓ ଅନୁଭବର ବିରୋଧାଭାସ ସତ୍ତ୍ୱେ ପ୍ରତ୍ୟେକ କବିତା ଗୋଟିଏ ଗୋଟିଏ ସମ୍ପୂର୍ଣ୍ଣ ପ୍ରତୀକ । ସେମାନଙ୍କର ଅଭିଳାଷ

ଅନ୍ୟର, ଆରଜଣକର ଓ ସାଗ୍ର ବିଶ୍ୱର କଥା କାନ ଡେରି ଶୁଣିବା ପାଇଁ।
କବିତା ପାଇଁ ଇଏ କିଛି କମ୍ ଲକ୍ଷ୍ୟ ନୁହେଁ।" (ପ୍ରମୁଖ କବି କଥୋପକଥନ)

## ସମୁଦ୍ରର ବାଲିଚର ସମ୍ପର୍କର ପାଦଚିହ୍ନ—

ବହୁ ଆଲୋଚିତ କବିତା ସଙ୍କଳନଗୁଡ଼ିକ ପରେ ୧୯୮୪ ମସିହାରେ ପ୍ରକାଶିତ 'ସମୁଦ୍ରର ଶେଷ ନାମ' କବିତା ଗ୍ରନ୍ଥଟି ପୂର୍ବାପେକ୍ଷା ଖୁବ୍ ସରଳ ଏବଂ ସହଜ ଭାବ ଆଲୋଡ଼ନ ସୃଷ୍ଟି କରେ। ପରସ୍ପର ଭିତରେ ଯେଉଁ ଭାବ ବା ସ୍ନେହ ସମ୍ପର୍କ ଖୁବ୍ ପାରିବାରିକ ହୋଇ ଗଢ଼ି ଉଠିଥାଏ ତାହାର କିଛିକି ପ୍ରତିଫଳନ 'ସମୁଦ୍ରର ଶେଷ ନାମ'ର ବିଭିନ୍ନ କବିତାରେ ସ୍ପଷ୍ଟ ରୂପ ପାଇଛି। ଗୋଟିଏ ସ୍ତରରେ ଏହି 'ମୁଁ'ର ପୃଥିବୀଟି ନିଜ ଗାଁ, ନଈ ଏବଂ ଘରର ଗଭୀର ଅନ୍ତରଙ୍ଗତାରେ ସମ୍ପର୍କିତ ହୋଇଯାଏ। ଏହି ପୃଥିବୀରେ କବିଙ୍କ ସହ ଏକାତ୍ମ ହୁଅନ୍ତି କେତେମା, ବାପା, ବୋଉ, ସ୍ତ୍ରୀ, ପୁଅଝିଅ ସମସ୍ତେ। ତେଣୁ ଏ ସମ୍ପର୍କ ବଡ଼ ଆତ୍ମିକ, ବଡ଼ ଘରୋଇ। ଗୋଟିଏ ଗୋଟିଏ କ୍ଷଣିକ ମୁହୂର୍ତ୍ତର ଘଟଣା ପ୍ରତି କବିଙ୍କର ପ୍ରତିକ୍ରିୟା। ନିଜକୁ ବାପା, ପୁଅ, ସ୍ୱାମୀ ଭାବରେ ନିଜର ପ୍ରତିକ୍ରିୟା ଦ୍ୱାରା ଏ ସମ୍ପର୍କର ବର୍ଣ୍ଣନା ନିଜ ପରିବାର ଭିତରେ ପୁଣି ଅଛନ୍ତି ନିଜ ଗାଁ ଅଉ ନଦୀ ଚନ୍ଦ୍ରଭାଗା। ଏହିମାନଙ୍କ ଭିତରକୁ କବିଙ୍କର ଅସ୍ତିତ୍ୱର ଚେର ବ୍ୟାପି ଯାଇଛି। "ଅସୀମ ଆଉ କ'ଣ କି? / ଅସୀମର ଲଙ୍ଗଳ କଣ୍ଢିରେ ହାତରଖି / ଏମିତ ସାମ୍ନାକୁ ଅନେଇବା ବର୍ଷାଧାରର ପର୍ଦ୍ଦା ଟେକି / ଓ କାଦୁଅରେ ଆଉ ପାଦେ ପାଦେ ପକେଇବା।"

(ଆମ ଗାଁ—ସମୁଦ୍ରର ଶେଷ ନାମ)

ଘର 'ଦାଣ୍ଡ କବାଟ' ଦେଇ ସତେ ଯେମିତି ବାହାର ପୃଥିବୀର ମଣିଷ ସହିତ ବ୍ୟକ୍ତିର ଯୋଗସୂତ୍ର ରକ୍ଷାହୁଏ। ଜୀବନର ଚିରନ୍ତନତା ଧ୍ୱନିତ ହେଉଥାଏ। —'ସେ ବାଟେ ସତ ତ ଯିବା ଆସିବା ଲାଗିଥାଏ' କିମ୍ବା 'ଗୋଟିଏ ମୁହଁ ଦାଣ୍ଡରେ ଆତଯାତ ମଣିଷ'। (ଦାଣ୍ଡ କବାଟ)

ଏବଂ ଆଉ ମୁହଁଟି ହସକାନ୍ଦ ରୋଗ ବୈରାଗ୍ୟ ବାର ଅଳଭୋଗର ଏହା ହିଁ ବାହ୍ୟ ଏବଂ ଅନ୍ତରର ଆତ୍ମିକ ସମ୍ପର୍କ। ଏହାର ଚଉହଦୀ ଭିତରେ ଆସକ୍ତି, ଉଦାସୀନତା, ମମତା ପୁଣି ଦୂରତା ଅଛି। ଏହି ଦାଣ୍ଡ କବାଟ ଦୁଇଟି ଘରର ସଂଯୋଗ ସେତୁ। ଗୋଟିଏ ଆମ ଗଢ଼ା ଝାଟିମାଟି, ଅନ୍ୟଟି ସମସ୍ତଙ୍କର ଘର ଏଇ ବିଶାଳ ପୃଥିବୀର ମାଟି। ଏହି ସମସ୍ତେ ହିଁ ଆମ ପରିବାରର ଲୋକ।

ସେମାନଙ୍କୁ ଘେରି ରହିଥାଏ ସ୍ମୃତି । ତାହା ହିଁ ଜୀବନର ମୂଳ । ଏହା ବୁଣିଦିଏ ବଞ୍ଚିବାର ଜାଲ । ଜୀବନକୁ ସାମ୍ନା କରିବାର ସାହସ ଦିଏ । ତେଣୁ ବାପା ହିସାବରେ କବିଙ୍କର ଆଶା; —"ମୁଁ ଜାଣିଲି ଉଚିତ ଯେ ଯିବାକୁ ହେବ / ପ୍ରବୋଧିଲି ଦେଖ ବାବୁ ! / ସମସ୍ତିଙ୍କି ଭିନ୍ନ ଭିନ୍ନ ବନବାସ ଦଶା ଥାଏ / ଆଜି ନ ହେଲେ ତ କାଲି / ତେଣୁ ଆଉ ବିଳମ୍ବ ନ କରି / ହସି ହସାଇ ବାବୁ ! ରେ ଯାଅସି ବାହାରି / ଏ ଯାତ୍ରା ତୋ ଶୁଭ ହେଉ, ଶୁଭ ହେଉ ରହଣି ତୋହର ।" (ଏ କୂଳ ସେ କୂଳ)

ଏହି ଧାଡ଼ିଗୁଡ଼ିକରେ ଜୀବନର ସତ୍ୟ ସହ ଆସକ୍ତି ଏବଂ ନିର୍ଲିପ୍ତତା ଉଭୟ ଜଡ଼ିତ । ଏହି ବ୍ୟକ୍ତିଗତ 'ବନବାସ' ଭିତରେ ଉଙ୍କି ଉଠେ ଜେଜେମା'ର ଅଖି ଯାହାକି 'ନିର୍ଲିପ୍ତ, ଅନ୍ତରଙ୍ଗ, ସୁଦୂର' । ଜେଜେମା'ର ଶେଷ ନିଃଶ୍ୱାସ ସହ କବି ଜୀବନର ଗଭୀର ସତ୍ୟକୁ ବି ବୁଝିଯାନ୍ତି । "ସେଦିନ ବୁଝିଲି ଜୀବନରେ ସବୁ କାନ୍ଦଣା ଲୁଚେଇ ଲୁଚେଇ କାନ୍ଦିବାକୁ ହୁଏ ।" (ଜେଜେମା')

ଏହିପରି ଏକ ଅନୁଭୂତିନିଷ୍ଠ ମନ ନେଇ କବି ବାପାର ଭୂମିକା ଗ୍ରହଣ କରିଛନ୍ତି । 'ମୁନୁ ପାଇଁ ଗୋଟିଏ କବିତା'ରେ ପୁଅକୁ ଉପଦେଶ ଦେବା ଛଳରେ, ଜୀବନର ଧ୍ରୁବ ସତ୍ୟକୁ ପ୍ରକାଶ କରିଛନ୍ତି ଏବଂ ତାହାର ସାମ୍ନା କରିବାକୁ ପୁଅକୁ ପ୍ରସ୍ତୁତ କରିଛନ୍ତି । ଜୀବନର ଶେଷ ପର୍ଯ୍ୟନ୍ତ ମଣିଷକୁ ଗ୍ଭଲିବାକୁ ପଡ଼େ । ଏହା କେତେବେଳେ ଦୁଃଖପୂର୍ଣ୍ଣ ପୁଣି ବିପଦ ସଙ୍କୁଳ ହୋଇପାରେ । ଏହା ସତ୍ତ୍ୱେ ବାଘ ଛେଳି ଖେଳ ଖେଳିବାକୁ ପଡ଼େ । "ବାଘ ବକ୍ରି ଖେଳ ଆମେ ସାଙ୍ଗ ହୋଇ କେତେ ଖେଳିଛେ / ଏଇନେ ମୁଁ ସାମ୍ନାରେ / ବାଘଠୁଁ ତୋତେ ନିରାପଦ ଦୂରତାରେ ରଖିବି ବୋଲି ଯୁଝୁଁଛି / ଯେମିତି ତୋ ଜେଜେ ଯୁଝୁଁଥିଲେ / କାଲିକି ତୋ ବାପାକୁ ବାଘ ନେଇଗଲା ପରେ / ତୁ ସେ ବାଘର, କଳା ମିଶିମିଶି ସେ ଦୁରନ୍ତ ବାଘର ସାମ୍ନା କରିବୁ ।" (ମୁନୁ ପାଇଁ ଗୋଟିଏ କବିତା)

ଯେମିତି ଇଏଟସ୍ ତାଙ୍କ ଝିଅ ପାଇଁ ପ୍ରାର୍ଥନା କରିଥିଲେ ଚିରନ୍ତନ ମୂଲ୍ୟବୋଧ ପାଇଁ । ଘର ଆଉ ଜୀବନକୁ ସୌନ୍ଦର୍ଯ୍ୟରେ ଭରିଦେବାର ସାମର୍ଥ୍ୟ ପାଇଁ ପ୍ରାର୍ଥନା କରିଥିଲେ, ତାଙ୍କ କନ୍ୟା ଯେମିତି ଆଦର୍ଶ ନାରୀଟିଏ, ବଧୂଟିଏ ହେଉ । ଏଠାରେ ସୀତାକାନ୍ତ ତାଙ୍କ ମୁନୁକୁ ଉପଦେଶ ଦେଇଛନ୍ତି ଜୀବନକୁ

ସାମ୍ନା କରିବାକୁ, ନିଜର କ୍ଷୁଦ୍ରତା ଭିତରୁ ବାହାରି ସାରା ସୃଷ୍ଟିକୁ ନିଜର କରିବାକୁ । 'ଯାତ୍ରା ଚୋର ଘାଟି ହେଉ, କବିତାରେ ମଧ୍ୟ ମୁଖ୍ୟତଃ ଏହି ସ୍ୱର ଆଉ ଟିକେ ପରିବର୍ତ୍ତିତ ରୂପନେଇ ଆତ୍ମପ୍ରକାଶ କରିଛି । ଜୀବନକୁ ଗ୍ରହଣ କରି ମଣିଷ ଜନ୍ମର ସାର୍ଥକତା ଉପଲବ୍ଧି କରିଯାଇ ପାରେ । ଯଦିଓ ଅନେକ ପ୍ରଲୋଭନ, ଅପମାନ, ଦୁଃଖ ଏଇ ଚଲାବାଟରେ ଗଲାବେଳେ ମିଳିପାରେ ତଥାପି ଜୀବନର ମାୟା ମୋହକୁ ଟପି ସ୍ୱପ୍ନ ଆଡ଼କୁ ଯିବାକୁ ହେଲେ ଧୈର୍ଯ୍ୟ ଏବଂ ସାହସ ନିହାତି ଆବଶ୍ୟକ । ତେଣୁ ଗୋଟିଏ କଥା ସବୁବେଳେ ମନେ ରଖିବୁ ଶ୍ଳଥଚର୍ମ ହିଁ ମୃତ୍ୟୁ-ହୀନ ସ୍ୱପ୍ନର ଆଉ ଏକ ଉଦାହରଣ । ସାମ୍ନାରେ ଯାହା ପାଇବୁ ଗ୍ରହଣ କରନେବୁ ପଛେଇ ଯିବୁନି । 'ଅନ୍ଧ ମହୁମାଛି' ପରି ସବୁଠି ଶୁଙ୍ଘି ବୁଲି ଦେବୁ ତେବେ ଯାଇ ବୁଝିହେବ, 'ସାରାଜୀବନ ଅସୁମାରି ପଶ୍ଚାତାପ ଛଡ଼ା ଆଉ କ'ଣ ଯେ' (ଯାତ୍ରା ଚୋର ଘାଟିହେଉ) ଏହି ଦୁଇଟି କବିତାରେ ଜୀବନ ପ୍ରତି ପ୍ରବଳ ଶ୍ରଦ୍ଧାର ଉନ୍ମୋଚନ ଫୁଟି ଉଠିଛି । ଏହା ହିଁ ବାପସହ ପୁଅର, ପରିପକ୍ୱତା ସହ ସରଳତାର ସମ୍ପର୍କକୁ ନିବିଡ଼ କରେ । ଅନ୍ୟ ଢଗରେ ବ୍ୟକ୍ତି ସହ ବିଶ୍ୱର, ଜୀବନ ସହ କାଳର, ଶବ୍ଦ ସହ ନୀରବତାର ଘନିଷ୍ଠ ଆତ୍ମୀୟତା କାମନା କରେ । ଏହି ସମ୍ପର୍କ ତଦୋପୃଲା ପ୍ରାନ୍ତରରୁ ଆରମ୍ଭ ହୋଇ ମୁନି ପାଖରେ ସରେ । ବାପା ସହ ତା'ର ନିଜର ସମ୍ପର୍କ ଖୁବ୍ ଅନ୍ତରଙ୍ଗ ଭାବରେ 'ସମ୍ପର୍କ' କବିତାରେ ପ୍ରକାଶ ପାଇଛି । 'ଆଗେ ଆଗେ ବାପା ଆଉ ପଛରେ କୁନି ପୁଅଟି' (ସମ୍ପର୍କ)ରୁ ଆରମ୍ଭ ହୋଇଛି । ବାପାଙ୍କ ପାଖକୁ ମୃତ୍ୟୁ ଆସିଛି 'ଶବ୍ଦ ପରି' ଆଉ ସମସ୍ତ ପ୍ରସ୍ତୁତି ସତ୍ତ୍ୱେ ସେ ଜିତି ଯାଇଛି । ଜୀବନରେ ହାରିଯିବାଟା ହିଁ ଯେମିତି ଏକମାତ୍ର ସତ୍ୟ । "ଅଥଚ ଖଟ ଉପରେ ସିଏନାହିଁ / ଯାହାକୁ ଚନ୍ଦ୍ରବ୍ୟୂହର କେନ୍ଦ୍ରେ ଥାପି / ଜଗିଥିଲୁ ଯୋଦ୍ଧୃବର୍ଗ, ଦକଳ ସେନାନୀ / ରହିଛି ମାଟି ପିଣ୍ଡୁଲା ଅରୂପ ଅଶରୀର ସ୍ଥିତି / ମାଟିକୁ ଲେଉଟିବାକୁ ଅଥୟ ହେଲାଣି ।"

(ଶବ୍ଦ)

ସେବନର ସତ୍ୟ ଆଜି ସ୍ମୃତି ପାଲଟି ଯାଇଛନ୍ତି । ସେ ଅଜି ଖାଲି ଚଉପଟଟିଏ ହୋଇ କାନ୍ଥରେ ଶୋଭା ପାଉଛନ୍ତି । ସତେ ଯେମିତି ଫ୍ରେମ ଭିତରୁ ତାଙ୍କର ଦେଖିବାଟା ମନେ ହେଉଛି । —"କାନ୍ଥରେ ବସିବା ସତ୍ତ୍ୱେ ମନେହୁଏ / ଅନେଇଚ ଅପହଞ୍ଚ କୋଉ ଦୂର ନକ୍ଷତ୍ରରୁ ।"

ଏହିସବୁ କବିତାରେ ମୁଖ୍ୟତଃ ଦୁଇଟି ସ୍ୱର ଶୁଭୁଛି । ଗୋଟିଏ ଆତ୍ମିକ ନିହାତି ବ୍ୟକ୍ତିଗତ । ମାତ୍ର ଏ ସମ୍ପର୍କ ଭିତରେ ମଣିଷ ଜୀବନର ଚିରନ୍ତନ

ପରିଣତିଟି ମଧ୍ୟ ସୂଚିତ । ସେଇ ପରିଣତିଟି ଆସିଛି କାଳ ସଚେତନାରୁ । ତେଣୁ କବିତାଗୁଡ଼ିକ ଯେମିତି ପଥର କାଟି ବୋହି ଯାଉଥିବା ନଈଟିଏ ପରି । ଅଣ-ଓସାରିଆ ଅଥଚ ଗମ୍ଭୀର । ନିହାତି ନିଜର ଲୋକଟିକୁ ଅନେକ ପ୍ରଶ୍ନ ପଚାରୁଥାଏ ଯେମିତି—"ସବୁ ଅନ୍ଧାର ସବୁ ଶୂନ୍‌ଶାନ୍ ଥାଏ / ଅନ୍ଧାର ନଈର ଜନଶୂନ୍ୟ ଘାଟରେ ବନ୍ଧା ହୋଇଥିବା ଡୁଙ୍ଗା ଉଙ୍ଗା ଦଉଟି / କୁନ କୁନ ଢେଉ ଦୋହଲୁ-ଥାଏ, ନାଚୁଥାଏ ।" (ଦାମ୍ପତି)

ଏହା ହିଁ ଜୀବନର ସମ୍ପର୍କ । ସମସ୍ତ ଢେଉରେ ବନ୍ଧା ହୋଇ ନାଚିବା ତା'ପରେ ବନ୍ଧା ଫିଟିଗଲେ ଅନ୍ଧାର ଖାଲି ଅନ୍ଧାର । ଦାମ୍ପତ୍ୟ ଜୀବନର ନିବିଡ଼ ଉଷ୍ଣତା ଭିତରେ ମୃତ୍ୟୁର ମହାଶୀତଳତାର ସ୍ପର୍ଶ ଯେମିତି ଏକୀଭୂତ । ସମସ୍ତ ଜୀବନ ଧରି, ସମ୍ପର୍କ ଗଢ଼େ ଏବଂ ଏହି ସମସ୍ତ ଶେଷରେ ସମ୍ପର୍କର ଶେଷ ପରିଣତିଟି ଆଣିଦିଏ । ତେଣୁ କାଳ ସହ ବଂଶର ଅବିଚ୍ଛିନ୍ନ ସମ୍ପର୍କ । ଏହି ସମ୍ପର୍କ କେତେବେଳେ ବାପା, ବୋଉ, ପୁଅ, କେତେବେଳେ ଜେଜେମା' ନାତି ତ କେତେବେଳେ ଦାମ୍ପତ୍ୟ ପ୍ରେମ ଭିତରେ ରୂପ ପାଏ । 'ସମସ୍ତର ଶେଷ ନାମ' କବିତାରେ ଏହି ଗମ୍ଭୀରତା ସ୍ପଷ୍ଟ ଏବଂ ସାନ୍ଦ୍ର ହୋଇଛି । ବର୍ତ୍ତମାନ ଅତୀତର ସ୍ମୃତି ଉପରେ ଠିଆ ହୋଇଥାଏ ପୁଣି ଆଗଉଥାଏ ସେହି ମହା ସମ୍ପର୍କ ଆଡ଼କୁ । ଏଇ ଯାହାରେ ପିଲାର କଣ୍ଢେଇ ଭାଙ୍ଗିଯାଏ, ବ୍ୟାଟ ହଜିଯାଏ, ଖାଁ ଖାଁ ମୁହୂର୍ତ୍ତି ଘୋଟିଆସେ । ତଥାପି ଆମକୁ ତା' ପାଇଁ ଅପେକ୍ଷା କରିବାକୁ ପଡ଼େ । ଏହି ପ୍ରତୀକ୍ଷା ସତ୍ତ୍ୱେ ତାହାର ଶେଷ ପରିଣତି ମଧ୍ୟ ସତ୍ୟ । "ସମସ୍ତର ସହସ୍ର ନାମ ଭିତରୁ ଶେଷ ନାମଟି ହିଁ ନିର୍ଜନତା / ଆମ ସମସ୍ତଙ୍କି ଶେଷରେ ସେଇଠି ହିଁ ପହଞ୍ଚିବାକୁ ହବ ।"

ଏହାସତ୍ତ୍ୱେ ମଣିଷ ସବୁ ସ୍ମୃତି ଓ ଅନୁଭୂତିକୁ ଶବ୍ଦ ଜରିଆରେ ରୂପ ଦେବାକୁ ଚେଷ୍ଟାକରେ । କିନ୍ତୁ ଏ ସବୁର ଊର୍ଦ୍ଧ୍ୱରେ ରହିଯାଏ—"ସବୁ ଶବ୍ଦ ମରିଗଲେ ଯାହା ରହେ ତାହା ହିଁ ପ୍ରେମ / ସବୁ ଶବ୍ଦ ସରିଗଲେ ଯାହାରହେ ତାହା ହିଁ କବିତା ।" ଏବଂ ଜୀବନର ଶେଷ କବିତା ହେଉଛି ନୀରବତା । ତାହାର ସହିତ 'ମିଶି ବସିବାଟା ହିଁ ଜୀବନର ପୂର୍ଣ୍ଣତା । ଏହି ଶେଷ ନୀରବତା ପାଇଁ ସମସ୍ତଙ୍କୁ ଅପେକ୍ଷା କରିବାକୁ ପଡ଼େ । କାଳର କୋଳରେ ପାରିବାରିକ ସମ୍ପର୍କ ମୃତ୍ୟୁ ସମ୍ପର୍କ ମଧ୍ୟ ଅଧିକ ଗମ୍ଭୀର ହୁଏ ଯେତେବେଳେ ଶବ୍ଦ ସହ ସମ୍ପର୍କର ସୂଚନା ମିଳେ । ଶବ୍ଦ ନିଜେ ଏକ ସମ୍ପର୍କ । ଏହା ଜରିଆରେ 'ମଇସ ବସିବା' ସମ୍ଭବ ହୁଏ; ମାତ୍ର ସେ ନିଜେ ରହସ୍ୟମୟୀ 'କଳା ଶବ୍ଦ'ରେ ପରିଣତ ହୋଇ ନୀରବତା

ଆଡ଼କୁ ମୁହାଁଏ । ସମସ୍ତ ଆମକୁ ନିବିଡ଼ କରେ, ରୂପାୟିତ କରେ, ସମ୍ପର୍କର ନେଇକଳିଆ ଖାଇ ନୀରବତା ଆଡ଼କୁ ନେଇ ଯାଉଥାଏ । ଯେଉଁ ନୀରବତାର ଏକ ଭିନ୍ନ ରୂପ ଆମେ ପାଉଁ 'କୁକୁଡ଼ା ଲଢ଼େଇ' କବିତାରେ । ବ୍ୟକ୍ତିଗତ ନିବିଡ଼ ସମ୍ପର୍କରେ ଏକ ବିରୋଧାଭାସ ରୂପ ସବୁର ଅର୍ଥହୀନତା । ଲହୁଆ ସମ୍ଭ୍ରାନ୍ତ ଅଜାଣତରେ ମାଂସ ପିଣ୍ଡୁଳା ପାଲଟିଯିବା । ସୀତାକାନ୍ତଙ୍କ 'ସମୁଦ୍ରର ଶେଷ ନାମ' କବିତା ସଙ୍କଳନରେ ପାରିବାରିକ ସମ୍ପର୍କ ଜରିଆରେ ମୂଳ ଖୋଜିଛନ୍ତି । ୯ଙ୍କ କାଳର କୋଳରେ ନୀରବତା ଭିତରେ ଯେମିତି ଜୀବନର ଉତ୍ସ ଓ ପରିଣତି ହିଁ ଭବିଷ୍ୟଙ୍କୁ ପାଇଛନ୍ତି । —"ପଥର ହେବା ଆଗରୁ ବାଉଳା ପବନ ପରି / ମୁଁ ତୁମକୁ ଖୋଜୁଥିଲି / ମରୁଭୂମି ସାରା ଥିବା ଦରଲିଭା ମୋର ପାଦଚିହ୍ନ ।"

ସମୁଦ୍ରର ବାଲିଚର ଉପରେ ସମ୍ପର୍କର ପାଦଚିହ୍ନ ହିଁ ପଡ଼େ । ଉଦାସୀନ ଭୂଇଁ ଉପରେ ଆବେଗ ଦଗ୍‌ଧ ମନର ବିଶ୍ୱସ୍ତ ସ୍ୱାକ୍ଷର । ଏହି କବିତାଗୁଡ଼ିକରେ ଅନ୍ତରଙ୍ଗତାର ଉଷ୍ଣ ପରିଧି ଭିତରୁ ଜୀବନର ମଞ୍ଜି ତତ୍ତ୍ୱଟିକୁ ଅନୁଭବ କରିବାର ଚେଷ୍ଟା ଅବ୍ୟାହତ ରହିଛି । ପାରିବାରିକ ଜୀବନର ନିବିଡ଼ ମୁହୂର୍ତ୍ତି ଭିତରେ ଥାଇ କବି ମହାକାଳର ପ୍ରଗଲ୍‌ଭ ନୀରବତାକୁ ଶୁଣିବାର ପ୍ରୟାସ କରିଛନ୍ତି । ସୀତାକାନ୍ତଙ୍କ କବିତାର ବିଶ୍ଳେଷଣ କଲାବେଳେ ମନେପଡ଼େ କୋପେନ୍ ହେଗେନ୍‌ର ଜଣେ ସମାଲୋଚକଙ୍କର ମନ୍ତବ୍ୟ । ଯାହା ନିମ୍ନରେ ଉଦ୍ଧୃତ ହିଆଗଲା । "ତାଙ୍କ କବିତା ଭିତରେ ଅଛି ସ୍ତରସ୍ତର ଅର୍ଥ, ତାତ୍ତ୍ୱିକତା ଓ ସ୍ୱପ୍ନର ବହୁବିଧ ଆଙ୍ଗିକ ।"

ସମୁଦ୍ରର ପ୍ରବହମାନତା, ଜୀବନର ଜଟିଳ ବାସ୍ତବତା, ମୃତ୍ୟୁର ରହସ୍ୟମୟତା, ଜନ୍ମ ମୃତ୍ୟୁର ଆବର୍ତ୍ତିତା ଭଳି ଗଭୀର ଦାର୍ଶନିକ ଭାବଧାରାର ଅଭିବ୍ୟକ୍ତି ସୀତାକାନ୍ତଙ୍କ କବିତାରେ ସରଳ, ଅନ୍ତରଙ୍ଗ ଏବଂ ପରିଚିତ ମଧ୍ୟ । ଓଡ଼ିଆ ସଂସ୍କୃତି ଭିତ୍ତିକ ଚିତ୍ରକଳ୍ପ ଓ ପ୍ରତୀକମାନଙ୍କ ଦ୍ୱାରା ସେ ହୃଦୟସ୍ପର୍ଶୀ ଅନୁଭବକୁ ପ୍ରକାଶ କରିଛନ୍ତି ଏହି କବିତାମାନଙ୍କରେ । ତେଣୁ ତାଙ୍କ କବିତାଗୁଡ଼ିକରେ ଇଚ୍ଛାକୃତ ଦୁର୍ବୋଧତା ବା କ୍ଳିଷ୍ଟତା ନାହିଁ । ସୀତାକାନ୍ତଙ୍କ କବିତା ସମ୍ପର୍କରେ ବ୍ରିଟିଶ କବି ଓ ସମାଲୋଚକ ଡେଭିଡ୍ ହୋଲବ୍ରୁକ୍‌ଙ୍କ ମତକୁ ଅନୁସରଣ କରି ଏହି ସମୀକ୍ଷାର ଶେଷ କରାଯାଇ ପାରେ ।

"ଜୀବନ ଶକ୍ତିର ସନ୍ଧାନରେ ଡକ୍ଟର ସୀତାକାନ୍ତ ମହାପାତ୍ର ଓଡ଼ିଶା, ଭାରତ ତଥା ଇଂରେଜୀ ଭାଷାଭାଷୀ ପୃଥିବୀରେ ଆଜି ଏକ ଉଲ୍ଲେଖନୀୟ ନାମ ।" ●

# ସୀତାକାନ୍ତଙ୍କ କାବ୍ୟ ମାନସର ବୈଶିଷ୍ଟ୍ୟ

ପ୍ରଖ୍ୟାତ ଜର୍ମାନ୍ ପ୍ରଫେସର ହ୍ୱାଇନ୍‌ରିକ୍ ଷ୍ଟିଟେନକ୍ରନ୍ ସୀତାକାନ୍ତୀୟ କାବ୍ୟ ମାନସର ବୈଶିଷ୍ଟ୍ୟ ପ୍ରତିପାଦିତ କରିବାକୁ ଯାଇ ଲେଖିଛନ୍ତି—"ସମକାଳୀନ ଭାରତବର୍ଷର ଦକ୍ଷତମ କବିମାନଙ୍କ ମଧ୍ୟରେ ସୀତାକାନ୍ତ ମହାପାତ୍ର ଏକ ଉଲ୍ଲେଖନୀୟ ନାମ । ପାରମ୍ପରିକ କାବ୍ୟଶୈଳୀ, ପାଶ୍ଚାତ୍ୟ ପ୍ରଭାବିତ ଶୈଳୀ ଓ ଆଙ୍ଗିକ ମଧ୍ୟରେ ସେ ନୂତନ ପଥର ସନ୍ଧାନ ଦେଇଛନ୍ତି; ନୂଆ କାବ୍ୟ ଚେତନା, ନୂତନ ଆଭିମୁଖ୍ୟ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ଅତୀତ ଓ ଭବିଷ୍ୟତକୁ ଏକୀଭୂତ କରି ଏକ ବିକଳ୍ପ ବାସ୍ତବତାର ସୃଷ୍ଟି ଯେ କବିତା କରିଆରେ ସମ୍ଭବ ଏଥିରେ ସେ ବିଶ୍ୱାସୀ । ଦୁଃଖ ଓ ଯନ୍ତ୍ରଣା ଭିତରେ ବି ମଣିଷ ସ୍ଥିତିର ଗଭୀରତମ ଆନନ୍ଦର ସେ ସନ୍ଧାନୀ । ଏଇ ଲକ୍ଷ୍ୟ ହାସଲ ପାଇଁ ସେମାନଙ୍କ ସମୟରେ ଇଲିୟଟ୍ ଓ ପାଉଣ୍ଡ, ର୍‌ୟାମ୍ବୋଁଙ୍କ ପରି ସେ ନିଜ ସଂସ୍କୃତିର ମିଥ୍ ଓ ଆର୍କିଟାଇପ୍ ଏବଂ ପାରମ୍ପରିକ ପ୍ରତୀକଗୁଡ଼ିକୁ ବ୍ୟବହାର କରିଛନ୍ତି ।"

ଆଧୁନିକ ଓଡ଼ିଆ କବିତାର ବିକାଶ ଧାରାରେ ଯେଉଁମାନଙ୍କ ନାମ ଉଲ୍ଲେଖଯୋଗ୍ୟ ବା ଯେଉଁମାନେ ସ୍ୱତନ୍ତ୍ର ଶକ୍ତିଶାଳୀ କବି ବ୍ୟକ୍ତିତ୍ୱ ପ୍ରତିଷ୍ଠା କରି ପାରିଛନ୍ତି ସୀତାକାନ୍ତ ମହାପାତ୍ର (ଜନ୍ମ : ୧୯୩୭) ସେମାନଙ୍କ ମଧ୍ୟରେ ନିଶ୍ଚିତ ଭାବରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦାବି କରନ୍ତି । କବି ମହାପାତ୍ରଙ୍କ କାବ୍ୟ ସାଧନାର ଆରମ୍ଭ କାଳ ସମ୍ପର୍କରେ କୌଣସି ନିଶ୍ଚିତ ସୂଚନା ଲିଖିତ ଆକାରରେ ମିଳେନାହିଁ । ଅଧ୍ୟାପକ ଯତୀନ୍ଦ୍ରମୋହନ ମହାନ୍ତିଙ୍କ ମତରେ ୧୯୬୧ ଫେବ୍ରୁୟାରୀ ମାସ 'ପ୍ରଜ୍ଞା'ରେ ପ୍ରଥମ ଥର ପାଇଁ ସୀତାକାନ୍ତଙ୍କ କେତୋଟି କବିତା ପ୍ରକାଶ ପାଇଥିଲା । ଏଣୁ ମୋଟାମୋଟି ଭାବରେ ତାଙ୍କୁ ଉତ୍ତର ଷାଠିଏର ବିକାଶଶୀଳ କବି ଭାବରେ ଗ୍ରହଣ କରିନେବା ସମୀଚୀନ ହେବ । ବିଭିନ୍ନ କାରଣରୁ ସମକାଳୀନ କବିମାନଙ୍କ ମଧ୍ୟରେ ସେ ସର୍ବାଧିକ ଲୋକପ୍ରିୟ । କାବ୍ୟ ସାଧନାର ବିକାଶ ଇତିହାସକୁ ମୂଳତଃ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ । 'ଅଷ୍ଟପଦୀ',

'ଶବ୍ଦର ଆକାଶ', 'ସମୁଦ୍ର' ସୀତାକାନ୍ତଙ୍କ ବିକାଶ ପର୍ଯ୍ୟାୟର ପ୍ରତିନିଧି । 'ଦୀପ୍ତି ଓ ଦ୍ୟୁତି'ରେ ଉପଲବ୍ଧ କବି ମାନସର ଏକ କେନ୍ଦ୍ରମୁଖୀ ଉତ୍ତରଣ ଏଗୁଡ଼ିକରେ ସ୍ପଷ୍ଟ ଅନୁଭବ କରାଯାଇ ପାରେ । ଏଥିମଧ୍ୟରେ କବି ନିଜର ଚେତନା ଇଲାକାର ଯଥାର୍ଥ ସନ୍ଧାନ ସହିତ ଏକ ପରିଣତିର ସୂଚନା ମଧ୍ୟ ପ୍ରଦାନ କରିଛନ୍ତି । ପରମ୍ପରା ଓ ପୂର୍ବଦୃଷ୍ଟିର ଯଥାର୍ଥ ସମନ୍ୱୟରେ ସୀତାକାନ୍ତ ନିଜ ପାଇଁ ଏକ ସ୍ୱତନ୍ତ୍ର ଆସନ ସୃଷ୍ଟି କରିଛନ୍ତି ଏଥିରେ ସନ୍ଦେହ ନାହିଁ । 'ସମୁଦ୍ର'ର ଭାଷାରେ ବିଦେଶର ପ୍ରତିଭାବାନ୍ କବି ଓ ସାହିତ୍ୟିକ, ସମାଲୋଚକ ଓ ସମ୍ପାଦକମାନଙ୍କ ଦ୍ୱାରା ଅନୁବାଦରେ ଆଦୃତ ତଥା ପ୍ରଶଂସିତ ହେବା ସଙ୍ଗେ ସଙ୍ଗେ ଶ୍ରୀଯୁକ୍ତ ମହାପାତ୍ରଙ୍କ କବିତା ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ, "ସାମ୍ପ୍ରତିକ ଓଡ଼ିଆ କବିତାର ଅଭି-ବ୍ୟକ୍ତିକୁ ନୂଆ ମୋଡ଼ ଦେଇ ଆଧୁନିକ କବିତାକୁ ପାଠକ ନିକଟକୁ ନେଇ ପାରିଛି । ତାଙ୍କ କବିତାର ବିଶିଷ୍ଟ ଗୁଣ ଯାହା ହେଉଛି ପ୍ରଜ୍ଞା ଓ ଆବେଗ, ଗୀତିମୟତା, ମେଟାଫିଜିକାଲ୍ ଦୃଷ୍ଟିଭଙ୍ଗୀ, ସୂକ୍ଷ୍ମ ଓ ଜଟିଳ ମାନସିକ ଚେତନା ଓ ବକ୍ତବ୍ୟର ସରଳତା ଏବଂ ମିଥିକ୍ ଅବଚେତନ ଏହି ବ୍ୟକ୍ତିନିଷ୍ଠ ସ୍ୱରର ଅଦ୍ଭୁତ ସମନ୍ୱୟ । ସର୍ବୋପରି ତାଂକ କବିତାରେ ଲକ୍ଷ୍ୟ କରିବା କଥା, ସେହି ନିରାଡ଼ମ୍ବର ଓ ନିଷ୍କପଟ ସ୍ୱତଃସ୍ଫୂର୍ତ୍ତ ଅନ୍ତର୍ଦୃଷ୍ଟି ପ୍ରଗାଢ଼ ଓ ନିର୍ମଳ ଆନ୍ତରିକତା ଯାହା ସମସ୍ତେ ତଥାକଥିତ ଉପର ଠାଉରିଆ ଆଧୁନିକତାକୁ ପ୍ରତ୍ୟାଖ୍ୟାନ କରି ସଂସ୍କୃତିର ଗଭୀର ମୃତ୍ତିକା ସ୍ପର୍ଶକରେ । ଭାଷା, ବକ୍ତବ୍ୟ ଓ ଶୈଳୀର ଛନ୍ଦେ ଛନ୍ଦେ ଫୁଟି-ଉଠେ ଭାରତୀୟ ଓ ଓଡ଼ିଆ ସଂସ୍କୃତି, ଓଡ଼ିଆ ମାଟି ପାଣିର ନିଖୁଣ ଚିହ୍ନ ଅଥଚ, କବିତାର ଆବେଦନ ବୃହତ୍ତର ଚେତନାର ପରିବ୍ୟାପ୍ତ ସାମୂହିକତାର ବାହକ ହୋଇ ହୁଏ ସାର୍ବଜନୀନ ।" (ସମୁଦ୍ର : ଆମର ପଦେ ପ୍ରକାଶକ)

୧୯୬୦ ବେଳକୁ ଅର୍ଥାତ୍ କବି ଶ୍ରୀଯୁକ୍ତ ମହାପାତ୍ର ତାଂକର କାବ୍ୟ ସାଧନା ଆରମ୍ଭ କଲାବେଳକୁ ଓଡ଼ିଆ କବିତାର ସ୍ଥିତି ଓ ପ୍ରବୃତ୍ତି ଯାହା ଥିଲା ତାଂକର ସାଧନା ଫଳରେ ତା'ର ବିବର୍ତ୍ତନୀୟ ନିଶ୍ଚିତ ଭାବରେ ବ୍ୟାପକ ହୋଇଛି । ଯଦିଓ ପରମ୍ପରା ଦ୍ୱାରା ସେ ପ୍ରଭାବିତ ହୋଇଛନ୍ତି । ତଥାପି ଅଗ୍ରଜ କବି ସଚ୍ଚିଦାନନ୍ଦ ରାଉତରାୟ, ଗୁରୁପ୍ରସାଦ ମହାନ୍ତି, ବେଣୁଧର ରାଉତ ପ୍ରଭୃତିଙ୍କ କବିତାର ବାହ୍ୟ ପ୍ରେରଣାଠାରୁ ନିଜକୁ ମୁକ୍ତକରି ଆତ୍ମ ପ୍ରେରଣାରେ କ୍ରମଶଃ ବଳିଷ୍ଠ ହୋଇଛନ୍ତି । ଯେ କୌଣସି ଶକ୍ତିଶାଳୀ କବିଙ୍କ ପରି ସେ ମଧ୍ୟ ଏକ ବିଶିଷ୍ଟ ପ୍ରଭାବଶାଳୀ କବି ବ୍ୟକ୍ତିତ୍ୱରେ ଉପନୀତ ହୋଇଛନ୍ତି ଏବଂ ବହୁ ତରୁଣ କବି ତାଂକ କବିତାରୁ ପ୍ରେରଣା ସଂଗ୍ରହ କରିଛନ୍ତି । ଆହରଣ ତୁଳନାରେ

ତାଂକର ବିକରଣ ଅଧିକତର ଯାହାକି ତାଂକ ଶକ୍ତିର ପ୍ରତିପାଦକ କହିଲେ ଅତ୍ୟୁକ୍ତି ହେବନାହିଁ । କାବ୍ୟ ସାଧନାର ଉନ୍ମେଷ ପର୍ଯ୍ୟାୟର ପ୍ରତିନିଧି ସ୍ଥାନୀୟ କାବ୍ୟ ସଂକଳନର 'ପାପ୍ତି ଓ ଦ୍ୟୁତି'ର ମୁଖଶାଳା ଲିପି ଭାବରେ କବି ଯେଉଁ ସନ୍ଦର୍ଭଟି ସଂଯୋଗ କରିଛନ୍ତି ତାହା ତାଂକ କବିତାଗୁଡ଼ିକର ବୈଶିଷ୍ଟ୍ୟ ପ୍ରତିପାଦନ ଦିଗରେ କେତେକାଂଶରେ ସହାୟକ । କବିଂକ ଭାଷାରେ, "ଉପରୋକ୍ତ ଚିନ୍ତାଧାରା ନିଶ୍ଚୟ ମୋ କବିତାର ପୃଷ୍ଠଭୂମିରେ ଅଛି । ଭାଷା ଓ ଭାବ ଦୃଷ୍ଟିରୁ ଏହା କେତେଦୂର କବିତାଗୁଡ଼ିକରେ ପ୍ରତିଫଳିତ ଏହା ସମ୍ବେଦନଶୀଳ ପାଠକ ଓ ସମାଲୋଚକ କହିବେ ।

(ମୁଖଶାଳା—ପାପ୍ତି ଓ ଦ୍ୟୁତି)

ଏହି ପ୍ରସଙ୍ଗରେ କବିଂକର କେତୋଟି ମତକୁ ଉଦ୍ଧାର କରାଯାଇ ପାରେ— "ଦୁଇଟି ବିପରୀତ ଧର୍ମୀ ଅନୁଭୂତି ମୋ ମନର ମୌଳିକ ସ୍ଥିତି ରୂପେ ସବୁବେଳେ ପ୍ରତିଷ୍ଠମାନ ହୋଇଛି । ସେଥିରୁ ଗୋଟିଏ ହେଉଛି ସଂଯୋଗର, ସହାନୁଭୂତିର, ବ୍ୟାପ୍ତିର, ଅନୁରକ୍ତିର ଅନାତ୍ମର (nonego) । ଅନ୍ୟଟି ହେଉଛି ବିଯୋଗର ଅନାଶକ୍ତିର ନିରନ୍ତର ନିଃଶବ୍ଦ ନୀରବତାର । ବେଳେବେଳେ ଏବଂବିଧ ଉଭୟ ଅନୁଭୂତି ଏକ କାଳରେ ଏକ ସ୍ଥାନରେ ଓ ଏକ ପ୍ରକ୍ରିୟାରେ ମାନସ ରାଜ୍ୟରେ ଏକୀକୃତ ହୋଇଛନ୍ତି; କିନ୍ତୁ ତାହା ଖୁବ୍ କ୍ୱଚିତ । ପ୍ରକୃତିର ପ୍ରତ୍ୟେକ ବସ୍ତୁ ସମାଜର ପ୍ରତ୍ୟେକ ବ୍ୟକ୍ତି ଓ ମନର ପ୍ରତ୍ୟେକ ବିଭାବ ବେଳେବେଳେ ମନେ ହୋଇଛନ୍ତି ଅତି ଆପଣାର । ମୋ କୋଠରୀ ଝରକାର ଆରପାଖରେ ଗୁଗୁଚିଆ ଗଛ, ଟିକି ପ୍ରଜାପତି, ନଡ଼ିଆ ଦଣ୍ଡା ଆଉ ନଟ୍ଟଟିଆ ଆକାଶର ଦୂର ଉପକୂଳର ତାରା ସମସ୍ତେ ଦେଇଛନ୍ତି ପ୍ରାଣସ୍ଫୁର୍ତ୍ତି, ତୋଳିଛନ୍ତି ପ୍ରାଣବନ୍ତ ଗୋଟିଏ ଅର୍କେଷ୍ଟ୍ରା । ଦାଣ୍ଡ ଦୁଆରେ ପାଟିକରି ଭିକ ମାଗୁଥିବା କୁଷ୍ଠରୋଗୀ, ବାଲିକୁଦରେ ଡ଼ିଆଁମାରି ଖେଳୁଥିବା ଲଙ୍ଗଳା ପିଲା କେଇଟି ଓ କୋଠା ଉପରକୁ ସିମେଣ୍ଟ ବୋହୁଥିବା ମଲୁରିଆ ଭୁଆସୁଣୀ ବୋହୂ ସମସ୍ତଙ୍କ ଭିତରେ ବିସ୍ତୃତ ହୋଇପଡ଼େ ମୁଁ । ସ୍ଥିତିବାଦୀ ଦର୍ଶନ ବହିର କରକେ ଗାର୍ଡ଼, ଖବର କାଗଜର ଖେଳ ଖବର, ରୋଷେଇ ଘରର ରନ୍ଧାବାସ୍ନା ଓ ଅଫିସ କାମର ଚେତନା ଏସବୁ ଭିତରେ ସତ୍ତା ମୋର ଫେଲିଯାଏ, ଆଉ ବେଳେବେଳେ ବାହାର ଓ ଭିତରର ପ୍ରକୃତି କିଛି ଆଖିକୁ ଦିଶେନି—ସବୁ ଅସ୍ୱଚ୍ଛ, ସବୁ ଅର୍ଥହୀନ—ସବୁ ଯେମିତି ଗୋଟିଏ ସୀମାହୀନ, ଅନ୍ତହୀନ ପ୍ରହେଳିକାର ପ୍ରଚ୍ଛନ୍ନ ତର୍ଜମା । ଗୋଟିଏ ଅଶ୍ରୁବିନ୍ଦୁ କେଉଁଠି ଟଳଟଳ ହୋଇଉଠେ । ବେଦନା, ଅଶ୍ରୁ, ଅକୁହା ବ୍ୟଥା, ନୀରବତା, ସବୁ ପୋଲ ଭାଙ୍ଗିଯାଏ ସବୁ ଯାତାୟତ ପଥ ବୁଡ଼ିଯାଏ ଅବୋଧ ନୀରବତାର ଅଜଣା କୁହୁକରେ । ସ୍ଥିତି

ଓ ବସ୍ତୁ ଭିତରେ, ଚେତନା ଓ ଦ୍ରବ୍ୟ ଭିତରେ ଦେଖାଦିଏ ଅଗମ୍ୟ ସାଗର । ସବୁଲାଗେ ଉଦାସୀନ, ଅର୍ଥହୀନ, ଏ ଜୀବନ, ସମାଜ ମଣିଷର ଇତିହାସ ଓ ଅସୀମ ବିଶ୍ୱ । କୋଳାହଳ ମଶଗୁଏ, କଥାବାର୍ତ୍ତା କିଛି କାନରେ ପଡ଼େନି— କ୍ଷଣେ ଖାଲି ମହା ନୀରବତାର ଆଦିମ ଶ୍ଳୋକ; ଆଉ କ୍ଷଣେ ଖାଲି ମହା ବେଦନାର ସ୍ୱଗତଙ୍ଗୀ ଅଶ୍ରୁ । ଏ ଦୁଇଟି ଅନୁଭୂତି ମାନସିକ ଅନ୍ତର୍ଦ୍ୱନ୍ଦ୍ୱର ମୌଳିକ କଥାବସ୍ତୁ । ହୃଦୟ ଓ ମନର ଗଭୀରତମ ପ୍ରଦେଶରେ ଯେଉଁ ସ୍ୱପ୍ନ, ଯେଉଁ ଅଶ୍ରୁ ଓ ଯେଉଁ ବେଦନାର ଉଚ୍ଛ୍ୱାସ, ଯେଉଁ ନୀରବତାର ବ୍ୟାପ୍ତି ତାରି ଭିତରେ ମନେହୁଏ ମୁଁ ଖୋଜିପାଏ ଯାହାକିଛି ସାର୍ବଜନୀନ ଓ ଚିରନ୍ତନ । ବାହାରର ପ୍ରକୃତି, ସମାଜ ଓ ମାନସିକ ସ୍ଥିତି ଭିତରେ ଘୁରିବୁରି, ନିଜକୁ ହଜାଇ ହଜାଇ (ଓ ପୁଣି ଖୋଜି ଖୋଜି) ପୁଣି ଫେରେ କେନ୍ଦ୍ରବିନ୍ଦୁକୁ ନିଜର ଅଶ୍ରୁକୁ । ଏହି ସଂଘର୍ଷ ହିଁ ମୋର ଅଧିକାଂଶ କବିତାର ମୁଖ୍ୟ ଉପଜୀବ୍ୟ ।”

(ମୁଖଶାଳା ଲିପି : ଦୀପ୍ତି ଓ ଦ୍ୟୁତି)

ତେଣୁପାଇଁ ବ୍ୟାଙ୍ଗକ୍ରୁ ପ୍ରଫେସର କରୁଣା କୃଣଲାଲସ୍ଥା ମତ ଦେଇଛନ୍ତି ତାଙ୍କର କାବ୍ୟନାୟକ ସେଇ ଅପରିଚିତ ଯେ କୌଣସି ମଣିଷ, ଯିଏ ଯନ୍ତ୍ରଣାରେ ବୁଡ଼ିଗଲବେଳେ ବି ଆନନ୍ଦର, ସୁଖର ସମ୍ଭାବନାକୁ ଭୁଲି ପାରେନି । ଏହି ପରିପ୍ରେକ୍ଷୀରେ କବି ସୀତାକାନ୍ତ ମହାପାତ୍ର କବିତାରେ ଆଧୁନିକତା ନାମରେ ଯେଉଁ ଅପବ୍ୟବହାର ଚାଲିଛି ତା'ର ବିରୋଧ କରିବାକୁ ଯାଇ କହନ୍ତି— “ଆଧୁନିକତା ଏକ ମୁଖା ନୁହେଁ ଯାହାକୁ ପିନ୍ଧି କେହି ନାଚ ପାରିବ । ଆଧୁନିକତା ଏକ ଅନ୍ତର୍ଦ୍ୱନ୍ଦ୍ୱ, ଏକ ଜଟିଳ ମାନସ, ଏକ ସୁଦୂର ପ୍ରସାରୀ ବ୍ୟାପ୍ତି, ଏକ ସଫଳ ଓ ନିର୍ଦ୍ଦିଷ୍ଟ ପାଇଁ ମଣିଷ ମନର ଅଦମ୍ୟ ଆକୃତି, ଏକ ମହାନ ସହାନୁଭୂତି ସମ୍ପନ୍ନ ଅନୁଭବୀ ହୃଦୟ ଯାହା ସବୁ ଗ୍ରହଣ କରେ, ସବୁ ହଜମ କରେ । ମୋର ମନେହୁଏ ଆଜିର କବିତା ନିଶ୍ଚୟ ଫେରିବ ସାଧାରଣ କଥାବସ୍ତୁକୁ । ତାକୁ ପ୍ରକାଶ କରିବା ପାଇଁ ସେ ମିଥ୍, ସମାଜତତ୍ତ୍ୱ, ପୌରାଣିକ ଆଖ୍ୟାୟିକା, ଐତିହାସିକ କଥାବସ୍ତୁ ଗ୍ରହଣ କରିପାରେ, ଶାଣିତ ପ୍ରକାଶଭଙ୍ଗୀ, ଚିତ୍ରକଳ୍ପ, ରୂପକ, ପ୍ରତୀକ ବ୍ୟବହାର କରିପାରେ ।”

(ଦୀପ୍ତି ଓ ଦ୍ୟୁତି ମୁଖଶାଳା ଲିପି : ପୃ-୧୫)

ମୁଖଶାଳାର ଏହି ଦୀର୍ଘ ଉଦ୍ଧୃତି ଦେବାର କାରଣ ହେଉଛି ଏଥିରୁ କବି ସୀତାକାନ୍ତ ମହାପାତ୍ରଙ୍କ କାବ୍ୟ ମାନସର ବୈଶିଷ୍ଟ୍ୟ ସ୍ପଷ୍ଟ ହୋଇଉଠେ । 'ଦୀପ୍ତି ଓ ଦ୍ୟୁତି' ଠାରୁ ଆରମ୍ଭ କରି 'ସମୁଦ୍ରର ଶେଷ ନାମ' ପର୍ଯ୍ୟନ୍ତ ସବୁଠି କବିଙ୍କର

ଏହି ବିଶ୍ୱାସର ପ୍ରତିଫଳିତ ରୂପ ଉପଲବ୍ଧ । ଐତିହ୍ୟ ପ୍ରୀତି, ମାନବବାଦୀ ସମ୍ବେଦନଶୀଳତା, ଅଧିଭୌତିକତା, ପଲ୍ଲୀ ପ୍ରବଣତା ପ୍ରତି ନିଷ୍ଠା ପ୍ରଭୃତି କବି ମାନସର ବିଭିନ୍ନ ଦିଗ ମୁଖଶାଳା ଲିପି ମଧ୍ୟରେ ଅଭିବ୍ୟକ୍ତ ହୋଇଛି । ସୀତାକାନ୍ତ ମହାପାତ୍ରଙ୍କ କବିତାରେ ରୂପକଳ୍ପ ଯଥାକ୍ରମେ ନୂତନ ବୈଚିତ୍ର୍ୟ ଏବଂ କମନୀୟତା ନେଇ ଉଦ୍‌ଭାସିତ ହୋଇଛି । ଗୋଟିଏ ଉଦାହରଣ ଦେଲେ ତାହା ସହଜରେ ବୁଝିହେବ । "ଜୁଆରର ଜଳ ଏବେ ୯ଲ୍ଟାଇ ଫେରି ଗଲାଣି / ଖାଲରେ ଗାଧୋଇ ଏଇ ନଗ୍ନଟିଆ ବେଳାଭୂଇଁ କର ମୋଡ଼େ / ନିଦରେ ବାଲିବଲାଏ / ମୋ ବାଲିହରଣ ମୋ ବାଇଆ ଅନ୍ଧାର ଲଉଡ଼ି / ଦରିଦ୍ର ପରିବା / ମୁଁ ସେଇ ବେଳାଭୂଇଁ / ଆପଣା ବାଲିରେ ବସି ମୁହଁକୁ ତଳକୁ ପୋତି / ନଖରେ କାଟୁଛି ଗାର / ଘୋଡ଼ାଗାଡ଼ି ଚଢ଼ି ଏଠି ପହିଲି ଫଗୁଣ ଆସେ / ଅପ୍ରତ୍ୟାଶିତ ଆପଣା ଉପସ୍ଥିତି ମାଇକ୍‌ରେ କରିଲ ପ୍ରଚ୍ଚର ।" (ମୃତ୍ୟୁ-ଶିବିର ଆକାଶ)

ଜେନସ୍‌ଫୋରହେଡ୍‌ଙ୍କ ଉକ୍ତି ଏଠାରେ ବିଶେଷ ପ୍ରଣିଧାନଯୋଗ୍ୟ । "ଏଗୁଡ଼ିକ ସେମିତିଆ କବିତା ଯାହାକୁ ଥରେ ପଢ଼ି ଆଉଥରେ ପଢ଼ିବାକୁ ହୁଏ, ବିଚଳିତ ହୋଇ ଭାବିବାକୁ ହୁଏ । ଆଉ ତା'ପରେ ଆମ ସାମ୍ନାରେ ଗୋଟିଏ ନୂତନ ବିଶ୍ୱ ଖୋଲିଯାଏ ଯାହା ସହିତ ଆମେ ଅନୁଭୂତି ସ୍ତରରେ ଅପରିଚିତ ନୋହୁଁ; କିନ୍ତୁ ଏଇ କବିତାଗୁଡ଼ିକ ମାଧ୍ୟମରେ ଯାହା ଆମ ପାଇଁ ଅଧିକ ଜୀବନ୍ତ ଓ ଅନ୍ତରଙ୍ଗ ହୋଇଯାଏ । କବିତାଗୁଡ଼ିକର ସଘନ ଚିତ୍ରକଳ୍ପ / ରୂପକଳ୍ପ ଅନେକ ବିଶ୍ଳେଷଣର ଅପେକ୍ଷା ରଖେ । ତା' ଭିତରେ ସ୍ତର ସ୍ତର ଅର୍ଥ; ବାସ୍ତବତା ଓ ସ୍ୱପ୍ନର ବହୁବିଧ ଆଙ୍ଗିକ ଏକାଠି ହୁଅନ୍ତି । ସେଠି ଦୁଶେ, ଭାରତୀୟ ଗାଁର ଅନ୍ତରଙ୍ଗ ଛନ୍ଦ, ନଜର ଅଲଂଘ୍ୟ ନିୟମରେ ପରିଚାଳିତ ସାର୍ବଜନୀନ ପ୍ରକୃତି, ହିନ୍ଦୁ ମିଥ୍ ଓ ଆର୍କିଟାଇପ୍‌ର ଅନେକ ଚିହ୍ନ ଓ ସର୍ବୋପରି ଆତ୍ମ ସମାହିତ କାବ୍ୟ ପୁରୁଷର ଆନ୍ତରିକ ପ୍ରତିଚ୍ଛବି ।" କବି ସୀତାକାନ୍ତ ମହାପାତ୍ରଙ୍କ କବିତାର ଅନ୍ୟତମ ବୈଶିଷ୍ଟ୍ୟ ହେଲା ମିଥ୍ ଚେତନା । ତାଙ୍କର ଦୃଷ୍ଟିକୋଣରେ ମିଥ୍‌ର ସଂଜ୍ଞା ହେଉଛି ସାମୂହିକ ଅବଚେତନ ଓ ବ୍ୟକ୍ତିଗତ ଚେତନା ଭିତରେ ସମ୍ପର୍କର ଯୋଗସୂତ୍ର । ତା'ର ପରିସର ଗୋଟିଏ ନିର୍ଦ୍ଦିଷ୍ଟ ସମାଜରେ ସାଂସ୍କୃତିକ ଐତିହ୍ୟର ପରିସର ଉପରେ ନିର୍ଭରଶୀଳ । ପୃଥିବୀର ବିଭିନ୍ନ ଭାଷାର ସମୀକ୍ଷକବର୍ଗ ମିଥ୍‌ର ସ୍ୱରୂପ ନିର୍ଦ୍ଧାରଣରେ ବିଶେଷ ଆଗ୍ରହୀ, ବିଶେଷତଃ ବିଂଶ ଶତାବ୍ଦୀର ସାହିତ୍ୟ ସମୀକ୍ଷକମାନେ ଓ ଦାର୍ଶନିକଗଣ ନାନା ଦୃଷ୍ଟିରୁ ଆଦିମ ମିଥ୍ ତତ୍ତ୍ୱ ଏବଂ ଦେହି ମିଥ୍ ପରମ୍ପରାରେ ସାମ୍ପ୍ରତିକ ଜୀବନଚର୍ଯ୍ୟାର

ତାତ୍ପର୍ଯ୍ୟ ନିରୂପଣ କରିବାରେ ବ୍ୟସ୍ତ । ପ୍ରଥମତଃ ଊନବିଂଶ ଶତାବ୍ଦୀର ଚିନ୍ତାନାୟକ ତଥା ସମାଲୋଚକମାନଙ୍କ ପରି ବିଂଶ ଶତାବ୍ଦୀର ସମୀକ୍ଷକମାନେ ମିଥ୍‌କୁ ଅତିକଥା, ଲୋକକଥା, ଗାଳଗଳ୍ପ, ରୂପକ ବା ରୂପକଥା ଭାବରେ ଆଉ ଚିହ୍ନଣ କରୁନାହାନ୍ତି । ଦ୍ୱିତୀୟତଃ ମିଥ୍ ସହ ସେମାନେ ଖୋଜିବାକୁ ଚାହାଁଛନ୍ତି ମିଥ୍ ରଚନା ପୃଷ୍ଠଭୂମିରେ କ୍ରିୟାଶୀଳ ଆଦିମ ମଣିଷ ସମାଜର ସଂସ୍କାର ଓ ପ୍ରତ୍ୟୟ ଏବଂ ତୁଳନାତ୍ମକ ଭାବରେ ପ୍ରକାଶ କରିବାକୁ ଚାହାଁଛନ୍ତି ସାଂପ୍ରତିକ ବୈଜ୍ଞାନିକ ଯୁକ୍ତିବାଦୀ ଯୁଗରେ ଏହି ପ୍ରାଚୀନ ମିଥ୍‌ର ସ୍ୱାକ୍ଷରକୁ । ସେମାନେ ସନ୍ଧାନ କରିବାକୁ ଚାହାନ୍ତି ଯେ ସେହି ମିଥ୍‌ରୂପୀ ଜୀବନ ସତ୍ୟର ମୂଳସୂତ୍ର । ସେହି ମନୀଷୀମାନଙ୍କର ଗଭୀର ଅଧ୍ୟୟନ ଓ ବିଶ୍ଳେଷଣାତ୍ମକ ଅନୁଶୀଳନ ଆମକୁ ସୂଚାଇ ଦେଇଛନ୍ତି ଯେ ଆମେ ଯାହାକୁ 'ମିଥ୍' କହୁ ତାହା ପ୍ରାଚୀନ ଯୁଗର ମଣିଷ ସମାଜ ନିକଟରେ ନିଛକ ଗାଳଗଳ୍ପ ବା ଅତିକଥା ଭାବରେ ଗୃହୀତ ହୋଇ ନ ଥିଲା । ସେମାନଙ୍କ ନିକଟରେ ମିଥ୍ ଥିଲା ସତ୍ୟ ଇତିହାସ, ପବିତ୍ର କାହାଣୀ, ବିଶେଷ ଧରଣର ଅଧ୍ୟୟନ ସିଦ୍ଧ ବ୍ୟକ୍ତିଙ୍କ ଅଧିଗମ୍ୟ, ସମାଜର ପ୍ରାଣ ଓ ନିଃଶ୍ୱାସ ବାୟୁ ସ୍ୱରୂପ । ସୁତରାଂ ଏହି ବିଂଶ ଶତାବ୍ଦୀର ଦୃଷ୍ଟିଭଙ୍ଗୀରେ ଅଭିଧାନ ପ୍ରଦତ୍ତ ପୁରାତନ ମିଥ୍‌ର ସଂଜ୍ଞା ଆଉ ଗ୍ରାହ୍ୟ ବୋଲି ମନେ ହୁଏନାହିଁ । ବିଂଶ ଶତାବ୍ଦୀରେ ମିଥ୍ ପ୍ରତି ବିଶେଷ ଭାବରେ ଆଗ୍ରହ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ମିଥ୍‌ର ସ୍ୱରୂପକୁ ବ୍ୟାପକ ଓ ବହୁ ଦିଗରୁ ଆଲୋକପାତ କରାଯାଇଛି । ଏହାର ମୁଖ୍ୟ କାରଣ ହେଲା ପ୍ରତ୍ନତାତ୍ତ୍ୱିକ ଅଧ୍ୟୟନର ବୈଜ୍ଞାନିକ ଦୃଷ୍ଟିକୋଣ ଏବଂ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ପରିପ୍ରେକ୍ଷୀରେ ଏହାର ଅଧ୍ୟୟନ । ଏସବୁ ସତ୍ତ୍ୱେ ମିଥ୍‌ର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ମାନବ ସମାଜ ଉପରେ ଆଦିକାଳରୁ ରହି ଆସିଛି । ତାହା ଅକ୍ଷୁନ୍ନ ଭାବେ ଆଧୁନିକ ମଣିଷର ଅଚେତନ ସ୍ତରକୁ ବିଶ୍ଳେଷଣ କରିବାରେ ସହାୟକ ହୋଇଛି । ଆଧୁନିକ ଯୁଗର ସମସ୍ତ ମିଥ୍ ଗବେଷକ ମନେ କରନ୍ତି ଯେ ଆଧୁନିକ ସଭ୍ୟତାର ଅନ୍ତଃସାର ଶୂନ୍ୟତା ହିଁ ଏ ମିଥ୍ ଚେତନାର ଅଭାବର କାରଣ । ଯାହା ଫଳରେ ନାନାଦି ମତବାଦ ଶିବିରରେ ବିଭକ୍ତ ସଭ୍ୟତା ଆଜି ବିଶେଷ ଭାବରେ ଶୂନ୍ୟଗର୍ଭ । ତେଣୁ ମହତ୍ କାବ୍ୟ ବା ମହତ୍ ସାହିତ୍ୟ ରଚନା କରିବାକୁ ହେଲେ ଆଜିର ମିଥ୍‌ହୀନ ସଭ୍ୟତାର ପ୍ରତିନିଧି ସ୍ଥାନୀୟ କବିଙ୍କୁ ମିଥ୍ ନିକଟକୁ ପ୍ରତ୍ୟାବର୍ତ୍ତନ କରିବାକୁ ହେବ । ବିଂଶ ଶତାବ୍ଦୀର ବିଶିଷ୍ଟ ଇଂରେଜୀ ସମାଲୋଚକ ଫିଲିପ୍ ହୁଇଲ୍‌ଟାଇଟ୍‌ଙ୍କ ଊଣେଇଶଶହ ଚାଳିଶରେ ଏଭଳି ଏକ ଘୋଷଣା ପୃଥିବୀର କବିମାନଙ୍କୁ ମିଥ୍ ଦିଗକୁ ଆକୃଷ୍ଟ କରିଛି । ଏ ଯୁଗର ସମସ୍ତ

ପ୍ରଧାନ କବି ତଥା ସାହିତ୍ୟିକଙ୍କର ମିଥ୍ ନିକଟକୁ ଫେରିଯିବାର ଆଗ୍ରହ ନ ଥିଲେ ମଧ୍ୟ କେତେକ ସ୍ଥଳରେ ଦେଖାଯାଏ ଯେ ଯୋଗ୍ୟ ମିଥ୍ ସଂସ୍ପର୍ଶରେ ଆସିବା ଫଳରେ ଶକ୍ତିମାନ୍ କବିର ଯଥାର୍ଥ କାବ୍ୟସ୍ଫୂର୍ତ୍ତି ଘଟେ । ଊନବିଂଶ ଶତାବ୍ଦୀର ବିଶିଷ୍ଟ ରୋମାଣ୍ଟିକ୍ କବି ଶେଲିଙ୍କୁ ଏ ପ୍ରସଙ୍ଗରେ ଦୃଷ୍ଟାନ୍ତ ଭାବରେ ଗ୍ରହଣ କରାଯାଇ ପାରେ । ସେ ମିଥ୍‌ର ଅଧୁନିକ ବ୍ୟବହାର ପରିବର୍ତ୍ତେ ଏକାନ୍ତ ବ୍ୟକ୍ତିଗତ ଏବଂ ଉଲ୍ଲେଖଧର୍ମୀ (Allusive) ପ୍ରତୀକ ବ୍ୟବହାର କରିଛନ୍ତି । କିନ୍ତୁ ତାଙ୍କ କାମ୍ୟ ମିଥ୍‌ର ସନ୍ଧାନ ନ ପାଇବା ପର୍ଯ୍ୟନ୍ତ ତାଙ୍କ କାବ୍ୟାଦର୍ଶକୁ ସେ ସମ୍ପୂର୍ଣ୍ଣ ଭାବରେ ପ୍ରକାଶ କରିପାରି ନ ଥିଲେ । ସେ ନିଜ କବି ଜୀବନର ପ୍ରାରମ୍ଭରୁ ତାଙ୍କ ବିଶ୍ୱ ଜନମନ 'ପ୍ରେମଧର୍ମ'କୁ ପ୍ରକାଶ କରିବା-ପାଇଁ ଉପଯୁକ୍ତ ଏକ ମିଥ୍‌ର ସନ୍ଧାନ କରିଥିଲେ । ଅନୁରୂପ ପ୍ରଭାବରେ ଓଡ଼ିଆ କବିତା କ୍ଷେତ୍ରରେ ସୀତାକାନ୍ତ ମହାପାତ୍ରଙ୍କ ମିଥ୍ ପରିପ୍ରକାଶ ତାଙ୍କର କାବ୍ୟ ସଙ୍କଳନ ସମୂହ ।

କବି ଶ୍ରୀ ମହାପାତ୍ର ମିଥ୍‌ଧର୍ମୀ କବିତା ରଚନା କଲାବେଳକୁ ଓଡ଼ିଆ କବିତାର ଆଙ୍ଗିକରେ ଏହି ଚେତନାର ସ୍ୱର ଖୁବ୍ ଅସ୍ପଷ୍ଟ ଏବଂ ଅତି ବୌଦ୍ଧିକତାରେ ପର୍ଯ୍ୟବସିତ ହୋଇଥିଲା । କିନ୍ତୁ ତାଙ୍କର ମିଥ୍ ପ୍ରୟୋଗରେ ସମ୍ବେଦନ, ଆବେଗ ଓ ସମ୍ପର୍କ ଏହି ତିନୋଟିର ସଫଳ ସମନ୍ୱୟରେ କ୍ରମଶଃ କବିତା ଜଗତରୁ ଦୁର୍ବୋଧତା ତଥା ଅସ୍ପଷ୍ଟତା ଅପସରି ଗଲା । ଯାହା ଫଳରେ ପରବର୍ତ୍ତୀ ତରୁଣ କବି ସୌଭାଗ୍ୟ ମିଶ୍ର, ପ୍ରତିଭା ଶତପଥୀ, ଦୀପକ ମିଶ୍ର, କମଳା-କାନ୍ତ ଲେଙ୍କା, ରାଜେନ୍ଦ୍ର ପଣ୍ଡା, ହରିହର ମିଶ୍ର ପ୍ରଭୃତିଙ୍କୁ ଏହି ମିଥ୍‌ଧର୍ମୀ ସରଳ ଅଭିବ୍ୟକ୍ତି ବିଶେଷ ପରିମାଣରେ ପ୍ରଭାବିତ କରି ପାରିଥିଲା । ଏତଦ୍‌ବ୍ୟତୀତ ଲୋକମୁଖର ଚଳିତ କଥିତ ଭାଷା ପ୍ରୟୋଗରେ ତାଙ୍କର କବିତାଗୁଡ଼ିକ ଅନେକ ସମୟରେ ଗମ୍ଭୀର ଏବଂ ନିଗୂଢ଼ ବୋଲି ମନେ ହୋଇଥାଏ । ସେଥିପାଇଁ ତାଙ୍କର 'କୁବୁଜା ପାଇଁ ଗୋଟିଏ ସଙ୍ଗୀତ', 'ଜାରାଶବର' ପ୍ରଭୃତି କବିତାରେ ପ୍ରଚୁର ତତ୍ସମ ଶବ୍ଦ ରହିଛି । 'ଜାମ୍ବୁକୋଳି ରଙ୍ଗଲିପା ପାଦ ଦୁଇଟି', କୁବୁଜାରେ 'କେୟୁର କଙ୍କଣ କ୍ଷୀଣବାସ ଚନ୍ଦ୍ରା' ଇତ୍ୟାଦି ଏହାର ପ୍ରକୃଷ୍ଟ ଉଦାହରଣ । ସର୍ବୋପରି ତିନୋଟି ବିଶିଷ୍ଟ ମିଥ୍‌ଧର୍ମୀ କବିତା 'କୁବୁଜା', 'ଜାରା', 'ଅରଣ୍ୟ'ର ତିନୋଟିଯାକ ଚରିତ୍ର ସହିତ କବି ଖୁବ୍ ଅନ୍ତରଙ୍ଗ ଭାବରେ ଏକାତ୍ମ ଏବଂ ବ୍ୟକ୍ତିନିଷ୍ଠ । କାରଣ ତାଙ୍କର କାବ୍ୟିକ ବ୍ୟକ୍ତିସତ୍ତା ଅସହାୟ ଜାରା, ଅଭିଶାପମୁକ୍ତା କୁବୁଜା, ସନ୍ଦେହଗ୍ରସ୍ତା ଯଶୋଦାଙ୍କ ଭିତରେ ହିଁ ଲୁଚି

ରହି ନିଜର ବକ୍ତବ୍ୟ ପ୍ରକାଶ କରିଛି । ସିଏ ସମ୍ପର୍କିତ ଚରିତ୍ର ହିଁ ସୀତାକାନ୍ତୀୟ କାବ୍ୟ ମାନସକୁ ବିଶେଷ ଭାବରେ ଆନ୍ଦୋଳିତ କରି ନିଜର ବୈଶିଷ୍ଟ୍ୟ ପ୍ରତିପାଦନ କରିଛି । ସୀତାକାନ୍ତଙ୍କ କାବ୍ୟ ଜଗତର ଭାଷା ସମ୍ପର୍କରେ ଏତିକ କହିଲେ ଯଥେଷ୍ଟ ହେବ ଯେ କବିତାର ଧାରଣା ଏକପ୍ରକାର ଅସାଧାରଣ, ଅଲୌକିକ ଓ ମ୍ୟାଜିକାଲ୍ ଧାରଣା । ସର୍ବୋପରି ଏପରି ଏକ ଧାରଣା ବୋଲି ତା'ର ସ୍ରଷ୍ଟା ଓ ପାଠକ ଶ୍ରେଣୀ ପ୍ରାୟତଃ ଏକମତ । ଶବ୍ଦ ସମୂହର ଗ୍ରନ୍ଥନ ଓ ଆଙ୍ଗିକ ଅପରି-ବର୍ତ୍ତନୀୟ; ଅନ୍ୟ କେହି ତାକୁ ବଦଳେଇ ପାରିବେ ନାହିଁ । ମାନ୍ତ୍ରିକ ଉଚ୍ଚାରଣର ଗମ୍ଭୀରତା, ଅନୁବାଦ ଓ ସଂକ୍ଷିପ୍ତୀକରଣରେ ତା'ର ଅର୍ଥନାଶର ଆଶଙ୍କା, ଘନ ସାନ୍ଦ୍ରତାର ଆଲେଖ୍ୟ ଯେଉଁଥିରେ ଅନେକ ମୁହୂର୍ତ୍ତର ଅନୁଭୂତ ଧାରଣା, ବସ୍ତୁ ବା ଏକ ମୁହୂର୍ତ୍ତର ବହୁ ବିଭିନ୍ନ ଅନୁଭବର ଅର୍କେଷ୍ଟ୍ରା ଠୁଳୀଭୂତ ହୋଇ ଯାଇଥାଏ । ବିଶେଷ ଭାବରେ ଏକ ଅସାଧାରଣ ଚିତ୍ତବୃତ୍ତିର ସତ୍ୟ ଓ ଆଲୋକ ପ୍ରତି ଅନୁରାଗ ଏବଂ ତଦ୍‌ଜନିତ ପ୍ରାର୍ଥନା—ଏସବୁ ମିଶି କବିତାର ଭାଷାକୁ 'ମ୍ୟାଜିକାଲ୍' ଧାରଣା ରୂପେ ପ୍ରତିଭାତ କରାଇଥାଏ । ଅନୁଭବ ଓ ବାହ୍ୟ ପୃଥିବୀର ବସ୍ତୁ ଓ ଘଟଣା ପ୍ରତି ଉଦ୍ଦୀପନା ପ୍ରତି ପ୍ରତିକ୍ରିୟାର ବାହକ ରୂପେ ନିଜର ଗଭୀରତମ ଆନ୍ଦୋଳନର ପ୍ରକାଶରୂପେ ଯେତେକ କଳାରୂପ ଅଛି ସେଥିରେ କବିତାର ଭାଷା ବିଶିଷ୍ଟ ସ୍ଥାନ ଅଧିକାର କରେ ଏବଂ ତାହା ଏଇ କାରଣରୁ ଯେ ସେଥିରେ ପ୍ରକାଶଭଙ୍ଗୀର ବୈଚିତ୍ର୍ୟ ଓ ଅନନ୍ୟ ସାଧାରଣ ବା ଅଲୌକିକତା ଅତିମାତ୍ରାରେ ବିକଶିତ ହୁଏ । ପରିଶେଷରେ ସୀତାକାନ୍ତୀୟ ଭାବନାର ଦକ୍ଷତା ଏବଂ ବିଶିଷ୍ଟ ଅନ୍ତରଙ୍ଗତା ସମ୍ପର୍କରେ ବିଦେଶୀ କବି ତଥା ସମାଲୋଚକମାନଙ୍କର ମନ୍ତବ୍ୟ ଉଦ୍ଧାର କରିବାଟା ଯୁକ୍ତିଯୁକ୍ତ ମନେ କରୁଛି ।

୧—"ଏ କବିତାଗୁଡ଼ିକରେ ଲକ୍ଷ୍ୟ କରିବା କଥା ସେହି ଅପୂର୍ବ କାବ୍ୟ ଦକ୍ଷତା ଯାହା ସାରା ବିଶ୍ୱର ଯନ୍ତ୍ରଣାକୁ ବୁଝେ, ନିଜ ଭିତରକୁ ଟାଣିଆଣେ, ଆତ୍ମଜ୍ଞାନରୁ ହୁଏ କରୁଣା । ଆତ୍ମାର ଯେତେ ବୈକଲ୍ୟ ଜୀବନର ଯେତେ ନିର୍ଜନତା ଓ ଦୁଃଖ ନିଷ୍ଫଳ ହତାଶାରେ ଶେଷ ନ ହୋଇ ବରଂ ଖୋଜେ ଆମରି ପ୍ରାତ୍ୟହିକ ସ୍ଥିତିରେ ଏ ବୈକଲ୍ୟର କାରଣ ଓ ସ୍ୱରୂପ ।"

(ମୀର୍ ସାଲ୍‌ଗାନିକ୍—ଫରେନ୍ ଲିଟରେଚର୍, ମସ୍କୋ ସମସ୍ୟର ଶେଷ ନାମ—ସୀତାକାନ୍ତ ମହାପାତ୍ର)

୨—"ଏହି କବିତାଗୁଡ଼ିକ ଉଭୟ ବିକ୍ଷୁବ୍ଧ ଓ ଶାନ୍ତ ଯନ୍ତ୍ରଣାରେ କୁଢ଼୍‌ଗୁଢ଼୍ ଅଥଚ ଉଦାର ଓ ସ୍ୱଚ୍ଛ ସ୍ୱଚ୍ଛ । ସ୍ନେହ ଓ ମୃତ୍ୟୁଭୟ ଏଠି ପରସ୍ପର ନିବିଡ଼ ପଡ଼ୋଶୀ ଏବଂ ସ୍ୱପ୍ନ ଇତିହାସଠୁଁ ଆହୁରି ବାସ୍ତବ । ସରଳ ପ୍ରଶ୍ନ ଓ ଅନୁଭବର ବିରୋଧାଭାସ ସତ୍ତ୍ୱେ ପ୍ରତ୍ୟେକ କବିତା ଗୋଟିଏ ଗୋଟିଏ ସମ୍ପୂର୍ଣ୍ଣ ପ୍ରତୀକ । ସେମାନଙ୍କର ଅଭିଳାଷ ଅନ୍ୟର, ଆଉ ଜଣକର, ଯାଯାବରର ତଥା କାନ ଡେରି ଶୁଣିବା ପାଇଁ । କବିତା ପାଇଁ ଇଏ କିଛି କମ୍ ଲକ୍ଷ୍ୟ ନୁହେଁ ।"

(ଡେନିସ୍ କବି ଓ ସମାଲୋଚକ ଏରିକ୍ ଷ୍ଟିଟ୍ୟୁସ, ଡେନିସ୍ ଅନୁବାଦ ସଙ୍କଳନର ମୁଖବନ୍ଧ—ସମୟର ଶେଷ ନାମ)



# ଉପସଂହାର—

ଆଧୁନିକ ମନର କମ୍ପନ ପ୍ରତ୍ୟେକ ସାଂପ୍ରତିକ କବିକୁ ଅସ୍ଥିର କରିଛି । ବାହ୍ୟ ପୃଥିବୀର କୋଳାହଳ ସେମାନଙ୍କୁ ବିଚ୍ଛିନ୍ନ କରିଛି । ଆଜିର କବି ଏ ପୃଥିବୀ ପ୍ରତି କୌଣସି ଆଶା ଆକାଙ୍କ୍ଷା ରଖେନାହିଁ । ଏକ ଆଣ୍ଟି-ପୃଥିବୀ ନେଇ ସେ ଚିନ୍ତିତ । ଅବଶ୍ୟ ପ୍ରତି ସମୟରେ ଦେଖା ଦେଇଥାଏ ମାନବିକ କ୍ଷୁଧା । ସେତେବେଳେ ମଣିଷର ଆତ୍ମା ବିପ୍ଳବ କରେ ଏବଂ ନିଜର ଅସ୍ତିତ୍ୱ ପ୍ରତି ବିରକ୍ତ ଆସେ । ପ୍ରୋମିଥିଅସ୍ ସ୍ୱର୍ଗୀୟ ଅଗ୍ନିକୁ ଚୋରାଇ ନେଲାପରି ପ୍ରତ୍ୟେକ ମଣିଷ କ୍ଷୁଧିତ ବ୍ରହ୍ମପୁତ୍ର ପରି ସବୁକିଛିକୁ ଗ୍ରାସ କରିବାକୁ ବସେ । ଏହି କ୍ଷେତ୍ରରେ ର୍ୟାବୋଁଙ୍କ କବିତା ଅନ୍ୟତମ । କବିତା କେବଳ ବିଶ୍ୱକୁ କୌଣସି ଏକ ଆଂଶିକ ପିଞ୍ଜରା ଭିତରେ ଆବଦ୍ଧ କରିବା ଲାଗି ମାଧ୍ୟମ ନୁହେଁ । ର୍ୟାବୋଁଙ୍କ ଆଣ୍ଟି-ପୃଥିବୀର ଅର୍ଥ ନୁହେଁ ଯେ ସେ ପୃଥିବୀକୁ ପୁରାପୁରି ବରଖାସ୍ତ କରିଛନ୍ତି । ମାତ୍ର ସେ ଅନ୍ୟ ଏକ ନୂତନ ପୃଥିବୀ ବିଷୟରେ ଚିନ୍ତିତ । 'ଭାଗ୍ୟର, ସମୟର ଭୃତ୍ୟଗଣ ଜୀବନକୁ ଅଭିଶାପ ଦିଅନା'—ଏଇ ସ୍ଲୋଗାନ ହୁଏତ ଏକ ନୂତନ ଜଗତ ସପକ୍ଷରେ ଯୁକ୍ତିବାଢ଼େ । ଏମିତି ଏକ ଆଶା ଓ ସ୍ୱପ୍ନ ଚିରକାଳର ପ୍ରବହମାନ ଏ ଅନୁଭୂତିରେ ଶାଣିତ କବିମାନଙ୍କୁ ଯଥେଷ୍ଟ ପ୍ରେରଣା ଦେଇଛି । ଏହି ପରିପ୍ରେକ୍ଷୀରେ ସାମ୍ପ୍ରତିକ ପ୍ରଖ୍ୟାତ କବି ଗୁରୁପ୍ରସାଦ ମହାନ୍ତି, ରମାକାନ୍ତ ରଥ, ଦେବଦାସ ଛୋଟରାୟ, ସୀତାକାନ୍ତ ମହାପାତ୍ରଙ୍କ କବିତାଗୁଡ଼ିକର କିଛିଟା ଉଦ୍ଧୃତି ଆଲୋଚନାର ସ୍ୱୟଂ ସମ୍ପୂର୍ଣ୍ଣତା ପାଇଁ ଯେ ଆବଶ୍ୟକ ତାହା ଅସ୍ୱୀକାର କରାଯାଇ ନ ପାରେ ।

୧—ଗୁରୁପ୍ରସାଦଙ୍କର—"ବର୍ଷାଋତୁ ନିଷ୍ଠୁର ନିର୍ମମ / ଫୁଟାଇ ରଙ୍ଗଣି ଫୁଲ ଶତକୃତ କାନ୍ଥବାଡ଼ ମୂଳେ / ହାଡ଼ରେ ଅରାଇ ହସ୍ତ / ମାଟିତଳେ ଚେର ମୂଳ ଟାଣି / ବର୍ଷା ପଡ଼େ ଝରି ।" (କାଳ ପୁରୁଷ ପୃ-୧) ପ୍ରଭୃତି ପଂକ୍ତିଗୁଡ଼ିକ ଏପରି ଏକ ନିତାନ୍ତ ସଂହାରକ ପୃଥିବୀ ସମ୍ପର୍କରେ ସଚେତନତା ଜାହିର କରିଛି । ସୁତରାଂ ଏପରି ଏକ ପରିସ୍ଥିତିରେ ଦାର୍ଶନିକ କବି ଏ ପୃଥିବୀକୁ ମୁକ୍ତ ଚାହେଁ । କିନ୍ତୁ ମୁକ୍ତ ଏକ ଆପେକ୍ଷିକ ଶବ୍ଦପରି ମଣିଷର ସଂଜ୍ଞାକୁ ନିୟନ୍ତ୍ରଣ କରିଥାଏ ।

ଏଥିରେ ପୃଥିବୀ ପ୍ରତି ଉପେକ୍ଷା ସୂଚିତ ହୋଇନାହିଁ ବରଂ ଏକ ଚେତନଶୀଳ କବି ମନର କ୍ଷୋଭ ପ୍ରକାଶ ପାଇଛି ।

୨—"ଅସତ୍ୟ ସବୁକିଛି ଅସତ୍ୟ ପକ୍ଷୀ ଗୁରୁ ଫିଟି / ପକ୍ଷୀ ସମୁଦ୍ର ଉପରେ / ଉଡ଼ିଯାଏ ଉଡ଼ୁ ଉଡ଼ୁ / ମରିଯାଇ ଖସିପଡ଼େ ଏବଂ ତା'ର ଶବ / ଲହଡ଼ି ବିମାନ ଚଢ଼ି ଫେରେ / ପୁଣି ବଞ୍ଚେ ପୁଣି ପକ୍ଷୀ ଗୁରୁ / ପରେ ଫିଟେ ପୁଣି ଉଡ଼ିଯାଏ / ପୁଣି ଖସିପଡ଼େ ପୁଣି ଥରେ / ଏ କ'ଣ କୁହୁକ ? ଏ କ'ଣ ସୁଆଙ୍ଗ ?"
(ସମୁଦ୍ରକୂଳ : ରମାକାନ୍ତ ରଥ)

ଏପରି ଏକ ଅନିଶ୍ଚିତ ପୃଥିବୀରେ ସବୁକିଛି ଅସତ୍ୟ ପୁଣି ।ସତ୍ୟ ଏମିତି ଏକ ଶୂନ୍ୟତା ବା ପୂର୍ଣ୍ଣତାକୁ ଭିତ୍ତିକରି ମଣିଷର ଜୀବନ—କବିର ଜୀବନ । ତେଣୁ କବି କହେ—"ମୁଁ କେବଳ ବସିରହେ / ଯେହେତୁ କ୍ରମଶଃ ଜାଣୁଛି ବିଚ୍ଛେଦ ହିଁ ସବୁଠାରୁ ବେଶୀ ପ୍ରତିଶ୍ରୁତି ଦିଏ ।"
(ଫାଙ୍କା ଦିନ : ଦେବଦାସ ଛୋଟରାୟ)

ଏପରି ଏକ ନିର୍ଯାତିତ ଆତ୍ମପୁରୁଷର ନିବେଦନ ଆକସ୍ମିକ ନୁହେଁ, ବରଂ ଅବଶ୍ୟମ୍ଭାବୀ । ସେଇ ବସି ରହିବା ଭିତରେ ଜୀବନର ପରିତୃପ୍ତି, ପକ୍ଷୀଗୁରୁ ଫେରି ପୁଣି ଉଡ଼ିବା ହିଁ ଜୀବନର ଏକମାତ୍ର ସମାପ୍ତି ନୁହେଁ, ତାହା ଅନ୍ୟ ଏକ ଜୀବନକୁ ଚେତାବନୀ, ଏକ ନୂତନ ଜୀବନର ଆତ୍ମପ୍ରକାଶ ଲାଗି ସୁଚିନ୍ତିତ ମାର୍ଗ ପ୍ରଦର୍ଶନ । ହୁଏତ କବି ସେହି ସ୍ଥିତିରେ ପହଞ୍ଚିବାବେଳେ ଦେଖେ—"କ୍ରୀତଦାସର ଦେଶରେ ଆମେ ସବୁ ପହଞ୍ଚିଲୁ ରାତି ହେଲା ପରେ / ଦିନର ଶେଷ ଅଗ୍ନି ହସ ସେତେବେଳେ ଶୂନ୍‌ଶାନ୍ / ନିଭିଥିଲା ସବୁ ଜଳସାରି / ଚେତନ ଓ ସ୍ମୃତିର କଥାଗୁଡ଼ିକ ସବୁ ସେତେବେଳେ ଶୂନ୍‌ଶାନ୍ / ଧାନଫୁଲ, ଧାନଶିଁଷା, ସାବ୍‌ଜା ପତ୍ର ଜଳି ସାରିଥିଲା ।" (ସୂର୍ଯ୍ୟପୂଜା : ସମୁଦ୍ର : ସୀତାକାନ୍ତ ମହାପାତ୍ର)

ଏହି ଧରଣର ପରିବେଶ, ଅନୁଭବ କଥା ଉଦ୍‌ବେଳନ ଆଲୋଚ୍ୟ କବି ସୀତାକାନ୍ତ ମହାପାତ୍ରଙ୍କୁ ଖୁବ୍ ନିବିଡ଼ ଭାବରେ ଆନ୍ଦୋଳିତ କରି ବ୍ୟାକୁଳତା ସୃଷ୍ଟି କରିଛି । ତେଣୁ ସେ ସମସ୍ତ ଦୁର୍ବିସହ ଯନ୍ତ୍ରଣା ଭିତରେ ଏକ ଅନନୁଭୂତ ଆନନ୍ଦର ସ୍ଫୁରଣ ଅନୁଭବ କରିଛନ୍ତି । ସର୍ବୋପରି ପାରମ୍ପରିକ ପୁରାଣ ପ୍ରୀତି ବା ମିଥ୍ ଚେତନାଟିକୁ ପରୀକ୍ଷାମୂଳକ ଭାବରେ ତାଙ୍କର ସୃଜନୀ ମାଧ୍ୟମରେ ପ୍ରୟୋଗ କରି ଓଡ଼ିଆ ସାହିତ୍ୟକୁ ଏକ ନୂତନ ମୋଡ଼ ପ୍ରଦାନ କରିଛନ୍ତି । ଅବଶ୍ୟ ମୋର ଏହି ଆଲୋଚନାଟି ସମଗ୍ର କାବ୍ୟ ଭାବନାକୁ ଠିକ୍‌ନଖି ଆଲୋଚନା କରି ନ ଥିଲେ ହେଁ ସାଂପ୍ରତିକ ଜୀବନ ଧାରାରେ ମିଥ୍‌ର ଯେ ଏକ ଅପରିହାର୍ଯ୍ୟ ଭୂମିକା ରହିଛି

ତାହା ଦର୍ଶାଇବାକୁ ଚେଷ୍ଟା କରିଛି । ସୀତାକାନ୍ତ ମହାପାତ୍ରଙ୍କ କବିତା ପୂର୍ବରୁ ଗୁରୁପ୍ରସାଦ ମହାନ୍ତି 'କାଳପୁରୁଷ'ରେ ସଚେତନ ଭାବରେ ମିଥ୍‌ର ପ୍ରୟୋଗ କରିଥିଲେହେଁ ତାହା କ୍ରମଶଃ ସ୍ପଷ୍ଟତର ଏବଂ ଗମ୍ଭୀରତମ ଭାବରେ ଶ୍ରୀ ମହାପାତ୍ରଙ୍କ ସମ୍ପ୍ରତି ଓ ବ୍ୟୁହ, ଅଷ୍ଟପଦୀ, ଆରଣ୍ୟକ ପ୍ରଭୃତି କବିତା ସଂକଳନମାନଙ୍କରେ ରୂପ ପାଇଛି । ସୀତାକାନ୍ତଙ୍କ କାବ୍ୟମାନଙ୍କରେ ମିଥ୍‌ର ଏକ ଅନ୍ତରଙ୍ଗ ବିକାଶ ସମ୍ଭବ ହୋଇଛି ତାହା ଦର୍ଶାଇବା ପୂର୍ବରୁ ମିଥ୍ କିପରି ବିଭିନ୍ନ ଯୁଗରେ ଶକ୍ତିଶାଳୀ ଲେଖକମାନଙ୍କୁ ଗଭୀର ଭାବରେ ଆକର୍ଷିତ କରିଛି ତାହାର ଦୃଷ୍ଟାନ୍ତ ଦେବା ସମୀଚୀନ ମନେ କରୁଛି । ଏହି ପ୍ରସଙ୍ଗରେ ହୋମର୍‌ଙ୍କ ୟୁଲିସିସ୍‌ର ଭ୍ରମଣ କାହାଣୀ ସ୍ମରଣ କରାଯାଇପାରେ । ୟୁଲିସିସ୍‌ର ମୂଳ କାହାଣୀକୁ ବିଭିନ୍ନ ସମୟରେ ଲେଖକମାନେ ନିଜ ନିଜର କାବ୍ୟ ଆବଶ୍ୟକତା ଦୃଷ୍ଟିରୁ ବିଭିନ୍ନ ଭାବରେ ବ୍ୟବହାର କରିଛନ୍ତି । 'ଦାନ୍ତେଙ୍କର ନରକ' କାବ୍ୟର ୟୁଲିସିସ୍ ଉପାଖ୍ୟାନ ସମ୍ପୂର୍ଣ୍ଣ ଭାବରେ ତାଙ୍କର ନିଜସ୍ୱ । ସମୁଦ୍ର ଭ୍ରମଣ ପରେ ହୋମର୍‌ଙ୍କ ନାୟକ ଇଥାକାକୁ ଫେରି ସଂସାରୀ ହୋଇଛି; କିନ୍ତୁ ଦାନ୍ତେଙ୍କ ନାୟକ ନିଜର ଅଶାନ୍ତ ଆତ୍ମାକୁ ଶାନ୍ତ କରିବା ପାଇଁ ପୁନର୍ବାର ସମୁଦ୍ର ଯାତ୍ରା କରିଛି । କ୍ରମେ ପରିଚିତ ସାଗର ଛାଡ଼ି ୟୁଲିସିସ୍ ଓ ତା'ର ବନ୍ଧୁମାନେ ଅପରିଚିତ, ଅଜଣା ଦୂରତମ ସାଗରକୁ ଯାତ୍ରା କରିଛନ୍ତି ଓ ଶେଷରେ ଯେତେବେଳେ ଉତ୍ତାଳ ତରଙ୍ଗର ଅନ୍ତରାଳରୁ 'ପାର୍ଥିବ ସ୍ୱର୍ଗ'ର ଶୈଳ ଶିଖର ସ୍ପଷ୍ଟ ହୋଇ ଉଠିଛି ସେହି ସମୁଦ୍ରରେ ହିଁ ସେତେବେଳେ ୟୁଲିସିସ୍ ଜୀବନର ଯବନିକା ପାତ ହୋଇଛି । 'ୟୁଲିସିସ୍'ର ଏ ଯାତ୍ରାରେ ତା'ର ପ୍ରବଳ ଉଚ୍ଚାଭିଳାଷ ସୂଚିତ ଏବଂ ଏହାର ପରିଣତି ହେଉଛି 'ନରକ'ର ଅଷ୍ଟମ ବୃତ୍ତରେ । ଦାନ୍ତେଙ୍କ ୟୁଲିସିସ୍ ଚତୁର୍ଦ୍ଦଶ ଶତାବ୍ଦୀର ପୁରୋଦୃଷ୍ଟି ସମ୍ପନ୍ନ ମାନବିକ ଉଦ୍ୟମ ଓ ଉଚ୍ଚାଶାର ପ୍ରତୀକ । ଠିକ୍ ସେହିପରି କାଜାନ୍‌ଜାକିସ୍‌ଙ୍କ ୟୁଲିସିସ୍ ଆଧୁନିକ ମାନବର ପ୍ରତିନିଧି । ଆଧୁନିକ ଜୀବନର ହତାଶା ସହିତ ପ୍ରଚଣ୍ଡ ତଥା ଉଚ୍ଛ୍ୱଳ ଜୀବନୀ ଶକ୍ତିର ପରିଚୟ ତା' ଠାରେ ମିଳେ ଏବଂ ସେ ଉଭୟ ବିପ୍ଳବୀ କିନ୍ତୁ ଯୋଗୀ । ଉଭୟେ ଦାନ୍ତେ ଓ କାଜାନ୍‌ଜାକିସ୍‌ଙ୍କ ନାୟକ ହୋମର୍‌ଙ୍କ ସାମାଜିକ ଓ ସ୍ଥିତପ୍ରଜ୍ଞ ନାୟକଠାରୁ ସମ୍ପୂର୍ଣ୍ଣ ଭିନ୍ନ । ପୁଣି ପାଉଣ୍ଡ ତାଙ୍କର 'କାଣ୍ଟୋ'ରେ ୟୁଲିସିସ୍-ଟାଇରେସିଆସ୍ ଉପାଖ୍ୟାନ ବ୍ୟବହାର କରିଛନ୍ତି ଓ ଇଲିୟଟଙ୍କର 'The waste land'ରେ ଟାଇରେସିଆସ୍ ହେଉଛନ୍ତି ପ୍ରଧାନ ବ୍ୟକ୍ତି । ସେ ଯାହା ଦେଖୁଛି ତାହା ହିଁ କବିତାର ସାରାଂଶ ବୋଲି ଇଲିୟଟ୍‌ଙ୍କ ମତ । 'ୟୁଲିସିସ୍' କାହାଣୀର

ସଫଳତମ ଆଧୁନିକ ବ୍ୟବହାର ବୋଧହୁଏ ଜେମସ୍ ଜୟେସ୍‌ଙ୍କ ଉପନ୍ୟାସ 'ୟୁଲିସିଜ୍' । ପୁରାତନ କାହାଣୀର ସୂଚନାତ୍ମକ ପରିପ୍ରେକ୍ଷୀରେ 'ୟୁଲିସିଜ୍' ବର୍ତ୍ତମାନ କାଳର ଡବଲିନ୍ ସହରର ବାସିନ୍ଦା ବ୍ଲୁମ୍ ଚରିତ୍ରର ଆଖ୍ୟାୟିକା । ବିଶେଷ କରି ଏଠାରେ ବ୍ଲୁମର ନରକ ଦର୍ଶନ ପର୍ଯ୍ୟାୟଟିକୁ ଲକ୍ଷ୍ୟ କରାଯାଇ ପାରେ । ଗ୍ଲାସେନ୍‌ଭିନ୍‌ରେ ଏକ ଶବ ଶୋଭାଯାତ୍ରା ଏ ସମାଧିକୁ ଉପଲକ୍ଷ୍ୟ କରି ଏହି ଅନୁଭୂତ ସମ୍ଭବ ହୋଇଛି ଓ ହୋମର୍‌ଙ୍କ ୟୁଲିସିଜ୍‌ର ନରକ ଦର୍ଶନ ଅଭିଜ୍ଞତା ସହିତ ଏହା ତୁଳନୀୟ । ଏହି କ୍ଷେତ୍ରରେ ଆଲୋଚ୍ୟ କବି ଶ୍ରୀ ସୀତାକାନ୍ତ ମହାପାତ୍ରଙ୍କ କାବ୍ୟ 'ଅଷ୍ଟପଦୀ'ରେ ମିଥ୍‌ର ମନୋଜ୍ଞ ବ୍ୟବହାର ତାଙ୍କର କାବ୍ୟ ଅନୁଭୂତକୁ ସୁସଙ୍ଗଠିତ କରିପାରିଛି । ଜୀବନ ଅଭିଜ୍ଞତାର ଅଭିବୃଦ୍ଧି ଓ ମୂଲ୍ୟାୟନରେ ସ୍ଥାନ ଓ କାଳର ପାର୍ଥକ୍ୟ ନଗଣ୍ୟ । ସେହି ଦୃଷ୍ଟିରୁ ବିଗ୍ୟର କଲେ 'ଅଷ୍ଟପଦୀ'ର ଆଧୁନିକ ନାୟକର ଜୀବନାନୁଭୂତି ମହାଭାରତ ଚରିତ୍ରର ଅନୁଶୀଳନ ଠାରୁ ବିଶେଷ ଭିନ୍ନ ନୁହେଁ । ଏହି ମିଥ୍ ମାଧ୍ୟମରେ ସମକାଳୀନ ଜୀବନ ପ୍ରତି କାବ୍ୟ ଦୃଷ୍ଟି ସ୍ପଷ୍ଟତର ହୋଇଛି ।

ପରିଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ—"ଏ କବିତା ଗୁଡ଼ିକରେ ଅଛି ଏକ ସ୍ୱତନ୍ତ୍ର ମାଟି ପାଣିର ବାସ୍ନା ଯାହା ତଥାକଥିତ ଅନେକ ଆଧୁନିକ କବିତା ପରି ଅର୍ଥକୁ ଅପରିଚ୍ଛନ୍ନ ନ ରଖି ପାଠକକୁ ସିଧାସଳଖ ଛୁଏଁ । ଭାରତ ଓ ଭାରତ ବାହାରେ ଏଗୁଡିକ ଯେ ବିଜ୍ଞ ବ୍ୟକ୍ତିମାନଙ୍କର ଦୃଷ୍ଟି ଆକର୍ଷଣ କରିଛି ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।"

ସୁତରାଂ ମୋର ଏହି ଆଲୋଚନାଟି ଗବେଷକ ଏବଂ ପାଠକମାନଙ୍କୁ କିଛିଟା ଖୋରାକ ଯୋଗାଇବ ବୋଲି ଆଶାକରେ ।



## ସହାୟକ ଗ୍ରନ୍ଥସୂଚୀ :


1. Andrew Lang : Myth, Ritual and Religion.
   1887 : Vol-I
   ,, 1885 : Custom and Myth. (London)
2. A.R. Rudeiffe Brown : Structure and function in Primitive society (London, 1952).
3. Berkeley : The new contemporary Mythology (1960).
4. Berkeley : The Ritual theology of Myth (1966).
5. C.G. Jang & Trans H.G. & C.F. Baynes : Analytical Psychology, (Kegan Paul, 1928).
6. Douglas Bush : Mythology and Romantic Tradition in English Poetry. (Harvard University Press. Cambridge).
7. Donald 4. Macken Zic : Indian Myth and Legend. (Sona Publication, Delhi-4)
8. Edtd. Elex Preminger—Griechen : Encyclopedia of Poetry and Poetics (Vienna and Leiplig, 1939)
9. Encyclopedia of Britanica Ltd. Chicago, London Vol. 16.
10. Encyclopedia of Social Sciences, Newyork 1963.
11. Evenst cassiver : Essays, P. 86.
12. E.W. Court, Ed. S. Diamond : Culture in History (Newyork, 1960)
13. George Lucas : The meaning of contemporary Realism.
14. G.S. Kirk : Myth : Its meaning and function in Ancient and other culture (Cambridge University Press)
15. Herbert Read : Collected Essays in Literary criticism.
16. Edtd. Joseph M. Kitagawa & Charfttlong : Myth & symbol.
17. Moud Boudkin : Architypal Patterns in Poetry. (Oxford University Press)

18. Malinovski : Myth in Primitive Psychology (1927)

19. Maria L each : Standard Dictionary of folk love : mythology and Legend under folktall (Newyork)

20. P. Freund : Myths of creation (Newyork, 1964)

21. Ruth Benedict : Patterns of culture (Boston)

22. S. Frend : Totem and Taboo.

23. Spencer, Lewis : 'The outline of Mythology.'
1949 : (London)
1931 : 'An Introduction to Mythology' (London)

24. Edtd. S.H. Hooke : Myth, Ritual & Kingship (Oxford, (1958)

25. Sir Walter Buket Greek Tragedy and Sacrificial Ritual. (Greek, Roman & Byzantine Studies, 1966)

26. Mircea Eliade : Myth and Reality (Newyork, London)

27. T.S. Eliot : The design of his Poetry, Elizabeth Dew. (Indian Reprint, Doba House, Delhi-6)

28. William Righter ; Myth and Literature.

୨୯ । ଅପୂର୍ବ ରଞ୍ଜନ ରାୟ : କବିତା ବୀକ୍ଷା, ବିଦ୍ୟାପୁରୀ, ୧୯୭୬ ।

୩୦ । ଡଃ କୁଞ୍ଜବିହାରୀ ଦାସ : ଆଧୁନିକ ଓଡ଼ିଆ ସାହିତ୍ୟର ଭୂମି ଓ ଭୂମିକା, ଓଡ଼ିଆ ସାହିତ୍ୟ ଏକାଡ଼େମୀ, ୧୯୭୨ ।

୩୧ । ଗୁରୁପ୍ରସାଦ ମହାନ୍ତି : ସମୁଦ୍ର ସ୍ନାନ, ଲର୍କବୁକ୍ସ, ୧୯୭୦ ।

୩୨ । ଡଃ ଜାନକୀବଲ୍ଲଭ ମହାନ୍ତି (ଭରଦ୍ୱାଜ) : ଆଧୁନିକ ଓଡ଼ିଆ ସାହିତ୍ୟ, ଗ୍ରନ୍ଥ ମନ୍ଦିର, ୧୯୮୪ ।

୩୩ । ଦାଶରଥି ଦାସ : ସାହିତ୍ୟ ସନ୍ଧାନ, ଅଗ୍ରଦୂତ, ୧୯୭୫ ।

୩୪ । ଶ୍ରୀ ଦାଶରଥି ଦାସ : ବିବିଧ ସମାଲୋଚନା, ଅଗ୍ରଦୂତ, ୧୯୮୧ ।

୩୫ । ଶ୍ରୀ ଦାଶରଥି ଦାସ : ଆଧୁନିକ କାବ୍ୟ ଜିଜ୍ଞାସା ଓ ଚିତ୍ରକଳ୍ପ ।

୩୬ । ଶ୍ରୀ ଦେବେନ୍ଦ୍ର ମହାନ୍ତି : ଓଡ଼ିଆ ସାହିତ୍ୟର ଉନ୍ମେଷ ଓ ଉତ୍ତରଣ (ପ୍ରଥମ ଭାଗ), ବିଦ୍ୟାପୁରୀ, ୧୯୮୩ ।

୩୭ । ଶ୍ରୀ ଦୀପକ ମିଶ୍ର : କବି : କବିତା ଓ ତା'ର ପୃଷ୍ଠଭୂମି, ବିଦ୍ୟାପୁରୀ ୧୯୭୭ ।

୩୮ । ଶ୍ରୀ ଦୀପକ ମିଶ୍ର : ସପ୍ତମ ପୃଥିବୀ, ଅଗ୍ରଦୂତ ପ୍ରକାଶନୀ, ୧୯୭୭ ।
୩୯ । ଡଃ ନିତ୍ୟାନନ୍ଦ ଶତପଥୀ : ସବୁଜରୁ ସାମ୍ପ୍ରତିକ, ଗ୍ରନ୍ଥ ମନ୍ଦିର, ୧୯୮୫ ।
୪୦ । ,, : କବିତା ଯୁଗେ ଯୁଗେ, ଗ୍ରନ୍ଥମନ୍ଦିର, ୧୯୭୪ ।
୪୧ । ,, : ପ୍ରମୁଖ କବି କବିପସ୍ଥ, ନାଳନ୍ଦା, ୧୯ ୫ ।
୪୨ । ଡଃ ନଟବର ସାମନ୍ତରାୟ : ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ, ନିଉ ପ୍ରେସ ୧୯୭୦ ।
୪୩ । ଡଃ ପ୍ରସନ୍ନ କୁମାର ମିଶ୍ର : ପୂର୍ବ ଭାରତର ହିନ୍ଦୁ ଲୋକ ମିଥ୍ : ଓଡ଼ିଶା, ଓଡ଼ିଶା ବୁକ୍ ଷ୍ଟୋର, ୧୯୮୧ ।
୪୪ । ଡ ପ୍ରସନ୍ନ କୁମାର ପଟ୍ଟନାୟକ : ଆଧୁନିକ ଓଡ଼ିଆ କବିତାରେ ଶାସ୍ତ୍ରୀୟ ଚିନ୍ତାଧାରା, ଗ୍ରନ୍ଥମନ୍ଦିର, ୧୯୮୪ ।
୪୫ । ଶ୍ରୀ ପରୀକ୍ଷିତ ନନ୍ଦ (ସମ୍ପାଦନା) : ମୋ ଦୃଷ୍ଟିରେ ସାଂପ୍ରତିକ ସାହିତ୍ୟ ।
୪୬ । ଶ୍ରୀ ଯତୀନ୍ଦ୍ର ମୋହନ ମହାନ୍ତି, କୃଷ୍ଣ ଚରଣ ସାହୁ (ସଂପାଦନା) : ପ୍ରଜ୍ଞା, ଭୋଲ ୭୭, ଅଗ୍ରଦୂତ, ୧୯୭୭ ।
୪୭ । ଶ୍ରୀ ରାଜେନ୍ଦ୍ର କିଶୋର ପଣ୍ଡା : ଶୈଳକଳ୍ପ, ଗ୍ରନ୍ଥ ମନ୍ଦିର, ୧୯୮୨ ।
୪୮ । ଶ୍ରୀ ସୀତାକାନ୍ତ ମହାପାତ୍ର : 'ଅଷ୍ଟପଦୀ', ଗ୍ରନ୍ଥ ମନ୍ଦିର, ୧୯୬୭ ।
୪୯ । ,, : 'ଆରଣ୍ୟକ', ବିଦ୍ୟାପୁରୀ, ୧୯୮୧ ।
୫୦ । ,, : 'ଶବ୍ଦନଦୀ'
୫୧ । ,, : 'ଦୀପ୍ତି ଓ ଦ୍ୟୁତି', ଗ୍ରନ୍ଥ ମନ୍ଦିର, ୧୯୬୩ ।
୫୨ । ,, : 'ଶବ୍ଦର ଆକାଶ'
୫୩ । ,, : 'ସମୁଦ୍ର' : ଫ୍ରେଣ୍ଡସ୍ ପବ୍ଲିଶର୍ସ, ୧୯୭୭ ।
୫୪ । ,, : 'ସମସ୍ତର ଶେଷନାମ', ଫ୍ରେଣ୍ଡସ୍ ପବ୍ଲିଶର୍ସ, ୧୯୮୪ ।
୫୫ । ,, : 'ଛିନ୍ନ ଆକାଶ ଛିନ୍ନ ଦୀପ୍ତି', ଅଗ୍ରଦୂତ ୧୯୭୮ ।
୫୬ । ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ : ଗ୍ରନ୍ଥ ମନ୍ଦିର, ୧୯୬୫ ।
୫୭ । ଶ୍ରୀ ସଚ୍ଚି ରାଉତରାୟ ; କବିତା ୧୯୬୨, ଗ୍ରନ୍ଥ ମନ୍ଦିର, ୧୯୭୪ ।
୫୮ । ଶ୍ରୀ ସୁରେନ୍ଦ୍ର ମହାନ୍ତି : ଓଡ଼ିଆ ସାହିତ୍ୟର କ୍ରମ ବିକାଶ, ଅଗ୍ରଦୂତ, ୧୯୭୮ ।

୫୯ । ଶ୍ରୀ ସୁରେନ୍ଦ୍ର ମହାନ୍ତି : ଓଡ଼ିଆ ସାହିତ୍ୟର ଆଦିପର୍ବ, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋରସ, ୧୯୭୭ ।

୬୦ । ଶ୍ରୀ ସୁରେନ୍ଦ୍ର ମହାନ୍ତି : ଓଡ଼ିଆ ସାହିତ୍ୟର ମଧ୍ୟପର୍ବ, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋରସ, ୧୯୬୯ ।

୬୧ । ସ୍ମରଣିକା : ଓଡ଼ିଆ ଯୁବଲେଖକ ସମ୍ମେଳନ ସଂଖ୍ୟା, ୧୯୭୧-୭୨ ।

୬୨ । ସାହିତ୍ୟିକ ଅନ୍ୱେଷଣ : ସଂକଳନ, ଓଡ଼ିଆ ସାହିତ୍ୟ ସମାଜ, ଗନ୍ଧମର୍ଦ୍ଦନ, ୧୯୭୫ ।

୬୩ । ଶ୍ରୀ ଶରତ କୁମାର ମହାନ୍ତି : ଅସ୍ତିତ୍ୱବାଦର ମର୍ମକଥା, ଅଗ୍ରଦୂତ, ୧୯୭୭ ।

୬୪ । ଇସ୍ତାହାର : ସଂଖ୍ୟା ୬, ଅପ୍ରେଲ-ଜୁନ୍, ୧୯୭୯ ।

୬୫ । ଇସ୍ତାହାର : ସଂଖ୍ୟା ୮, ଅକ୍ଟୋବର-ଡିସେମ୍ବର, ୧୯୭୯ ।

୬୬ । ଇସ୍ତାହାର : ସଂଖ୍ୟା ୨, ୩, ୪, ୧୯୭୯ ।

୬୭ । ଇସ୍ତାହାର : ସଂଖ୍ୟା ୭, ଜୁଲାଇ-ସେପ୍ଟେମ୍ବର, ୧୯୭୯ ।

୬୮ । ଇସ୍ତାହାର : ସଂଖ୍ୟା ୬, ଏପ୍ରିଲ-ଜୁନ୍, ୧୯୮୦ ।

୬୯ । ଇସ୍ତାହାର : ସଂଖ୍ୟା ୧୦, ଏପ୍ରିଲ-ଜୁନ୍, ୧୯୮୦ ।

୭୦ । ଇସ୍ତାହାର : ସଂଖ୍ୟା ୧୧, ଜୁଲାଇ-ସେପ୍ଟେମ୍ବର, ୧୯୮୦ ।

୭୧ । ଇସ୍ତାହାର : ସଂଖ୍ୟା ୧୩, ଜାନୁଆରୀ-ମାର୍ଚ୍ଚ, ୧୯୮୧ ।

୭୨ । ଇସ୍ତାହାର : ସଂଖ୍ୟା ୧୮, ଏପ୍ରିଲ-ଜୁନ୍, ୧୯୮୨ ।

୭୩ । ଇସ୍ତାହାର : ସଂଖ୍ୟା ୧୯, ଜୁଲାଇ-ସେପ୍ଟେମ୍ବର, ୧୯୮୨ ।

୭୪ । ଇସ୍ତାହାର : ସଂଖ୍ୟା ୧୭, ଜାନୁଆରୀ-ମାର୍ଚ୍ଚ, ୧୯୮୨ ।

୭୫ । ଇସ୍ତାହାର : ସଂଖ୍ୟା ୨୩, ଜୁଲାଇ-ସେପ୍ଟେମ୍ବର, ୧୯୮୩ ।

୭୬ । ଇସ୍ତାହାର : ସଂଖ୍ୟା ୨୪, ଅକ୍ଟୋବର-ଡିସେମ୍ବର-୧୯୮୩ ।

୭୭ । ଇସ୍ତାହାର : ସଂଖ୍ୟା ୨୬, ଏପ୍ରିଲ-ଜୁନ୍, ୧୯୮୪ ।

୭୮ । ଇସ୍ତାହାର : ସଂଖ୍ୟା ୨୭, ଜୁଲାଇ-ସେପ୍ଟେମ୍ବର, ୧୯୮୪ ।

୭୯ । ଇସ୍ତାହାର : ସଂଖ୍ୟା ୨୮, ଅକ୍ଟୋବର-ଡିସେମ୍ବର, ୧୯୮୪ ।

୮୦ । ଇସ୍ତାହାର : ସଂଖ୍ୟା ୩୦, ଏପ୍ରିଲ-ଜୁନ୍, ୧୯୮୫ ।

୮୧ । ଇସ୍ତାହାର : ସଂଖ୍ୟା ୩୧, ଜୁଲାଇ-ସେପ୍ଟେମ୍ବର, ୧୯୮୫ ।

୮୨ । ଝଙ୍କାର : ଡିସେମ୍ବର, ୧୯୬୮ ।

୮୩ । ଝଙ୍କାର : ଅଗଷ୍ଟ, ୧୯୭୯ ।

୮୪ । ଝଙ୍କାର : ଜୁନ୍, ୧୯୮୦ ।

୮୫ । ଝଙ୍କାର : ଜୁଲାଇ, ୧୯୮୦ ।
୮୬ । ଝଙ୍କାର : ଫେବୃଆରୀ, ୧୯୮୧ ।
୮୭ । ଝଙ୍କାର : ମାର୍ଚ୍ଚ, ୧୯୮୧ ।
୮୮ । ଝଙ୍କାର : ଏପ୍ରିଲ, ୧୯୮୧ ।
୮୯ । ଝଙ୍କାର : ଜୁନ୍ , ୧୯୮୧ ।
୯୦ । ଝଙ୍କାର : ସେପ୍ଟେମ୍ବର, ୧୯୮୧ ।
୯୧ । ଝଙ୍କାର : ମଇ, ୧୯୮୨ ।
୯୨ । ଝଙ୍କାର : ଜୁନ୍ , ୧୯୮୨ ।
୯୩ । ଝଙ୍କାର : ସେପ୍ଟେମ୍ବର, ୧୯୮୨ ।
୯୪ । ଝଙ୍କାର : ଅକ୍ଟୋବର, ୧୯୮୨ ।
୯୫ । ଝଙ୍କାର : ନଭେମ୍ବର, ୧୯୮୨ ।
୯୬ । ଝଙ୍କାର : ଜୁନ୍ , ୧୯୮୩ ।
୯୭ । ଝଙ୍କାର : ଏପ୍ରିଲ, ୧୯୮୪ ।
୯୮ । ଝଙ୍କାର : ମଇ, ୧୯୮୪ ।
୯୯ । ଝଙ୍କାର : ଜାନୁଆରୀ, ୧୯୮୫ ।
୧୦୦ । ଝଙ୍କାର : ମଇ, ୧୯୮୫ ।
୧୦୧ । ଝଙ୍କାର : ଅଗଷ୍ଟ, ୧୯୮୫ ।
୧୦୨ । ପଞ୍ଚଜନ୍ୟ : Vol IV, ୧୯୮୩ ।
୧୦୩ । ପ୍ରତିବେଶୀ : ଅକ୍ଟୋବର, ୧୯୮୪ ।
୧୦୪ । ସଂଯୋଗ : ମଇ-ଜୁନ୍ , ୧୯୮୪ ।
୧୦୫ । ସଂଯୋଗ : ଏପ୍ରିଲ-ମଇ, ୧୯୮୫ ।
୧୦୬ । ସମାବେଶ : ମାର୍ଚ୍ଚ-ଏପ୍ରିଲ, ୧୯୮୧ ।
୧୦୭ । ସମାବେଶ : ନଭେମ୍ବର, ୧୯୮୧ ।
୧୦୮ । ସମାବେଶ : ସେପ୍ଟେମ୍ବର-ଅକ୍ଟୋବର, ୧୯୮୪ ।
୧୦୯ । ସମାବେଶ : ନଭେମ୍ବର-ଡିସେମ୍ବର, ୧୯୮୪ ।
୧୧୦ । ଆସନ୍ତାକାଲି : ପୂଜାସଂଖ୍ୟା, ୧୯୮୧ ।

●

# ପାଦଟୀକା

୧ । କୋଣାର୍କ—ସଚ୍ଚି ରାଉତରାୟ, ସାଂପ୍ରତିକ କବିତାରେ ମାର୍କସବାଦର ସ୍ୱର, ଓଡ଼ିଆ ଯୁବ ଲେଖକ ସମ୍ମେଳନ ପତ୍ରିକା ୧୯୭୧-୭୨—ପାଣ୍ଡୁଲିପି—ପୃ-୩୫ ।

୨ । କଷ୍ଟିତ୍ର—କବି ଅନନ୍ତ ପଟ୍ଟନାୟକ—ପୃ-୭ ।

୩ । ସାଂପ୍ରତିକ କବିତାରେ ମାର୍କବାଦର ସ୍ୱର [ଆଲୋଚନା]—ଯୁବଲେଖକ ସମ୍ମେଳନ ୧୯୭୧-୭୨—ଅଶ୍ୱିନୀ କୁମାର ମିଶ୍ର—ପୃ-୧୮ ।

୪ । ନୂତନ କବିତାର ଭୂମିକା—ପୃ-୨—ଯତୀନ୍ଦ୍ର ମୋହନ ମହାନ୍ତି ।

୫ । କବିତା—ହରେକୃଷ୍ଣ ଦାସ—ଲେଖକ ଗୁରୁପ୍ରସାଦ ମହାନ୍ତି ।

୬ । କବିତା—ବସନ୍ତର ଝଡ଼କ ଜଲରେ—କବି ସଚ୍ଚିଦାନନ୍ଦ ରାଉତରାୟ ।

୭ । କବିତା—ହରେକୃଷ୍ଣ ଦାସ-୨ ।

୮ । କବିତା—ଅନନ୍ତ ଶୟନ—କବି ରମାକାନ୍ତ ରଥ ।

୯ । କବିତା—ମୃତ୍ୟୁ ନାଚ—କବି ସୀତାକାନ୍ତ ମହାପାତ୍ର ।

୧୦ । କବିତା—କୁକୁନା ପାଇଁ ଗୋଟିଏ ସଙ୍ଗୀତ—କବି ସୀତାକାନ୍ତ ମହାପାତ୍ର ।

୧୧ । କବିତା—ଶ୍ରମଣା—ପ୍ରତିଭା ଶତପଥୀ ।

୧୨ । କବିତା—ଶକୁନ୍ତଳା—ଡଃ ସୌଭାଗ୍ୟ କୁମାର ମିଶ୍ର—
[ସୁଚରିତା ଲେଖକ ବର୍ଣ୍ଣୋଙ୍କ ୧୯୮୨ରେ ପ୍ରକାଶିତ]

୧୩ । କବିତା—ଋଗ୍‌ବେଦ—୬।୨୮।୭ ଶ୍ଳୋକ ।

୧୪ । କବିତା—ଶବରୀ ପାଦ—ଚର୍ଯ୍ୟା ଗୀତିକା—ଡଃ ଖଗେଶ୍ୱର ମହାପାତ୍ର ।

୧୫ । କବିତା—ହନୁମନ୍ତର ଦେଶେ—କବି ସଚ୍ଚିଦାନନ୍ଦ ରାଉତରାୟ ।

୧୬ । କବିତା—ଝରରେ ରୁଧିର—[ପୁସ୍ତକ-ଶାନ୍ତିଶିଖା]—କବି ଅନନ୍ତ ପଟ୍ଟନାୟକ

୧୭ । କବିତା—ମାଟି ମଣିଷ—ଅଷ୍ଟପଦୀ—ପୃ-୩୦—ସୀତାକାନ୍ତ ମହାପାତ୍ର ।

୧୮ । କବିତା—ଅନନ୍ତ ଶୟନ—କବି ରମାକାନ୍ତ ରଥ ।

୧୯ । କବିତା—ମୃତ୍ୟୁ ନାଚ—ଅଷ୍ଟପଦୀ—କବି ସୀତାକାନ୍ତ ମହାପାତ୍ର ।

୨୦ । କବିତା—କାଳପୁରୁଷ—କବି ଗୁରୁପ୍ରସାଦ ମହାନ୍ତି ।

୨୧ । କବିତା—କବି ରମାକାନ୍ତ ରଥ ।

୨୨ । କବିତା—କବି ମମତା ଦାଶ ।

୨୩ । କବିତା—ନଈ ତୁ—ହୃଷିକେଶ ମଲ୍ଲିକ ।

୨୪ । କବିତା—ଗାର୍ହସ୍ଥ୍ୟ ଉତ୍ତରାଧିକାର—ଶତ୍ରୁଘ୍ନ ପାଣ୍ଡବ ।

୨୫ । କବିତା— ଖାସ୍ ତୋର ପାଇଁ—ନିରଞ୍ଜନ ବେହୁରିଆ ।

୨୬ । କବିତା—ପ୍ରମୁଖ କବି କଥିପାଣ୍ଡୁ—ଡଃ ନିତ୍ୟାନନ୍ଦ ଶତପଥୀ ପୃ-୫୫-୫୬ ।

27. "All Societies vest on myths. To Justify a particular view of a particular Society one needs to identify its basic myths and reflected upon their impact on the current generation" (William Righter—myths and Literature—Page-9).
28. —"myth may be defined as a Story or a Complex of Story Elements × × × implicitly symbolising certain deep lying aspects of human and trans human Existence" C Encyclopaedia of Poetry and Poetics : Edited by Alfex Preminger—Griechen—Vienna and Leepzig, 1939—Page-43.
29. "Myth is form of literature about Gods of demi 'gods' C. E. W. Count, culture in History - Edited by S. Diamond (Newyork—1966—Page-595).
30. "Myth is a Story is which some of the chief characters are gods"—Northrop FRY—Fables of Identity (Newyork—1963—Page-30).
31. "Myth is to be defined as a complex of Stories, some no doubt facts & some fantacy, which for various reasons human beings regard as demonstration of the inner meaning of the universe of human life" C Allen watts : Patterns of myth—(Bostan and Newyork—Page-34).
32. "Myth is literature and must be considered as an aesthetic creation of human imagination—(Rechard chase) × × × an autonomous form of the human character with its own structure, function, Expression with unity of feeling"—Casiver : Essays—Page 86.
33. Genealogy of Morals—III—7.
34.—Philosophy of upanishads Paul Deassen Page-407.
୩୫ । କବିତା—ଦୁଇଟି ତାହାର ଡେଣା [ଗଡ଼ନାୟକ ଗ୍ରନ୍ଥାବଳୀ]
ରାଧାମୋହନ ଗଡ଼ନାୟକ—ପୃ-୭୬୩ ।



ବଧୂପ୍ରଭା ରଥ

ଜନ୍ମ—୩୦।୫।୧୯୬୧ ମସିହା ବ୍ରହ୍ମପୁର ସହରରେ । ପିତା—ଶିବରାମ ରଥ, ଆଡ଼ଭୋକେଟ (ଅବସରପ୍ରାପ୍ତ ସବ୍‌ଜଜ) । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ୧୯୮୧ ମସିହା ଓଡ଼ିଆ ସମ୍ମାନ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ । ୧୯୮୩ରେ ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ତଥା ୧୯୮୫ରେ ମାଷ୍ଟର ଅଫ୍ ଫିଲୋସଫି, (ଏମ୍ ଫିଲ୍) ଉପାଧି ପ୍ରାପ୍ତି ।

ସାଂପ୍ରତିକ ଓଡିଆ କବିତା, ଗଳ୍ପ, ପ୍ରବନ୍ଧ, ଲଳିତ ନିବନ୍ଧ ତଥା ସମାଲୋଚନା କ୍ଷେତ୍ରରେ ବଧୂପ୍ରଭା ରଥଙ୍କ ଆବିର୍ଭାବ ଏକ ନୂତନ ସଂଯୋଗ ।

ତାଙ୍କର ପ୍ରତ୍ୟେକଟି ସାହିତ୍ୟ ସର୍ଜନା, ଜୀବନର ମହନୀୟ ଉଦାର ଅନୁଭବ, କାବ୍ୟିକ ଅଙ୍ଗବିଭା, ସାବଲୀଳ ଭାଷା ତଥା ପ୍ରତୀକାତ୍ମକ ପ୍ରୟୋଗରେ ରୁଚିମନ୍ତ ।

'ସନ୍ଥକବି ଅଭିରାମ ପରମହଂସଙ୍କ ସାହିତ୍ୟ ଓ ଦର୍ଶନ' ପୁସ୍ତକ ପ୍ରକାଶିତ ।

ସଂପ୍ରତି—ଶିଶୁ ବିକାଶ ପ୍ରକଳ୍ପ ଅଧିକାରୀ (ସି.ଡି.ପି.ଓ.) ରୂପେ ଖଲ୍ଲିକୋଟ (ଗଞ୍ଜାମ)ରେ ଅବସ୍ଥାପିତ ।

—ପ୍ରକାଶିକା

(I. S. B, N.—81—86556-00-11— )